# ହାତପାପୁଲିରେ ସୂର୍ଯ୍ୟୋଦୟ

ଭୂପେନ୍ ମହାପାତ୍ର



ଗପ ବହି

# ହାତପାପୁଲିରେ ସୂର୍ଯ୍ୟୋଦୟ

ଭୂପେନ୍ ମହାପାତ୍ର



ହାତପାପୁଲିରେ ସୂର୍ଯ୍ୟୋଦୟ
ଭୂପେନ୍ ମହାପାତ୍ରଙ୍କ ଗଳ୍ପ ସଂକଳନ

ପ୍ରକାଶକ : ଟାଇମ୍ ପାସ୍

ପ୍ରଥମ ସଂସ୍କରଣ : ଫେବୃଆରୀ ୨୦୦୮

**haata papulire suryodaya**
oriya shortstories by **bhupen mahapatra**

published & printed by **time pass**
3, ekamra villa, irc village, bhubaneswar-15, india

cover design : **saroj bal**
first edition : february 2008

**Rs. 65.00**

ଗଳ୍ପ ବର୍ଣ୍ଣିତ ମୋର ଅଗଣିତ
ସମସ୍ୟା ଜର୍ଜରିତ ଚରିତ୍ରମାନଙ୍କୁ

# ପ୍ରାକ୍ କଥନ

ଗୋଟାଏ ପୁସ୍ତକର ମୁଖବନ୍ଧ ଲେଖିବା ଏକ ପାରମ୍ପରିକତା ହେଲେ ମଧ୍ୟ ତା'ର ଆବଶ୍ୟକତାକୁ ଏଡ଼ି ଦେଇ ହେବନାହିଁ । ଅନ୍ତତଃ ଗଳ୍ପରେ କ'ଣ କୁହାଯାଇଚି, ତା'ର ଉଦ୍ଦେଶ୍ୟ ଓ ଆବଶ୍ୟକତା ଅନେକ କାରଣରୁ ଜରୁରୀ ହେଇ ପଡ଼ିଲାଣି । କୌଣସି ଲେଖକୀୟ ସୃଷ୍ଟି ଉଦ୍ଦେଶ୍ୟବିହୀନ ନୁହେଁ । ସାହିତ୍ୟ ନିଜ ପାଇଁ ସୃଷ୍ଟି ହୁଏନାହିଁ । ସାହିତ୍ୟ ମଧ୍ୟ ଅଳସ ମନର ଅଭିସାର ନୁହେଁ । ଥରେ କଲମ ମୁନରୁ ବାହାରି ଗଲା ପରେ ତାହା ଆଉ ଲେଖକର ହୋଇନଥାଏ । ତାହ ସଂପୂର୍ଣ୍ଣ ରୂପେ ସମଗ୍ର ମଣିଷ ପାଇଁ ନିବେଦିତ ହୋଇଯାଏ । ସେତେବେଳେ ତାକୁ କିଏ କେମିତି ଦେଖିବ ତାହା ଏକ ଭିନ୍ନ ପ୍ରଶ୍ନ ।

ଗଳ୍ପର ପ୍ରତ୍ୟେକଟି ଚରିତ୍ର ସମାଜର ପ୍ରତିନିଧିତ୍ୱ କରେ । ସେମାନେ ଭିନ୍ନ ପୃଥିବୀରୁ ଜନ୍ମ ହୁଅନ୍ତି ନାହିଁ । ନିଜସ୍ୱ ପୃଥିବୀରୁ ସେମାନେ ଯେତେବେଳେ ବାହାରି ଆସନ୍ତି ନିଜସ୍ୱ ସମସ୍ୟା ନେଇ, ସେତେବେଳେ ତାହା ପାଠକମନକୁ ଆନ୍ଦୋଳିତ କରେ । ସବୁବେଳେ ଯେ ସମାଧାନର ବାଟ ଫିଟିବ ତା'ର କିଛି ମାନେ ନାହିଁ । ସ୍ଥିର ଜଳରେ ଢେଉଟିଏ ସୃଷ୍ଟି ହେଲେ, ତାହା ହିଁ ସାର୍ଥକତାର ପାଖାପାଖି ।

ମୋ ଗଳ୍ପରେ ମୁଁ ତାହା ହିଁ କରିଚି । ଚେଷ୍ଟା କରିଚି ମୋର ସମସ୍ୟା ଜର୍ଜରିତ ଚରିତ୍ରମାନଙ୍କଦ୍ୱାରା ପାଠକ ମନରେ ଢେଉଟିଏ ସୃଷ୍ଟି କରିବାକୁ । ତାହା 'ଏମ୍.କେ. ଗାନ୍ଧୀ' ହେଉ ବା 'ହାତ ପାପୁଲିରେ ସୂର୍ଯ୍ୟୋଦୟ' ହେଉ, 'ପାପ' ହେଉ ବା 'ମୁଖା' ହେଉ, 'ମାଟିହାଣ୍ଡି' ହେଉ ବା 'ମିଛ ରାତି : ଜହ୍ନରାତି' ହେଉ – ସମସ୍ତେ ପହଂଚନ୍ତି ପାଠକଙ୍କ ଦରବାରରେ । ପେଶ୍‌କରିଛନ୍ତି ନିଜକୁ, ନିଜର ଅସୁମାରୀ ଦୁଃଖକୁ ।

ମୋର ଏଇଟି ଏକାଦଶ ଗଳ୍ପ ସଂକଳନ । ଗଳ୍ପଗୁଡ଼ିକ ମାତ୍ର ତିନି ଚାରି ବର୍ଷ ବ୍ୟବଧାନର । ସର୍ବ କନିଷ୍ଠ 'ଏମ୍.କେ. ଗାନ୍ଧୀ' ୨୦୦୬ରେ 'ଝର୍କା'ରେ ପ୍ରକାଶ ପାଇଲା ପରେ ତା'ର ପୁନର୍ଜନ୍ମ ହେଲା ତା' ପର ବର୍ଷ 'ଇଣ୍ଡିଆନ୍ ଲିଟରେଚର୍'ରେ ସଂପାଦକଙ୍କ ସ୍ୱତନ୍ତ୍ର ମନ୍ତବ୍ୟ ନେଇ । ତା'ପରେ ସେ ଆଉ ପଛକୁ ଫେରିନାହିଁ । ହିନ୍ଦୀ, କନ୍ନଡ଼, ତେଲୁଗୁ, ଅସମୀୟା, ବଂଗଳାକୁ ତା'ର ପ୍ରବେଶ ହୋଇ ସାରିଛି । ଆଲୋଚନାର ବି ଅନ୍ତ ନାହିଁ । ଅନୁବାଦ ମାଧ୍ୟମରେ ହିଁ ସାହିତ୍ୟ ସବୁମଣିଷ ପାଖରେ ପହଂଚିପାରେ । ଅନ୍ୟ ଗଳ୍ପଗୁଡ଼ିକ ମଧ ଏକା ପରି ଚର୍ଚ୍ଚାର ବଳୟ ଭିତରକୁ ଆସିଚି । ତେବେ ଏବେ ଯେପରି ଓଡ଼ିଆ ଗଳ୍ପର ଉତରଣ ହେଲାଣି, ସେଥିରେ ମୋର ଏ ଗଳ୍ପଗୁଡ଼ିକର ସ୍ଥାନ ନିରୂପଣର ଦାୟିତ୍ୱ ମୁଁ ମୋର ସେଇ ବିଦଗ୍ଧ ପାଠକମାନଙ୍କ ହାତରେ ଛାଡ଼ିଦେଲି ।

ସଂକଳନର ସମସ୍ତ ଦାୟିତ୍ୱ 'ଟାଇମ୍‌ପାସ୍'ର ପ୍ରିୟ ସରୋଜ ବଳଙ୍କୁ ପ୍ରଦାନ କରି ମୁଁ ନିଶ୍ଚିନ୍ତ ହେଇଗଲି । କିନ୍ତୁ ମାତ୍ର କେଇ ମାସ ଭିତରେ ସେ ଯେ ତାଙ୍କର ଅଭିନବ ପରିକଳ୍ପନାଗୁଡ଼ିକୁ ରୂପ ଦେଇଦେବେ, ଏଇଟା ଥିଲା ମୋର ଚିନ୍ତାର ବାହାରେ । ଖୁସିଲାଗେ, ସ୍ୱପ୍ନ ଯେତେବେଳେ ମନକୁ ଆସୁଆସୁ ହାତ ପାପୁଲିରେ ପହଂଯାଏ । ସେ ମୋର ଧନ୍ୟବାଦର ପାତ୍ର ।

ଭୂପେନ୍ ମହାପାତ୍ର

# ଏମ୍.କେ. ଗାନ୍ଧୀ

ମୋ ଟେବୁଲ ଉପରେ ଭିଜିଟିଂ କାର୍ଡ଼ଟି ଦେଖି ମୁଁ ବିସ୍ମିତ ହେଲି । ଭିଜିଟିଂ କାର୍ଡ଼ ଦେଖି ମୁଁ ଜଣଜଣକୁ ଡାକି ବିଦା କରୁଥାଏ । ସପ୍ତାହକୁ ଗୋଟିଏ ଦିନ- ଶନିବାର । ସରକାରଙ୍କ ନିୟମ ଅନୁସାରେ ସର୍ବସାଧାରଣଙ୍କୁ ସାକ୍ଷାତ ଦେଇ ତାଙ୍କ ହାରିଗୁହାରି ଶୁଣିବାକୁ ପଡ଼େ । 'ହାରିଗୁହାରି' ଶବ୍ଦଟା ରାଜାରାଜୁଡ଼ା ଅମଳରୁ ଏତେ ଲୋକପ୍ରିୟ ହୋଇଯାଇଛି ଯେ ଏବେ ମଧ୍ୟ ସରକାର ତାଙ୍କ ଚିଠିପତ୍ର ଓ ସର୍କୁଲାରମାନଙ୍କରେ ସେ ଶବ୍ଦ ବ୍ୟବହାର କରି ଆସୁଛନ୍ତି । ଅବଶ୍ୟ ବେଳେବେଳେ ଅଣଓଡ଼ିଆ ମନ୍ତ୍ରୀ ଓ ଅଫିସର ତାକୁ 'ଅଭିଯୋଗ' ବୋଲି ବା ଇଂରାଜୀରେ 'କମ୍ପ୍ଲେ[' ବୋଲି ଲେଖୁଛନ୍ତି । ନଚେତ୍ ସାଧାରଣତଃ ସେ ପୁରୁଣା ଶବ୍ଦକୁ ସମସ୍ତେ ବ୍ୟବହାର କରନ୍ତି । ମୋତେ ବି ଭଲ ଲାଗେ । ଅନେକ ଦିନର ପୁରୁଣା ଶବ୍ଦଟା ଏଯାଏ ଅତ୍ୟାଧୁନିକତାର ଅତ୍ୟାଚାର ସହ୍ୟକରି ମଧ୍ୟ ଗର୍ବର ସହିତ ମୁଣ୍ଡଟେକି ଛିଡ଼ା ହୋଇଛି, ଏହା କମ୍ କଥା ନୁହେଁ । ମୁଁ ମୋ ପି.ଏ.ଙ୍କୁ ଶନିବାର ଦିନ ସେଇ ହାରିଗୁହାରି ରେଜିଷ୍ଟରଟି ମୋ ସାମ୍ନାରେ ରଖିବାକୁ ନିର୍ଦ୍ଦେଶ ଦେଇଥାଏଁ ।

ସେଦିନ ସେମିତି ତିନିଚାରିଜଣଙ୍କ ଗୁହାରି ଶୁଣିସାରିଲା ପରେ ଯେତେବେଳେ ଭିଜିଟିଂ କାର୍ଡ଼ଟି ଉପରେ ନଜର ପଡ଼ିଲା ମୁଁ ଟିକିଏ ଅଧିକ ଉତ୍ସୁକ ହୋଇ ଉଠିଲି । ସେଥିରେ ଗୋଟେ ଅର୍ଡ଼ିନାରୀ ଡି.ଟି.ପି. ମେସିନ୍‌ରେ ଲେଖାଥିଲା 'ଏମ୍.କେ.ଗାନ୍ଧୀ' । କାର୍ଡ଼ଟାକୁ ଦେଖି ମୋ ଭିତରେ ଯେମିତି କୌତୂହଳ ସୃଷ୍ଟି ହେଉଥିଲା ସେମିତି ବିରକ୍ତି ମଧ୍ୟ ଜାତ ହେଉଥିଲା । କେହି ଜଣେ ମୋ ସହିତ ରହସ୍ୟ କରିବାକୁ ଏମିତି ଗୋଟାଏ ସ୍ଲିପ୍ ପଠାଇଥିବ ବୋଲି ଭାବିଲି । ହୁଏତ ଭାବୁଥିବ ଯେ ଏମିତି ନାଁଟିଏ ଦେଖିଲେ ମୁଁ ତାକୁ ପ୍ରାଧାନ୍ୟ ଦେଇ ପ୍ରଥମେ ଡାକିଦେବି । ଏଥିପାଇଁ ଲୋକଟିର ଚତୁରପଣ ଦେଖି ମୋ ଭିତରେ ସାମାନ୍ୟ କ୍ରୋଧ ଜାତ ହେଉଥିଲେ ମଧ୍ୟ ପର ମୁହୂର୍ତ୍ତରେ ଭାବିଲି, ହୋଇପାରେ ଲୋକଟା ଅସଲି । କିଛି ଗୁହାରି ନିଶ୍ଚୟ ଥିବ । ଆମ ଗଣତନ୍ତ୍ରରେ ଏମିତି କେହି ନାହିଁ ଯାହାର ଗୁହାରି କରିବାକୁ

କିଛି ନଥିବ । ଗଣତନ୍ତ୍ର ଓ ଗୁହାରି ଏମାନେ ଓତଃପ୍ରୋତ ଭାବେ ଜଡ଼ିତ । ତାକୁ ଅଲଗା କରିହୁଏ ନାହିଁ । ଏ ବିଷୟରେ ମୋର ଗୋଟାଏ ସ୍ୱତନ୍ତ୍ର ମତ ରହିଛି । ମୋର ବିଶ୍ୱାସ ଗୁହାରିର ମୃତ୍ୟୁ ଅର୍ଥ ଗଣତନ୍ତ୍ରର ମୃତ୍ୟୁ । ତେଣୁ ଏମ୍.କେ. ଗାନ୍ଧୀ ହେଲା ବୋଲି ଯେ ତାର କିଛି ଗୁହାରି ନଥିବ ତାର କିଛି ମାନେ ନାହିଁ ।

''ଡାକିବି ?'' ମୋ ପିଅନ ଶ୍ରୀକୃଷ୍ଣ ଆସି ମୋତେ ପଚାରିଲା ।

ଅଜବ ଲୋକ ଏଇ ଶ୍ରୀକୃଷ୍ଣଟି । ମୋତେ ବି ଖରାପ ଲାଗେ ଏଇଥିପାଇଁ ଯେ, ନାଁ ତାର ଶ୍ରୀକୃଷ୍ଣ, କିନ୍ତୁ ଅଫିସରେ ପିଅନ କାମ କରୁଛି । ତାକୁ ଚା କପ ଧୋଇବାକୁ କହିବାକୁ ଯେମିତି ଖରାପ ଲାଗେ, ବେଳେବେଳେ ଘରେ ଯାଇ ଲୁଗାପଟା ବି ଖଣ୍ଡେ କାଚି ଦେବାକୁ, ଅନ୍ୟ ପିଅନର ଅବର୍ତ୍ତମାନରେ, କହିବାକୁ ମଧ୍ୟ ଖରାପ ଲାଗେ । ସବୁ ଅଫିସର ଯେମିତି ପିଅନକୁ 'ତୁ' ବୋଲି ସମ୍ବୋଧନ କରନ୍ତି ଶ୍ରୀକୃଷ୍ଣକୁ ମୁଁ ସେମିତି କରେନାହିଁ । ତାର ଏଇ ନାଁ ପାଇଁ ମୁଁ ତାକୁ ଅନ୍ୟ ପିଅନମାନଙ୍କ ଭିତରେ ଉଚ୍ଚତର ସ୍ଥାନ ଦେଇଥାଏଁ ।

ମୁଁ ଡାକିଲି, ''ଶ୍ରୀକୃଷ୍ଣ ଏଆଡ଼େ ଆସିଲ ।'' ସେ ଏଯାଏ ମୋର ଅନୁମତି ପାଇଁ ଅପେକ୍ଷା କରି କବାଟ ସାମାନ୍ୟ ଖୋଲି ଠିଆ ହୋଇଥିଲା । ବୋଧେ ଏମ୍.କେ. ଗାନ୍ଧୀ ବାହାରେ ନିଜ ପାଳି ପଡ଼ିଲାଣି ବୋଲି ଭାବି ଉଠିବାକୁ ସଜବାଜ ହେଉଥିବେ । ମୋଠାରୁ ଏତେ ଶୀଘ୍ର ଅନୁମତି ପାଇବାର ଆଶା ନଦେଖି ସେ ତାଙ୍କୁ ହାତଠାରି ଅପେକ୍ଷା କରିବାକୁ କହିଲା ଏବଂ ମୋ ପାଖକୁ ଆସି ହାତ ମଳିମଳି ଠିଆହେଲା । ଶ୍ରୀକୃଷ୍ଣ ହୁଏତ ଭାବୁଥିଲା ଯେ ତା ଭଳି ଲୋକଠାରେ ମଧ୍ୟ ବାବୁଙ୍କ କାମ ଅଛି ?

ମୁଁ ପଚାରିଲି, ''ଏମ୍.କେ. ଗାନ୍ଧୀ ନାଁରେ ଯୋଉ ଲୋକଟି ସେଠି ଅପେକ୍ଷା କରିଛି ତୁମେ ତାକୁ ଦେଖିଥିବ ?''

''କୋଉ ଲୋକ ସାର୍ ? ଗାନ୍ଧୀ ? ''

''ହଁ, ଲୋକଟା ଦେଖିବାକୁ କେମିତି ? ଆମ ମହାତ୍ମାଗାନ୍ଧୀଙ୍କ ଭଳି ?''

''ସାର୍, ମୁଁ ତ ମହାତ୍ମାଗାନ୍ଧୀଙ୍କୁ ଦେଖିନି । ଏ ଲୋକଟା ସାଧାରଣ ଲୋକପରି । ମାନେ କଛାମାରି ଧୋତି ପିନ୍ଧିଛି । ଖାଲି ଦେହ, ଚନ୍ଦାମୁଣ୍ଡ, ଖଣ୍ଡେ ଅଡ଼ିନାରୀ ଚପଲ, ଲମ୍ୱ ବାଡ଼ିଟାଏ ଧରିଚି । ବି.ପି.ଏଲ୍. ବାଲା ହୋଇଥିବ କି କଅଣ ।'' ସେ ବଡ଼ ଦମ୍ଭର ସହ କହିଲା ।

କଥା ଛଡ଼େଇ ମୁଁ କହିଲି ''ଆଃ ତୁମେ ଆଉ ମହାତ୍ମାଗାନ୍ଧୀଙ୍କୁ ଦେଖି ଥାଆନ୍ତ କି ? ସେ ତ କେବେଠୁ ମଲେଣି ।''

''ମଲେଣି ? କିଏ କହିଲା ? ସେଦିନ ଆମେ ତାଙ୍କ ଜୟନ୍ତୀ ପାଳନ କଲୁଁ ? ସେଦିନ ସଭାରେ ତ ସମସ୍ତେ କହିଲେ, ଗାନ୍ଧୀ ମରି ନାହାନ୍ତି । ସେ ଅଛନ୍ତି ।''

ଗାନ୍ଧୀଙ୍କ ବିଷୟରେ ଶ୍ରୀକୃଷ୍ଣର ଗଭୀର ଜ୍ଞାନ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ପିଅନ

ପୋଷ୍ଟ ପାଇଁ ଆଜିକାଲି ମେଟ୍ରିକୁଲେଟ୍‌ମାନେ ଦରଖାସ୍ତ ଦେଉଛନ୍ତି । ଜଣେ ମେଟ୍ରିକ୍ ପାଶ୍ ଲୋକର ଜ୍ଞାନ କେତେ ସୀମିତ ହେଲାଣି ଦେଖି ମୁଁ ଆଶ୍ଚର୍ଯ୍ୟ ହେଉଥିଲି ।

''ତେବେ ତୁମେ କଅଣ କହୁଚ ଗାନ୍ଧୀ ମରି ନାହାନ୍ତି ?'' ମୁଁ ପଚାରିଲି ।

''ମୋଟେ ନୁହେଁ । ଗାନ୍ଧୀ ମରିଥିଲେ ଏ ଦେଶ ଥାଆନ୍ତା ? ଇଏ ବି ମରି ସାରନ୍ତାଣି । ଆପଣ ସାର୍ ଆମ ଲୋକଙ୍କୁ ଚିହ୍ନି ନାହାନ୍ତି ?'' ସେ ହସିହସି କହିଲା ।

ମୁଁ ତା କଥା ଶୁଣି ସ୍ତମ୍ଭୀଭୂତ ହେଇଗଲି । ମୋର ମନେ ହେଲା ଶ୍ରୀକୃଷ୍ଣ ମାଟ୍ରିକ ନୁହେଁ, ଏମ୍.ଏ. ପାଶ୍ କରିଥିବ । ତା କଥାରୁ ମୋର ଇମିତି ଗୋଟାଏ ଧାରଣା ହେଲା ଯେ ଯୋଉମାନେ ଗାନ୍ଧୀ ବଞ୍ଚିଛନ୍ତି ବୋଲି କହୁଛନ୍ତି ସେମାନେ ପ୍ରକୃତରେ ଗାନ୍ଧୀଙ୍କୁ ମାରିଛନ୍ତି ଏବଂ ଶ୍ରୀକୃଷ୍ଣ ଭଳିଆ ଯୋଉମାନେ ଗାନ୍ଧୀଙ୍କ ଅସ୍ତିତ୍ୱ କଥା ମୋଟେ କିଛି ଜାଣି ନାହାନ୍ତି ସେଇମାନେ ହିଁ ଗାନ୍ଧୀଙ୍କୁ ବଞ୍ଚେଇ ରଖିଛନ୍ତି ।

ଶ୍ରୀକୃଷ୍ଣର ଗାନ୍ଧୀ ବିଷୟରେ ଜ୍ଞାନ ଦେଖି ମୋର କୌତୂହଳ ବଢ଼ିଲା । ମୁଁ କହିଲି ''ତୁମେ ତେବେ କଅଣ କହୁଚ, ଗାନ୍ଧୀ ମରି ନାହାନ୍ତି ?''

''ମୁଁ କହୁନି ସାର୍, ସମସ୍ତେ କହୁଛନ୍ତି । କିନ୍ତୁ ମୁଁ କହୁଚି ଗାନ୍ଧୀ ହଜି ଯାଇଛନ୍ତି ।''

''ହଜି ଯାଇଛନ୍ତି ? ମାନେ ମରି ନାହାନ୍ତି କି ବଞ୍ଚି ନାହାନ୍ତି ?'' ମୁଁ କହିଲି ।

ଶ୍ରୀକୃଷ୍ଣ ଚମକି ପଡ଼ି ତା ପାଟିରେ ଆଙ୍ଗୁଳି ରଖିଲା । ଗୋଟାଏ ଗୁରୁତର ଭୁଲ୍ ହେଇ ଯାଇଚି ବୋଲି ସେ ଭାବିଲା । ପୁଣି ପର ମୁହୂର୍ତ୍ତରେ ସେ ଭାବିଲା ତେବେ ଠିକ୍ କଥାଟା ଆଉ କଅଣ ହୋଇପାରେ ? ଏପରି କଅଣ କହିଲେ ପ୍ରଶ୍ନର ଉତ୍ତର ଠିକ୍ ହେବ ? ଅଧିକନ୍ତୁ ତାକୁ ତା ସାର୍ ବୋକା ବୋଲି ଭାବିବେ ନାହିଁ ? ସେ ମୁଣ୍ଡ କୁଣ୍ଡେଇଲା ।

ଏତେବେଳେ ମୋର ପ୍ରଶ୍ନ ଥିଲା, ''ଏତେବଡ଼ ଲୋକଟା ହଜିଯିବ କେମିତି ?''

ଏଥର କି ଉତ୍ତର ଶ୍ରୀକୃଷ୍ଣ ଦେବ ତାକୁ ଶୁଣିବା ପାଇଁ ମୁଁ ଉଦ୍‌ଗ୍ରୀବ ହେଇ ତା ମୁହଁକୁ ଚାହିଁ ବସିଲି । କିନ୍ତୁ ତା'ର ଉତ୍ତରଟା ଯେ ଏତେ ସହଜ ଓ ସୁନ୍ଦର ହେବ, ମୁଁ ତା ଭାବି ନଥିଲି । ସେ କହିଲା ''କାହିଁକି ସୁଭାଷ ବୋଷ କଅଣ ମରିଛନ୍ତି କି ? ସେ ଯଦି ମରି ଥାଆନ୍ତେ ତେବେ ତାଙ୍କୁ ଏତେ ଲୋକ ଏତେବର୍ଷ ହେଲା ଖୋଜୁ ଥାଆନ୍ତେ ? କିଏ ଜଣେ ମାତେ ସେଦିନ କହୁଥିଲା ଯେ ଭାରତ ସରକାର ପୁଣିଥରେ ତଦନ୍ତ କରୁଛନ୍ତି ।''

ସେ ଟିକିଏ ରହିଗଲା ଏବଂ ପୁଣି କହିଲା ''ସାର୍ ଗୋଟିଏ କଥା ।'' ସେ କାନମୂଳରେ ହାତଦେଇ ମୋତେ କହିଲା ।

''କଅଣ କୁହ ।'' ମୁଁ କହିଲି । ସେ ଯେ ଗୋଟାଏ ଅଜବ କଥା କହିବ ଏକଥା ମୁଁ ଜାଣିଥିଲି ।

ସେ କହିଲା ''ଆମ ଗାଁ ଗୋପାଳପୁର ଥାନାବାବୁ ବହୁତ ଭଲ ଲୋକ !''

''ଆଛା ? ଭଲ ହେଲା । କିନ୍ତୁ ତୁମେ କଅଣ କହିବାକୁ ଚାହୁଁଛ ?" ମୁଁ କହିଲି ।

''ସୁଭାଷଙ୍କୁ ଖୋଜିବାକୁ ଏତେ ବଡ଼ବଡ଼ ଲୋକ ନପଠେଇ, ତାଙ୍କୁ କହିଲେ ଦି'ଦିନରେ ସେ ପାତାଳରୁ ଆଣି ଠିଆ କରେଇ ଦିଅନ୍ତେ । କେତେ ବଡ଼ବଡ଼ ଚୋରଙ୍କୁ.....''

ମୁଁ ହସି ପକେଇଲି । ମୁଁ ହସିବା ଦେଖି ସେ ଭାବିଲା କଥାଟା ବୋଧେ ଭଲ ହେଲା ନାହିଁ । ଏମିତି କଥାଟା କହିବା ତା'ର ଉଚିତ ହେଲା ନାହିଁ ।

ମୁଁ ପଚାରିଲି ''ଆଚ୍ଛା ମହାତ୍ମାଗାନ୍ଧୀଙ୍କୁ ତେବେ କିଏ ଖୋଜି ଆଣିପାରିବ ?''

''ଆମେ ସମସ୍ତେ । ଗୋଟିଏ ହୁଲିଆ ଜାରି ହେଲେ ସମସ୍ତେ ଏଥିରେ ଲାଗିପଡ଼ିବେ । ସମସ୍ତେ ନ ଲାଗିଲେ ହଜିବା ଲୋକକୁ ଖୋଜି ହେବ ନାହିଁ ।''

ମୋ ପି.ଏ. ପଶି ଆସି କହିଲେ, 'ସାର୍ ଆଉଜଣେ ମାତ୍ର ଅଛି ଗୁହାରି କରିବାକୁ । ମୁଁ ତାକୁ ଆଉ ଦିନେ ଆସିବାକୁ କହନ୍ତି, କିନ୍ତୁ ସେ ତ ମୋଟେ ଟଙ୍କୁ ନାହିଁ । ପଥରଟେ ପରି ବସିଚି ଯେ ବସିଚି । ଟିକେବି ହଲୁ ନାହିଁ । ତପସ୍ୟା କଲା ପରି ବସିଚି ।''

ମୁଁ ଏଥର ଶ୍ରୀକୃଷ୍ଣଙ୍କୁ କହିଲି, ''ଯାଅ, ପଠେଇ ଦିଅ ।''

ସେ ଆସିଲେ । ମୁଁ ତାଙ୍କୁ ଦେଖି ଚମକି ପଡ଼ିଲି । ଇଏତ ସେଇ ଏମ୍.କେ. ଗାନ୍ଧୀ । ହଁ ତ, ଠିକ୍ ସେଇ ଚେହେରା । ଶୀର୍ଣ୍ଣ ଶରୀର । ଏକଦମ ଚନ୍ଦାମୁଣ୍ଡ । ଖାଲି ଦେହ । ଆଣ୍ଠୁ ଉପରକୁ ଲୁଗା । ସିଧା ଠିଆ ହୋଇ ପାରୁନାହାନ୍ତି । କିନ୍ତୁ ହାତରେ ବାଡ଼ି ନାହିଁ । ମୁଁ ଚେଆର ଛାଡ଼ି ଠିଆ ହେଇ ପଡ଼ିଲି । ହାତଯୋଡ଼ି କାକୁସ୍ଥ ହେଇ କହିଲି ''ବାପୁ ଆପଣ ।''

ସେ ହସିଲେ । ସେଇ ହସ । ନିର୍ମଳ ଓ ପ୍ରାଣଖୋଲା ହସ । ମୋର ମନେ ହେଲା ଦାନ୍ତ ନ ଥିବା ପାଟିର ହସ ମୁଁ ଯେତେ ଯୋଉଠି ଦେଖିଛି ବାପୁଙ୍କ ହସ ତା ଭିତରେ ସର୍ବଶ୍ରେଷ୍ଠ । କେବଳ ମାଆ କସ୍ତୁରବା ସେ ହସଟିକୁ ଭଲ ପାଆନ୍ତି ନାହିଁ । ତା ନ ହେଲେ ପୃଥିବୀରେ ଆଉ କେହି କେବେ ସେ ହସକୁ ବାଛିଦେଇ ନାହିଁ । କେବଳ ମାଆ କସ୍ତୁରବା କହନ୍ତି, 'ତୁମେ ସବୁ କଥାରେ ଗୋଟାଏ କ'ଣ ହସୁଛ ? ଜଣେ ଭଲ କହିଲେ ହସିବ, ଖରାପ କହିଲେ ହସିବ ? ଜଣେ ତୁମକୁ ଗାଳି ଦେଲେ ହସିବ, ଜଣେ ତୁମକୁ ଶ୍ରଦ୍ଧା କଲେ ହସିବ ? ଈଶ୍ୱର ତୁମକୁ ହସ ଏଇଥିପାଇଁ ଦେଇଛନ୍ତି ?' ମାଆ ଏଥିପାଇଁ ବାପୁଙ୍କୁ ତାଗିଦ କରୁଥିଲେ ।

ସେମିତି ହସୁହସୁ ସେ କହିଲେ, "ଆପଣ ଭୁଲ୍ କରନ୍ତୁ ନାହିଁ । ମୁଁ ସିଏ ନୁହେଁ, ଯାହାଙ୍କ କଥା ଆପଣ ଭାବୁଛନ୍ତି । ମୁଁ ଆଉ ଜଣେ । ସେ ଏମ୍.କେ. ଗାନ୍ଧୀର ତ କେବେଠୁ ମୃତ୍ୟୁ ହୋଇଯାଇଛି । ଆପଣ ତ ଜାଣିଥିବେ-ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ? ସିଏ ମରି ସାରିଛନ୍ତି, ଆଉ କେଉଁଠୁ ଆସିବେ ?"

ମୋର ସେତେବେଳେ ଶ୍ରୀକୃଷ୍ଣ କଥା ମନେ ପଡ଼ିଲା । ମୋର ତାକୁ ପାଟିକରି ଡାକିବାକୁ ଇଚ୍ଛା ହେଉଥିଲା । କିନ୍ତୁ ବନ୍ଦ ଦରଜା ଭିତରୁ ଡାକିଲେ କିଏ ଶୁଣିବ ? ପାଟିକରି ଡାକିବାକୁ ହେଲେ କବାଟ ଖୋଲା ଥିବା ଦରକାର । ଡାକିବାକୁ ହେଲେ ଯେ ବେଲ୍

ଚିପିବାକୁ ହୁଏ ସେକଥା ଆଉ ମୋର ମନେ ପଡ଼ିଲା ନାହିଁ । ଗାନ୍ଧୀ ଯେ ମରି ନାହାନ୍ତି ଏକଥା ଶ୍ରୀକୃଷ୍ଣ ହିଁ ଜୋରଦେଇ କହୁଥିଲା ଏଇ ଟିକକ ଆଗରୁ ।

ମୁଁ କହିଲି ''ଆପଣ ମୋତେ ଭୁଲେଇବାକୁ ଚେଷ୍ଟା କରୁଛନ୍ତି । ମୋତେ ଆପଣ କେବେବି ଭୁଲେଇ ପାରିବେ ନାହିଁ । ମୁଁ କଅଣ ଆପଣଙ୍କୁ ଜାଣି ନାହିଁ ? ମୁଁ କଅଣ ଆପଣଙ୍କୁ ଦେଖିନାହିଁ ? ଆପଣଙ୍କୁ କିଏ ଦେଖିନାହିଁ ନା ଚିହ୍ନିନାହିଁ ?

ଏବେବି ଦେଖୁଚି । ହେଇ ଦେଖୁ ନାହାନ୍ତି ?" ମୁଁ ମୋ ଚେଆର ପଛପଟ କାନ୍ଥରେ ଟଙ୍ଗା ଯାଇଥିବା ଫଟୋକୁ ହାତ ଦେଖାଇଲି ।

''ଆପଣ ତାଙ୍କୁ ଦେଖି ମୁଁ ବୋଲି ଭାବୁଛନ୍ତି ?'' ସେ କହିଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ଥରେ ଫଟୋକୁ ଦେଖିଲି ଏବଂ ପୁଣିଥରେ ତାଙ୍କୁ ଦେଖିଲି । ଫଟୋରେ ସେ ଚାଦର ଘୋଡ଼ିଚନ୍ତି । ଆଉ ଏଠି ତାଙ୍କ ଦେହଟା ଫୁଙ୍ଗୁଳା । ଫଞ୍ଜରା ହାଡ଼ଗୁଡ଼ାକ ବେଶ୍ ଗଣି ହେଇଯାଉଚି । ତାଙ୍କ ଖାଲି ଦେହକୁ ଥଣ୍ଡା ଲାଗିବ ଭାବି ମୁଁ ରୁମ୍‌ରେ ଚାଲୁଥିବା ଏ.ସି.ଟାକୁ ଯାଇ ବନ୍ଦ କରିଦେଲି । ରୁମ୍ ଭିତରେ ତଥାପି ଥଣ୍ଡା ଥିଲା । ମୁଁ କହିଲି ''ଗୋଟାଏ ଚାଦର ମଗେଇବି ? ଥଣ୍ଡା ଲାଗୁଥିବ'' ।

ସେ କହିଲେ ''ଏମିତି ତ ଜନ୍ମ ହେଇଥିଲି ଖାଲି ଦେହରେ, ଯିବି ବି ଖାଲି ଦେହରେ । ଚାଦରଟେ ଆଉ କଅଣ ହେବ ? ଖାଲି ଦେହରେ ମୁଁ ଥଣ୍ଡା ଓ ଗରମ ସବୁ ସହିପାରେ ।'' ସେ ଟିକିଏ ରହିଗଲେ, ତା'ପରେ କହିଲେ ''ସେ ଯନ୍ତଟାକୁ ବନ୍ଦ କରିଦେଲେ । ଆପଣଙ୍କୁ କଷ୍ଟ ହେବନି '' ?

ମୋ ଗାଲରେ ଯେମିତି କିଏ ଚାପୁଡ଼ାଏ ପିଟି ଦେଲା । ମନକୁ ମନ ମୋ ହାତଟା ଉଠିଯାଇ ଗାଲଟାକୁ ଆଉଁସି ପକେଇଲା ।

ସେ କହିଲେ ''ହଉ ଛାଡ଼ନ୍ତୁ ସେକଥା । ଆପଣ ମୋତେ ଦେଖିଥିଲେ ଦେଖିଥିବେ । ମୋର ସେଥିରେ ଆଉ କିଛି କହିବାର ନାହିଁ । ମୁଁ କିନ୍ତୁ ଏମ୍.କେ. ଗାନ୍ଧୀ ! ଆସିଚି ଗୁହାରି କରିବାକୁ । କେବେଠାରୁ ଆସିବି ବୋଲି ଭାବୁଥିଲି । କିନ୍ତୁ ପାରୁଚି କୋଉଠି ?''

ମୁଁ କହିଲି ''ମୋତେ କହିଥିଲେ ମୁଁ ଆପଣଙ୍କ ପାଖକୁ ଯାଇଥାଆନ୍ତି । ଆପଣ ଏତେ କଷ୍ଟ କରି.... ।''

ସେ ପୁଣି ହସିଲେ । ଏଥର ସେ ହସିଲାବେଳେ ତାଙ୍କ ଆଖିରେ ଲୁହ ଦେଖାଗଲା । ପୂରା ଆଖି ଦି'ଟାରେ ପାଣି ଭର୍ତ୍ତି ହୋଇଗଲା । ତାଙ୍କ କଣ୍ଠ କେମିତି ଜଡ଼ିଜଡ଼ି ଆସିଲା । ସେ ଯେମିତି କିଛି କହିବାକୁ ଚାହୁଁଛନ୍ତି, କହିପାରୁ ନାହାନ୍ତି । କିଛି ସମୟ ପରେ ନିଜ କୋହକୁ ସମ୍ଭାଳି ନେଇ ଏବଂ ଗୋଟାଏ ଦୀର୍ଘଶ୍ୱାସ ପକେଇ ସେ କହିଲେ, ''ସେଇ ସେତକ ଯଦି ହେଇ ପାରୁଥାଆନ୍ତା, ତେବେ ଭାରତବର୍ଷଟା ଏତେବେଳକୁ ସୁନାର ଭାରତବର୍ଷରେ ପରିଣତ ହୋଇ ସାରନ୍ତାଣି ।'' ଏତକ କହିସାରି ଚୁପ୍ ହେଇ ଚଳକୁ ମୁହଁ ପୋତି ଚେଆରରେ

ବସି ରହିଲେ । ଗୋଲ ଟେବୁଲ ବୈଠକରେ ମହାତ୍ମାଗାନ୍ଧୀ ଯେମିତି ମେମୋରେଣ୍ଡମ୍‌ଟା ଧରାଇ ଦେଇ ବଡ଼ ଗମ୍ଭୀର ହେଇ ବସି ରହିଥିଲେ ।

ମୁଁ ତାଙ୍କ ମୁହଁକୁ ଦେଖୁଥିଲି । ଯେମିତି ଅନେକ ଦୁଃଖ ଓ ଚିନ୍ତାର ରଙ୍ଗସବୁ ତାଙ୍କ ମୁହଁରେ ଉକୁଟି ଉଠୁଚି । ତାଙ୍କର ସେଇ ପଦେ କଥାରେ ମୁଁ ବଡ଼ ଅପ୍ରସ୍ତୁତ ହେଇ ପଡ଼ିଲି । ମୋ ପାଖରେ ସେଠୁ ଖସିଯିବାର କିଛି ବାଟ ନଥିଲା । ଗୋଟେ ବିରାଟ ସାମ୍ରାଜ୍ୟ ଯେତେବେଳେ ତାଙ୍କ ହାତ ମୁଠାରୁ ଖସି ନଯାଇପାରି ତ୍ରାହିତ୍ରାହି ଡାକ ଛାଡ଼ିଥିଲା ଏବଂ ଶେଷରେ ଆତ୍ମ ସମର୍ପଣ କରି ଦେଶ ଛାଡ଼ି ପଳାଇଲା, ସେତେବେଳେ ମୁଁ କିଏ ? ମୁଁ ତ ଅତି ନଗଣ୍ୟ ।

ମୁଁ ବି ଏଥର କେମିତି ତାଙ୍କଠାରୁ ମୁକ୍ତି ପାଇବି ସେକଥା ଚିନ୍ତା କରୁଥିଲି । ଏଥର ସାହସ ସଞ୍ଚୟ କରି କହିଲି, ''ହଉ, ଆପଣଙ୍କ କଥା କୁହନ୍ତୁ । ଆପଣ ଯଦି ସେ ଏମ୍.କେ. ଗାନ୍ଧୀ ନୁହନ୍ତି, ତେବେ କୁହନ୍ତୁ ଆପଣ କଅଣ ଗୁହାରି କରିବାକୁ ଆସିଚନ୍ତି, କୁହନ୍ତୁ ଶୀଘ୍ର । ମୋର ସମୟ ଯଥେଷ୍ଟ କମ୍ । ଅନେକ କାମ ତେଣେ ବାକି ପଡ଼ିଚି । ଅନେକ ମିଟିଂ ଅଛି । ଚିଫ୍‌ଙ୍କ ସହିତ ଓ ହେଡ୍‌ସ ଅଫ୍ ଦି ଡିପାର୍ଟମେଣ୍ଟ ସହିତ । ଆସନ୍ତାକାଲିଠୁ ମାସିକିଆ ବିଧାନସଭା ବସିବ । ସେଠି ଉତ୍ତର ଦରକାର ହୁଏନି । ଖାଲି ପ୍ରଶ୍ନ । ମୋତେ ପ୍ରସ୍ତୁତ ହେବାକୁ ପଡ଼ିବ । ଏଠି ଏସବୁ କାମରେ ବ୍ୟସ୍ତ ରହିବାକୁ ମୋର ବେଳ ନାହିଁ ? ହଁ କୁହ । ଆଗରୁ ପ୍ରସ୍ତୁତ ହେଇ ଆସିଥାଆନ୍ତ ସିନା ।''

ସେ ସେମିତି ହସିଲେ ଓ କିଛି କହିବା ପୂର୍ବରୁ କାଶିଲେ ବାରମ୍ବାର ।

''ଟିକିଏ ପାଣି ପିଇବ ?'' ମୁଁ ପାଣି ଗ୍ଲାସଟାକୁ ତାଙ୍କ ଆଡ଼କୁ ବଢ଼େଇ ଦେଲି । ସେ ହାତ ହଲେଇ ମନା କଲେ । କହିଲେ ''ସାତଦିନ ହେଲା ଜଳସ୍ପର୍ଶ କରିନାହିଁ । ଆଜି ଏଠି କେମିତି ପାଣି ପିଇଦେବି ? ମୋତେ ସେମାନେ କଅଣ କହିବେ ?''

''ଜଳ ସ୍ପର୍ଶ କରିନାହଁ ? କାହିଁକି ? କିଏ କଅଣ କହିବ ? ମୁଁ ବୁଝିପାରୁନି ।''

''ସେଇ ଯୋଉମାନେ ଗେଟ୍ ସାମ୍ନାରେ ବସିଚନ୍ତି ।'' ସେ କହିଲେ ।

''ଆଃ, ସେଥିରେ ତୁମର କଅଣ ଅଛି ? ସେଇଟା ଗୋଟାଏ ଭିନ୍ନ ପ୍ରଶ୍ନ ।'' ମୁଁ ପି.ଏ.ଙ୍କୁ ଡକେଇଲି । ଶ୍ରୀକୃଷ୍ଣକୁ ମଧ୍ୟ ଡାକିଲି । ସେମାନେ ଆସି ତାଙ୍କୁ ବୁଝାସୁଝା କରି ବାହାରକୁ ନେଇଗଲେ । ମୁଁ ଗୋଟାଏ ବିରାଟ ଅସ୍ୱସ୍ତିକର ପରିସ୍ଥିତିରୁ ମୁକ୍ତି ପାଇଗଲି ବୋଲି ଭାବୁଥିଲି ଏବଂ ଟେବୁଲ ଉପରେ ମୁଣ୍ଡରେ ହାତଦେଇ ବସିଗଲି ।

କିଛି ସମୟ ପରେ ବାହାରେ କଅଣ ଗୋଟାଏ ଗୋଳମାଳ ହେବାର ଶୁଣି ମୁଁ ଦଉଡ଼ି ଆସିଲି । ଦେଖିଲି ସେ ଲୋକଟିକୁ ଘେରି ମୋର ପି.ଏ. ଓ ଅନ୍ୟ କେତେଜଣ ଠିଆ ହୋଇଛନ୍ତି । ମୁଁ ତାଙ୍କ ପାଖକୁ ଯିବାରୁ ଅନ୍ୟମାନେ ଆଡ଼େଇ ଗଲେ ।

ପଚାରିଲି, ''କଅଣ ହେଲା ।''

ସେ କହିଲେ, ''ମୁଁ ଆପଣଙ୍କ ଅଫିସକୁ ଗଲାବେଳେ ମୋ ବାଡ଼ିଟା ଏଠି ପି.ଏ. ବାବୁଙ୍କୁ ଦେଇ ଯାଇଥିଲି । ସେ ବାଡ଼ି ଅଫିସରଙ୍କ ରୁମ୍‌କୁ ନେବାର ନିୟମ ନାହିଁ ବୋଲି କହିଲେ । ଏବେ ଆସି ଦେଖୁଚି, ବାଡ଼ିଟା ନାହିଁ । ମୁଁ ଏବେ କଅଣ କରିବି ?''

ଶ୍ରୀକୃଷ୍ଣ ଏତିକିବେଳେ ଦଉଡ଼ି ଦଉଡ଼ି ସେ ଆଡୁ ଆସିଲା । ସେ ଧଇଁସଇଁ ହେଇ କହିଲା ''ଗେଟ୍ ପାଖରେ ଗୋଳମାଳ ହେବାରୁ ଏଠୁ ପୁଲିସବାଲା ଦଉଡ଼ି ଗଲାବେଳେ ବାଡ଼ିଟାକୁ ନେଇ ଯାଇଚନ୍ତି । ଏ ବାବୁ ମୋ ସାଙ୍ଗରେ ଆସନ୍ତୁ । ମୁଁ ଗେଟ୍ ପାଖରେ ସେ ବାଡ଼ିଟା ଆଣିଦେବି । ସେ ବାଡ଼ି ସେମାନଙ୍କର ଆଉ କଅଣ ହେବ ?''

('ଝଙ୍କା' ଜାନୁଆରୀ, ୨୦୦୬)

# କୋଣାର୍କର ମୃତ୍ୟୁ ପରେ

ସେ ସମସ୍ତଙ୍କ ସାମ୍ନାରେ ସେଦିନ ଘୋଷଣା କରିଦେଲେ ଯେ କୌଣସି ପ୍ରକାରେ ସେ ଭୁବନେଶ୍ୱରରେ ରହିବେ ନାହିଁ । ସେ ନିଶ୍ଚୟ ଗାଁକୁ ଚାଲିଯିବେ । ସେ କହିଲେ ଗାଁରେ ବଞ୍ଚିବାର ଯୋଉ ସ୍ୱାଦ ସେତକ ସହରରେ କୋଉଠୁ ମିଳିବ ? ଭୁବନେଶ୍ୱରଟା ମନ୍ଦିରମାଳିନୀ ହେଇପାରେ, ହେଇପାରେଏଇଟା ଗୋଟାଏ ଐତିହାସିକ ସହର, ହେଇପାରେ ମଧ୍ୟ ଏଇଟା ଓଡ଼ିଶାର ସର୍ବୋତ୍କୃଷ୍ଟ ସହର, ଗୋଟାଏ ସୁବିଦିତ ପର୍ଯ୍ୟଟନସ୍ଥଳୀ ହେଇପାରେ, ତାର ଜଳବାୟୁ ଥଣ୍ଡା ନୁହେଁ କି ଗରମ ନୁହେଁ, ହେଇପାରେ ମଧ୍ୟ ଏଠି ଅତ୍ୟାଧୁନିକ ଜୀବନଯାପନ ପାଇଁ ଶତକଡ଼ା ଶହେ ସୁବିଧା ସୁଯୋଗ ସରକାର ଯୋଗେଇ ଦେଇଛନ୍ତି, ତଥାପି ସେ କହନ୍ତି, ଭୁବନେଶ୍ୱରଟା କୌଣସି ପ୍ରକାରେ 'ଭୁବନର ଈଶ୍ୱର' ହେଇ ନପାରେ ।

ଭୂପତିବାବୁଙ୍କ ସ୍ତ୍ରୀ ରାସେଶ୍ୱରୀ ଦେବୀ ମୁଣ୍ଡରେ ହାତଦେଇ ବସିଗଲେ । ଦୁଇ ପୁତ୍ର,ଦୁଇ ବୋହୂ, ଝିଅ, ଜ୍ୱାଇଁ, ନାତିନାତୁଣୀ, ସମସ୍ତଙ୍କୁ ଡାକି ସେ କହିଲେ, ''କି ପାଗଳାମୀ ଇଏ ଦେଖିଲ । ଦୀର୍ଘ ୩୫ ବର୍ଷ ଏଇଠି କଟେଇଲ । ସହିଦନଗର ପରି 'ପସ୍' ଜାଗାରେ ଏତେବଡ଼ ଘର ତିଆରି କଲ । ସେଥିରେ ପୁଣି ମୋ ବାପା ଭାଇମାନେ ବେଳ ଅବେଳରେ ଘର ତିଆରି ପାଇଁ ଅର୍ଥବଳ ଯୋଗାଇ ଦେଲେ । ୟାଙ୍କୁ କହିଲ ଆମେ ଯଦି ଏଠି ନ ରହିବା, ତେବେ ଏଇଟାକୁ 'ପସ୍' ବୋଲି କାହିଁକି କହିବା ? ନାତି ନାତୁଣୀମାନେ ଜେଜିମାଙ୍କ 'ପସ୍'ଶବ୍ଦର ତର୍ଜମା ଶୁଣି ହସି ଦିଅନ୍ତି । ରାସେଶ୍ୱରୀ ଦେବୀ ତାକୁ ଭୃକ୍ଷେପ କରନ୍ତି ନାହିଁ । ସେ କହନ୍ତି, ଏ ପିଲା ଦି'ଟାର ମନେ ନଥିବ କି ? ଏ ଘର ତିଆରିବେଳେ ମୁଁ କି କଷ୍ଟ ନ କରିଛି । ଜୀବନଟାକୁ ପାଣିକରି ଦେଇଛି । ସେ ସିନା ଚାକିରି କରି ଟଙ୍କା ଆଣିଛନ୍ତି । କିନ୍ତୁ ଘରତ ମୁଁ ତିଆରି କରିଛି । ଏକଥା କିଏ ନଜାଣେ ? ଆଉ ଏତେ କଷ୍ଟ କଲାପରେ ଟିକିଏ ସୁଖ କରିବାକୁ ଇଚ୍ଛା କଲାବେଳକୁ, ଇଏ କହୁଛନ୍ତି କଅଣ ନା ଚାଲିଯିବା ଗାଁକୁ ।

ଆରେ ବାବୁ ତମେମାନେ ତାଙ୍କୁ ଟିକିଏ ବୁଝାଅ । କି ବାଇବୁଦ୍ଧି ଏ ? ଏତେବେଳେ

କଅଣ କିଏ ଗାଁକୁ ଯାଏ ? ହଉଓ, ଗାଁରେ ଆମର କଅଣ ଅଛି ? ହଁ, ଅବଶ୍ୟ ଜମି ଆଠ ଦଶ ମାଣ ଅଛି । ଗାଈଗୋରୁ ବି ଅଛି । ଚାଷକାମ ଚାଲିଛି । ଦୁଧ, ଦହି, ମାଛ, ମୁଗ, ସାରୁ ଚାଉଳ, ସବୁ ମିଳିବ । ତା ବୋଲି ଏ ତିନି ମହଲା କୋଠା, ଗାଡ଼ି, ଫୋନ୍, ମନ୍ଦିରର ପୂଜା- ଏସବୁ ଛାଡ଼ିଦେଇ ଆମେ ଗାଁକୁ ପଳେଇବା ? ଆରେ ବାବା, ପୁଅ ବୋହୂ, ନାତି ନାତୁଣୀରେ ଏଠି ଆମ ଘର ପୂରି ଉଠୁଛି । ସାଙ୍ଗସାଥି ବନ୍ଧୁବାନ୍ଧବ ଏମାନଙ୍କୁ ଆମେ ଛାଡ଼ି ଦେବା ? ହେଲା, ପୁଅମାନେ ବାହାରେ ଚାକିରି କରୁଛନ୍ତି । ସାତ ଦିନକୁ ଥରେ ଆସୁଛନ୍ତି । ଫୋନ୍‌ରେ ଦି'ପଦ କଥା ହେଉଛନ୍ତି । ଆଉ କେହି ନଥିଲେ ବି ତ ମୋ ଭାଇ ଏଠି ଅଛି । କହି ପଠାଇଲେ ଦଉଡ଼ି ଆସୁଛି । ଖାଲି ସେତିକି ? ପ୍ରତି ସୋମବାରକୁ ସେ ଭଜନ ମଣ୍ଡଳୀରେ ଘଣ୍ଟାଏ ବସିଗଲେ ଆତ୍ମା ପୂରିଉଠୁଛି । ଆଉ ସେ ଲିଙ୍ଗରାଜ ମନ୍ଦିର । ଯେତେବେଳେ ଇଚ୍ଛା ଦଉଡ଼ି ଯାଉଚି, ବେଲପତ୍ରଟିଏ ଦେଲେ, କେତେ ଶାନ୍ତି ମିଳୁଛି । ଏତେସବୁକୁ ଛାଡ଼ି ଆମେ ସେ ଗାଁକୁ ଯିବା ? ଯାଇ ଗୋଟିଏ ଦିନ ସେଠି ବଞ୍ଚି ପାରିବା ?

ଭୂପତିବାବୁ ସେସବୁ କଥା ଶୁଣିବାକୁ ମୋଟେ ପ୍ରସ୍ତୁତ ନୁହନ୍ତି । ସେ କହିଲେ, କଅଣ ଅଛି ଏ ସହରରେ ? ଖାଲି ଚକ୍ ଚକ୍ ସିନା, ଦେଖିବାକୁ ଧୋବ ଫରଫର । ଭିତରେ ଦେଖ କି ନାରଖାର । ସବୁ ଉପରେ ଉପରେ । ପେଟ ଭିତରେ ଅଣ୍ଡିକଟା ବୁଦ୍ଧି । ଏଠି ନା ଅଛି ଆନ୍ତରିକତା, ନା ଅଛି ହୃଦୟଦିଆ । ମଣିଷ ମରିଗଲେ କେହି କଅଣ ଧାଇଁ ଆସିବେ ? ଗାଁରେ ଦେଖ । ନିଜର ଲୋକ ପରି ଦଉଡ଼ି ଆସିବେ । ଆପଣାର ମନେକରି ସବୁ କରି ଦେଇଯିବେ । ମୁଁ ମଲେ ମରିବି ସେଇ ଗାଁରେ, ଗାଁ ମାଟିରେ । ଏଠି ଆଉ ଦିନଟିଏ ମଧ୍ୟ ରହିବି ନାହିଁ ।

ସାତଦିନ ସାତ ରାତି ଏମିତି ଘୋଳମୁଟ ଚାଲିଲା ପରେ ଶେଷରେ ଠିକ୍ ହେଲା ଯେ ଭୂପତିବାବୁ ନିଜେ ଗାଁକୁ ଯିବେ ଏବଂ ତାଙ୍କ ସ୍ତ୍ରୀ ଭୁବନେଶ୍ୱର ଘରେ ରହିବେ । ରାସେଶ୍ୱରୀଙ୍କ ସାନଭାଇର ସ୍ତ୍ରୀ ଯେତେବେଳେ ପଚାରିଦେଲେ, ''ସତରେ କଅଣ ତୁମେ ନାନୀ ଏ ବୟସରେ ଅଲଗା ହୋଇଯିବ ?''

ରାସେଶ୍ୱରୀ ଦେବୀ କହିଲେ, ''ମୋତେ ଲାଗୁଚି ତାଙ୍କୁ ସେଠି କିଏ କିମିଆ କରିଛି । କିମିଆ ନ ହୋଇଥିଲେ ଏମିତିକା ଉଦଣ୍ଡ ବୁଦ୍ଧି କିଏ ବାହାର କରେ ? ଆଜିକାଲି ଯୁଗରେ କିମିଆ ଆଉ କଅଣ ବଡ଼ କଥାଟାଏ କି ? ଟିକିଏ ପାଣି ମନ୍ତୁରା ପଡ଼ିଗଲେ ଲୋକ ମୋହ ହେଇ ଯାଉଛନ୍ତି । ଗୋଟାଏ ରାସ୍ତା ଛାଡ଼ି ଆଉ ଗୋଟିଏ ରାସ୍ତା ଧରୁଛନ୍ତି । ସେମିତି କିଛି ହେଉନଥିଲେ ଜଣେ ସାରା ଜୀବନ ଗୋଟିଏ ଜାଗାରେ କଟେଇ ଏବେ କହନ୍ତା. ଏ ବୟସରେ ଯାଇ ଗାଁରେ ରହିବା ? ଏସବୁ ବାବନା ବୁଦ୍ଧି ନୁହେଁ ?''

ଭୂପତିବାବୁ ଚାଲିଗଲେ । ସେ ତାଙ୍କ ବିଛଣାପତ୍ର, ଲୁଗାପଟା, ଗୀତା, ଭାଗବତ, ଯୋଗବହି, ଲକ୍ଷ୍ମଣ ମିଶ୍ରଙ୍କ ସହଜ ଚିକିତ୍ସା, ମଦନ ମୋହନ ପ୍ରଧାନଙ୍କ 'କୃଷିବିଜ୍ଞାନ' ଏବଂ

ଶ୍ରୀରାମ ଶର୍ମାଙ୍କ 'ଗାୟତ୍ରୀ ମହାମନ୍ତ୍ର' ଇତ୍ୟାଦି ଯେତେ ତାଙ୍କର ବହି ଓ ଚଟିବହି ଇତ୍ୟାଦି ଥିଲା ଏବଂ ଯାହାକୁ ନେଇ ସେ ଅବେଳରେ ବସି କିମ୍ବା ସଞ୍ଜବେଳେ ଠାକୁର ଘରେ ପଢ଼ାପଢ଼ି କରୁଥିଲେ, ସାଙ୍ଗସାଥିମାନଙ୍କୁ କହୁଥିଲେ 'ତାକୁ ନିତି ଥରେ ନପଢ଼ିଲେ ମୋତେ ରାତିରେ ନିଦ ହୁଏନା', ସେସବୁକୁ ବାନ୍ଧି ଘରକୁ ନେଇଗଲେ ।

ରାସେଶ୍ୱରୀ ଦେବୀ ଆଉ ତାଙ୍କୁ ସେଥିରେ ବାଧା ଦେଇ ନଥିଲେ । ସେ କହିଲେ ଯେ ଲୋକଟା ଧର୍ମକାମ କରିବାକୁ ଯାଉଛି ଯଦି ଯାଉ । ଧର୍ମ କାମକୁ କିଏ ମନା କରିବ ? କାହିଁକି ? ସେ କିନ୍ତୁ ଏକୁଟିଆ ଭୁବନେଶ୍ୱରରେ ରହିଗଲେ । ସେ କହିଲେ, ''ମୋର କିଛି ଅସୁବିଧା ହେବ ନାହିଁ । ପିଲାମାନେ ତ ମଝିରେ ମଝିରେ ଆସୁଛନ୍ତି । ଘରଭଡ଼ା ମାସକୁ ମସେ ୧୦/୧୨ ହଜାର ମିଳିଯାଉଛି । ମୁଁ କଅଣ ତାଙ୍କର କେଇଟା ଟଙ୍କାର ସାମାନ୍ୟ ପେନସନ୍ ଉପରେ ନିର୍ଭର କରିଚି ?''

ଭୂପତିବାବୁ ସେଦିନ ଗାଁରେ ଗୋଟିଏ ମିଟିଂ କଲେ । ସେ ସମସ୍ତଙ୍କୁ ବୁଝେଇଦେଲେ । କହିଲେ, ''ମୋତେ ଦେଖ, ମୁଁ ସହରର ସବୁ ସୁଖସୁବିଧା ଫୋପାଡ଼ି ଦେଇ ଏଠାକୁ ଚାଲିଆସିଛି । ଏଇଟା ମୋର ଜନ୍ମମାଟି, ମୁଁ ଦେଖୁଛି ଏଠି କାମ କରିବାକୁ କେହି ନାହିଁ । ସମସ୍ତେ ସହରକୁ ପଳେଇଲେ ଗାଁ କଥା କିଏ ବୁଝିବ ? ଦେଖ, ଏ ଗାଁଟା କେମିତି ନଷ୍ଟ ହୋଇଗଲାଣି। ଆମ ମନ୍ଦିର ଭାଙ୍ଗିଗଲାଣି, ପୋଖରୀ ପୋତି ହୋଇଗଲାଣି, ସ୍କୁଲରେ ଦିନବେଳେ ବିଲୁଆ ଖେଳୁଛନ୍ତି, ପଞ୍ଚାୟତ ଅଫିସ ୨୪ ଘଣ୍ଟା ତାଲା ପଡ଼ିଛି, ଆଉ ଏଠି ଖଣ୍ଡମଣ୍ଡଳରେ ତ ଡାକ୍ତରଖାନା ନାହିଁ, ବନମାଳୀ ପଧାନର ଯୋଉ କବିରାଜି ଔଷଧ ଦୋକାନ ଥିଲା ସେଇଟା ମଧ୍ୟ ସେ ମଲାପରେ ଆଉ ଖୋଲୁ ନାହିଁ । ହଇଓ ଆମ ମେଳଣ ପଡ଼ିଆଟାକୁ ଅଧେ ଲୋକ ମାରିନେଲେଣି ଏବଂ ଯୋଉ ଅଧକ ଅଛି, ସେଠି ଏବେ ସେଲୁନ, ବିଉଟି ପାର୍ଲର ଏବଂ ମୃଦୁ ପାନୀୟ ଦୋକାନ ଖୋଲା ହୋଇଛି । ଜାଣିଛ, ସେ ଦୋକାନ ରାତି ୧୦ଟାରେ କାହିଁକି ଖୋଲେ ?

''ଭୂପତିବାବୁ! ଏଥର ଆମକୁ କିଛି କହିବାକୁ ଦିଅନ୍ତୁ ?" ଚୌଧୁରୀ ରାମନାରାୟଣ କହିଲେ । ରାମନାରାୟଣ ବାବୁ ଗାଁର ପୁରୁଣା ଲୋକ । ତିନିଚାରି ବାଟି ଜମି ତାଙ୍କର ଅଛି । ୬ଟା ଲଙ୍ଗଳ, ୪ଟା ହଳିଆ ତାଙ୍କର ଅଛି । ଦୁଇଥର ସରପଞ୍ଚ ମଧ୍ୟ ହୋଇଥିଲେ । ଥରେ ପଞ୍ଚାୟତ ଚେୟାରମ୍ୟାନ ପାଇଁ ଶକ୍ତ ଲଢ଼େଇ କରି ହାରିଥିଲେ । ଏବେ ଦୁଇମାଇଲ ଦୂରରେ ଥିବା ପିତେଇ ନଈର ପଠାକୁ ଘେରେଇ, ଖୁବ୍ କମ୍‌ରେ ତିନିଶ ଏକର ଜମିକୁ ଜବରଦଖଲ କରି ଚିଙ୍ଗୁଡ଼ି ଚାଷ ଓ ପରିବା ଚାଷ କରୁଛନ୍ତି । ଏଥିପାଇଁ ସେ ଅବଶ୍ୟ ସରକାରରୁ 'ନାମମାତ୍ର ଚାଷୀ' ହିସାବରେ ଲୋନ୍ ଆଣିଛନ୍ତି ।

''ଆପଣ କୁହନ୍ତୁ, ନିଶ୍ଚୟ କୁହନ୍ତୁ । ସମସ୍ତେ କୁହନ୍ତୁ । ଆମ ଗାଁର ଏବେ ଯୋଉ ଅବସ୍ଥା ତାହା ଆଗ ଅପେକ୍ଷା ଭଲ ନା ଖରାପ।'' ଭୂପତିବାବୁ ପଚାରିଲେ ନମ୍ରତାର ସହିତ ।

ଚୌଧୁରୀ କହିଲେ, ''ଆମେ ତ ଗାଁ କଥା ଏତେଦିନ ଯାଏ ଦେଖିଲୁଁ । ଆଉ କେତେଦିନ ? ମୋ ଦିନକାଳ ସରିଆସିଲା । ଗାଁର ଅବସ୍ଥା ଯାହା, ଆପଣ କହିଲେ, ତାପାଇଁ କିଏ ଦାୟୀ ? ଆମେ ସମସ୍ତେ ଦାୟୀ । ଆମେ ତ କେହି କାହାକୁ ଦେଖିପାରୁନୁ । ଜଣଙ୍କର ମୁହଁ ପୂର୍ବକୁ ହେଲେ ଆଉ ଜଣକର ପଶ୍ଚିମକୁ । ଏଥିରେ ଗାଁର କାମ କେମିତି ହେବ ? ମନ୍ଦିର କଥା କିଏ ବୁଝୁଚି ନା ସ୍କୁଲ କିଏ ଦେଖୁଚି ? ଆପଣ ଜାଣିଥିବେ, ମୁଁ ସରପଞ୍ଚ ଥିଲାବେଳେ ମନ୍ତ୍ରୀଙ୍କୁ ଆଣି ରାସ୍ତାଟିଏ ପାଇଁ ଟଙ୍କା ମଞ୍ଜୁର କରେଇଲି । କିନ୍ତୁ ଜମି କିଏ ଛାଡ଼ିଲେ ତ ? ସେ କାମ ବି ସେମିତି ରହିଲା ।''

ବହୁ ବିଚାର ବିମର୍ଷ ପରେ ସେଥର ଠିକ୍ ହେଲା ଯେ, ଭୂପତିବାବୁ ପ୍ରଥମେ ମନ୍ଦିରର ନୂତନ ନିର୍ମାଣ କାମ ଆରମ୍ଭ କରିବେ ଏବଂ ଏଥିପାଇଁ ତାଙ୍କୁ ଗ୍ରାମବାସୀଙ୍କ ତରଫରୁ ସବୁ ପ୍ରକାର ସାହାଯ୍ୟ ଦିଆଯିବ । କଥାହେଲା ଯେ, ଗ୍ରାମବାସୀମାନେ ଶ୍ରମଦାନ କରିବେ ଏବଂ ଚାନ୍ଦା ମଧ୍ୟ ଦେବେ । ଭୂପତିବାବୁ ଘରଘର ବୁଲି ଚାନ୍ଦା ଆଦାୟ କଲେ, ଧାନ, ଚାଉଳ ବି ଆଦାୟ କଲେ । ତା'ପରେ ଦୁଇ ଚାରିଜଣ ନିଜର ଟୋକାଙ୍କୁ ଧରି କାମ ଆରମ୍ଭ କରିଦେଲେ । ପ୍ରଥମେ ଦେଖିଲେ, ଯାହା ମାଗି ଆଣିଥିଲେ ସେତକ ସମୁଦ୍ରକୁ ଶଙ୍ଖେ ପାଣି । ସେ ନିଜର ସେଥିରେ ମିଶେଇଲେ । ଯେଉଁ ମିସ୍ତ୍ରୀ, କୁଲି ଓ ରେଜାମାନେ ଗାଁ ବାହାରୁ ଆସିଥିଲେ ସେମାନଙ୍କୁ ସେ ନିଜ ଘରୁ ଖାଇବାକୁ ଦେଲେ । ଗୋଟାଏ ଲୋକ ରଖି ସେ ନିଜ ଘରେ ସେମାନଙ୍କ ପାଇଁ ରାନ୍ଧିଲେ । ଗାଁର ଯେଉଁମାନେ ବେଠି ଦେଉଥିଲେ ସେମାନେ ଯେଝା ଘରୁ ଖାଇଲେ । ଛଅମାସ ଭିତରେ ମନ୍ଦିର କାମ ଅଧାରୁ ବେଶି ହୋଇଗଲା । ଆଗ ମନ୍ଦିରଟା ଅନେକ ପୁରୁଣା ଥିଲା । ତାକୁ ସମ୍ପୂର୍ଣ୍ଣ ଭାଙ୍ଗି ନୂଆ ତିଆରି ହେଲା ।

ସେଦିନ ସଞ୍ଜବେଳକୁ ମନ୍ଦିର ପାଖରେ ଭୂପତିବାବୁ ମିସ୍ତ୍ରୀମାନଙ୍କ ସାଥିରେ ମନ୍ଦିର ବିଷୟରେ କଥା ହେଉଥିଲାବେଳେ ଚୌଧୁରୀବାବୁ ସେଠି ଆସି ପହଞ୍ଚିଲେ ।

''କେବେ ସରିବ ବୋଲି ଭାବୁଛନ୍ତି ଏ କାମ ?'' ସେ ପଚାରିଲେ ।

''ଏବେଠୁ କେମିତି କହିବି ? ଆହୁରି ଛଅମାସ ଲାଗିବ, ଯଦି ଗାଁ ଲୋକ ଏମିତି ସହଯୋଗ କରନ୍ତି ।''

''ଅସହଯୋଗ ହେବ ବୋଲି ଭାବୁଛନ୍ତି କି ?''

''ମୁଁ ତାକୁ ଅସହଯୋଗ ବୋଲି କହୁନାହିଁ । ସମସ୍ତଙ୍କର କିଛି ନା କିଛି ସୁବିଧା ଅସୁବିଧା ଅଛି । ଲୋକ ବେଶି ମିଳିଲେ କାମଟିଏ ଶୀଘ୍ର ହୋଇପାରନ୍ତା । ଏଆଡ଼େ ଅର୍ଥ ମଧ୍ୟ ସରି ଆସିଲାଣି । କାଲି ସିମେଣ୍ଟ, ରଡ଼ ଓ ଚିପ୍ସ ଇତ୍ୟାଦି ନ ଆଣିଲେ ପୁଣି କାମ ପଛେଇବ । ମୁଁ ଆପଣଙ୍କୁ ଆପଣଙ୍କ ଟ୍ରେଲରଟା ମାଗିଥାଆନ୍ତି । ଟ୍ରକରେ ଆଣିଲେ ଭଡ଼ା ଅନେକ ପଡ଼ିବ । ଆପଣ ଗୋଟିଏ ଓଳି ପାଇଁ ଦେଇଥାଆନ୍ତୁ ।''

''କାଲି ତ ଜମିକୁ ଖତ ବୋହିଥାଆନ୍ତା । ଠିକ୍ ଅଛି, ଆପଣ ଆଗ ନିଅନ୍ତୁ । ମୋ

କାମ ପରେ ହେବ । ଆଉ ସିମେଣ୍ଟ କଥା କଅଣ ହେବ ? ଚିପ୍ସ ଆଉ ରଡ଼ ?''

ସେ ତାଙ୍କ ନିଜ ତରଫରୁ କହି ଚାଲିଲେ । ''ମୁଁ ଖଣ୍ଡେ ଚିଠି ଲେଖିଦେବି । ପଚାଶ ବସ୍ତା ସିମେଣ୍ଟ ଓ ପାଞ୍ଚ କୁଇଣ୍ଟାଲ ରଡ଼ ନେଇ ଆସନ୍ତୁ । କିନ୍ତୁ ଗୋଟିଏ କଥା, ଏସବୁ ମୁଁ ଆପଣଙ୍କୁ ଦେଇଛି ବୋଲି କାହାକୁ କହିବେ ନାହିଁ ।''

''କାହିଁକି ? ଏଇଟା ମନ୍ଦିରର କାମ । ଧର୍ମର କଥା । ଏଥିରେ ଲୁଚାଚୋରା କଅଣ ଅଛି ?''

''କାରଣ ଅଛି, ମୁଁ ପରେ କହିବି । ଆପଣ କହିବେ ଏସବୁ ସେଠୁ ଧାରରେ ଆସିଛି ।''

ଭୂପତିବାବୁମନ୍ଦିର ପାଇଁ କାମଟାକୁ ଯେତେଦୂର ସମ୍ଭବ ସ୍ୱଚ୍ଛ ଓ ସରଳ ରଖିବାକୁ ଚାହୁଁଥିଲେ । ସବୁପ୍ରକାର ଦ୍ୱନ୍ଦ୍ୱ ଓ କୁଟିଳତାର ଉର୍ଦ୍ଧ୍ୱରେ ରହିଲେ ଭଲ । ଦେବତାଙ୍କୁ ଆମେ କୌଣସି ଛନ୍ଦର ଆବରଣ ତଳେ ନରଖି, ଅଲଗା ରଖିବା ଉଚିତ ହେବ ବୋଲି ସେ ଭାବୁଥିଲେ । ତଥାପି ସେ ଚୌଧୁରୀଙ୍କ କଥାକୁ ଟାଳି ପାରିଲେ ନାହିଁ ।

''ଠିକ୍ ଅଛି, ଆପଣ ଯେମିତି ଚାହିଁବେ ।''

''ମୁଁ ଗୋଟିଏ କଥା ଆପଣଙ୍କୁ କହିବାକୁ ଚାହୁଁଥିଲି । ଆଉ କିଛିଦିନ ପରେ ବୋଧେ ଏଇମାସ ଶେଷ ଆଡ଼କୁ ଶିକ୍ଷାମନ୍ତ୍ରୀ ରମାକାନ୍ତ ଆଚାର୍ଯ୍ୟ ଏ ଗାଁକୁ ଆସିବାର ଅଛି । ରମାକାନ୍ତକୁ ତ ଆପଣ ଜାଣନ୍ତି । ଆମ ସୁଜନପୁର ଶରତ ଆଚାର୍ଯ୍ୟର ଶଳା । ଅତି ଭଲ ଲୋକ । ମୋତେ ଟିକିଏ ମାନେ । ତାର କାରଣ, ତା ଶଶୁର ଘର ଓ ମୋ ଶଶୁର ଘର ଗୋଟିଏ ଗାଁରେ । ଭୋଟବେଳେ ସେ ଗାଁର ସବୁ ଭୋଟ ମୁଁ ତାକୁ କରେଇ ଦେଇଥିଲି । ରମାକାନ୍ତ ସେ ଗାଁର ଜ୍ୱାଇଁ ହେଲେ ମଧ୍ୟ ସେ ଭିନ୍ନ ଦଳର ଥିବାରୁ ସେ ଭୋଟ ସେ ପାଇ ନଥାନ୍ତା । ତା'ଛଡ଼ା ସେ ତ ଯୁବକ ଲୋକ । ତାକୁ ସେଠି କିଏ ଚିହ୍ନିଥିଲା । ଏବେ ସେଇ ରମାକାନ୍ତ ଏ ଗାଁକୁ ଆସିବାର ହଉଚି । ଏଠି ଦଳେ ଟୋକା ତାର ଭକ୍ତ । ସେମାନେ ଆମ ସ୍କୁଲ ପୁରସ୍କାର ବିତରଣୀ ସଭାକୁ ତାକୁ ଆଣିବାକୁ ଚାହାନ୍ତି । ମୁଁ ଭାବୁଚି, ମୁଁ ଯଦି ତାକୁ ଚାରିପାଞ୍ଚ ଲକ୍ଷ ମନ୍ଦିର ପାଇଁ ଦେବାକୁ କହେଁ, ତେବେ ସେ ମୋ କଥା ରଖିବ ।

ଭୂପତିବାବୁ ଚମକି ପଡ଼ିଲେ । ମନ୍ଦିର କାମରେ ରାଜନୀତିକୁ ଅଛୁଆଁ ଜାତି ବିଚାରିବାର କଥା । ଖାଲି ମନ୍ଦିର କାହିଁକି, ଗାଁର ଯେକୌଣସି କାମରେ ରାଜନୀତିକୁ ପୂରେଇବା କଥା ନୁହେଁ । ତାର ପଙ୍କିଳତା ଗାଁର ସବୁ କାମକୁ ପଛକୁ ପକେଇ ଦିଏ । ସେ କହିଲେ, ''ଏଥିରେ ଆମେ ଅସୁବିଧାରେ ପଡ଼ିବା । ହବା କାମଟା ବାଟରେ ଅଟକି ଯିବ ।''

ଚୌଧୁରୀ ଏଇ କଥାରେ ଆଉ ଆଗକୁ ବଢ଼ିବାକୁ ଇଚ୍ଛା କଲେ ନାହିଁ। ''ଆପଣଙ୍କ ଇଚ୍ଛା, ଆପଣ ଯଦି ଭାବୁଚନ୍ତି ଆର୍ଥିକ ଦିଗଟା ପାଇଁ ଆମର ଅସୁବିଧା ହେବ ନାହିଁ, ତେବେ ମୁଁ ମଧ୍ୟ ବ୍ୟସ୍ତ ହେବି ନାହିଁ ।''

''ଅସୁବିଧା ହେବ ନାହିଁ ବୋଲି ମୁଁ କହୁନାହିଁ । କିନ୍ତୁ ଆମେ ସମସ୍ତେ ଯଦି ଚାହିଁବା ତେବେ  କରିପାରିବା ।''

ଚୌଧୁରୀବାବୁ ଗଲା ପରେ ଭୂପତିବାବୁ ଚିନ୍ତାରେ ପଡ଼ିଗଲେ । ଯୋଉ ଟୋକାମାନଙ୍କ କଥା ସେ କହୁଥିଲେ ସେମାନଙ୍କୁ ସେ ଜାଣନ୍ତି । ସତରେ ଯଦି ମନ୍ତ୍ରୀ ଆସନ୍ତି ତେବେ ଗାଁରେ ବିଭ୍ରାଟ ସୃଷ୍ଟି ହେବ । ମନ୍ତ୍ରୀଙ୍କ ବଳରେ ଏ ବେକାର ଟୋକା ଦଳକ ମାତିବେ । ବେକାର ଯୁବକମାନଙ୍କୁ ଟଙ୍କା ଦରକାର । ଏଆଡ଼େ ମନ୍ତ୍ରୀମାନଙ୍କୁ ବେକାର ଟୋକା ଦରକାର । ପ୍ରତ୍ୟେକ ନେତା ହାତରେ କିଛି ଟୋକା ରଖନ୍ତି । ଏବର ରାଜନୀତି ଗୁଣ୍ଡା ଓ ମାଫିଆଙ୍କ ରାଜନୀତି । ତେଣୁ ମନ୍ତ୍ରୀ ଆସିଲେ ଯେ ମନ୍ଦିର କାମ ରସାତଳକୁ ଯିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ କଅଣ ମନ୍ତ୍ରୀଙ୍କ ଆସିବାକୁ ବନ୍ଦ କରି ଦେଇପାରିବେ କି ? ନା ସେଇଟା ତାଙ୍କ ଇଚ୍ଛାଧୀନ କଥା ? ଭୂପତିବାବୁ ମନ୍ତ୍ରୀଙ୍କ ଆଗମନକୁ ମହାବାତ୍ୟା ବୋଲି ମନେ କଲେ । ଏଇ ମହାବାତ୍ୟା ହିଁ ସବୁ ଦୁଃଖର ମୂଳ କାରଣ । ମନ୍ତ୍ରୀ ଓ ରାଜନେତା ଗାଁକୁ ଟଙ୍କା ଦେଉଛନ୍ତି ପ୍ରଚୁର, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଉଦ୍ଦେଶ୍ୟ ଅଲଗା । ତା'ର ଉଦ୍ଦେଶ୍ୟ ଦଳଗଠନ, ମାଫିଆଙ୍କ ଦଳ ଗଠନ, ଏଥିରେ ଉନ୍ନୟନମୂଳକ ଯୋଜନା ହୁଏ ନାହିଁ । ଏବେ ଗାଁରେ କି ସହରରେ ମଧ୍ୟ ଯୋଉ ଉନ୍ନୟନମୂଳକ ଯୋଜନାସବୁ ହେଉଛି, ସେଥିରେ କଅଣ ହେଉଛି ସେଇଟା ବଡ଼ କଥା ନୁହେଁ । କିଏ କରାଉଚି ସେଇଟା ବଡ଼ କଥା । ଯୋଜନା ଆରମ୍ଭ ପୂର୍ବରୁ ପ୍ରଥମେ ତାଙ୍କ ନାଁଟା ମାର୍ବଲ ପଥରରେ ଲେଖାହୁଏ । ଯେତିକି ଲେଖାହୁଏ ତା ଅପେକ୍ଷା ଅନେକ ବେଶି ପ୍ରଚାର ହୁଏ । ଭୂପତିବାବୁଙ୍କ ମନଟା ପିତେଇ ଉଠିଲା ।

ସେ ସେଦିନ ଗାଁର ଯୋଉ ଆଠଦଶ ଜଣ ସେ କାମରେ ତାଙ୍କୁ ଆନ୍ତରିକତାର ସହିତ ସାହାଯ୍ୟ କରିଆସୁଥିଲେ, ସେମାନଙ୍କ  ପାଖକୁ ଗଲେ । ଏଇ ଲୋକମାନେ କେବେ କୌଣସି ଦଳୀୟ ରାଜନୀତିରେ ଯାଆନ୍ତି ନାହିଁ । ରଘୁନାଥ ସେଠ କହେ, ''ନୀତିହୀନତାରେ ପଶିବା କାହିଁକି ଗୋଡ଼ ଧୋଇବା କାହିଁକି ? ତମେ ଯୋଉ ରାଜନୀତି କଥା କହୁଛ ସେ କଥା ଆମକୁ ଜଣା । ମୋର ନୀତି ଅଲଗା । ମୁଁ ସେଥିରେ ଯାଏ ନାହିଁ ।''

ଭୂପତିବାବୁଙ୍କଠାରୁ ସେମାନେ  ଯେତେବେଳେ ଚୌଧୁରୀବାବୁଙ୍କ ପ୍ରସ୍ତାବ କଥା ଶୁଣିଲେ, ସେମାନେ କହିଲେ, "ସେମାନେ ଯଦି ଚୌଧୁରୀବାବୁଙ୍କ ନେତୃତ୍ୱରେ ମନ୍ତ୍ରୀଙ୍କଠାରୁ ଟଙ୍କା ଆଣି ମଉଜ କରିବାକୁ ଚାହାନ୍ତି, କରନ୍ତୁ । ଆମେ ସେଥିରେ ବାଧା ଦେଉନୁଁ । କିନ୍ତୁ ମନ୍ଦିର ନାଁରେ କାହିଁକି ? ମନ୍ତ୍ରୀ ମନ୍ଦିର ତୋଳିବାକୁ ଅଛନ୍ତି କି ? ମନ୍ଦିର ଯଦି ତୋଳିବେ ମସ୍‌ଜିଦ ଓ ଗୀର୍ଜା ପାଇଁ ମଧ୍ୟ ଦିଅନ୍ତୁ । ସେମାନେ ଆମ ଭାଇ ନୁହନ୍ତି କି ? ସେମାନେ ବି ମନ୍ଦିର ତୋଳା କାମରେ ଚାନ୍ଦା ଓ ବେଠି ଦେଇଛନ୍ତି ।''

ରଘୁନାଥ ସେଥିରେ ମଧ୍ୟ ରାଜି ହେଲେ ନାହିଁ । ସେ କହିଲେ, ''ତଥାପି ଏଥିରେ ଗୋଳମାଳ ସୃଷ୍ଟି ହେବ । କିଏ କେତେ ପାଇଲା, ସେଥିରେ ମନ ଖୁଟ୍‌ଖୁଟ୍ ହେବ । ତେଣୁ

ମୋ ମତରେ ମନ୍ତ୍ରୀ ଦେଉଳଠାରୁ ଦୂରରେ ରହନ୍ତୁ । ମନ୍ଦିରରେ ସେ ପାପ ଟଙ୍କା ନ ପଶୁ । ଧର୍ମ କାମଟା ଅଧର୍ମରେ ପରିଣତ ନହେଉ ।''

ଭୂପତିବାବୁ ଦେଖିଲେ ମନ୍ତ୍ରୀଙ୍କ ଆସିବା କଥା ଗାଁରେ ପହଞ୍ଚିବା ମାତ୍ରେ ରାଜନୀତି ସକ୍ରିୟ ହୋଇ ଉଠିଲା । ସମସ୍ତଙ୍କ ନଜର ମନ୍ତ୍ରୀଙ୍କ ହାତମୁଠା ଆଡ଼େ ପ୍ରସରୀ ଯାଉଛି । ମାତ୍ର କେଇଟା ଲୋକ ସେଆଡ଼କୁ ମୋଟେ ନଜର ଦେଉ ନାହାନ୍ତି । ସ୍ୱାଭାବିକ ଭାବେ ଭୂପତିବାବୁ ସେଇମାନଙ୍କ ଆଡ଼କୁ ଆଉଜି ରହିଲେ । କିନ୍ତୁ ତାଙ୍କ ମନରେ ସେଇ ପ୍ରଶ୍ନଟା ସବୁବେଳେ ଉଙ୍କି ମାରିବାକୁ ଲାଗିଲା । ସେ ପାରିବେ ତ ? ଯୋଉ ଝଡ଼ଟା ତାଙ୍କ ଆଡ଼କୁ ଏବେ ମୁହାଁଇଚି, ସେ ତାକୁ ସାମ୍ନା କରିପାରିବେ ତ ?

ସେଦିନ ସକାଳ ହେଲାବେଳକୁ ତିନି ଚାରିଜଣ ଟୋକା ଆସି ଭୂପତିବାବୁଙ୍କ ଘରେ ପହଞ୍ଚିଲେ । ସେମାନେ ତାଙ୍କୁ ନମସ୍କାର କଲେ ଏବଂ ବସିବାକୁ କହିବା ପୂର୍ବରୁ ନିଜେନିଜେ ଆସନ ଠିକ୍ କରିନେଲେ । ଜଣେଇଦେଲେ ଯେ, ''ଆମେ ଫରମାଲିଟି ଖୋଜୁନା, ଆପଣାର ମନେ କଲେ ଫରମାଲିଟି ପଛକୁ ହଟିଯାଏ ।''

ସୂର୍ଯ୍ୟ କହିଲା, "ମଉସା, ଆପଣ ତ ଜାଣିଥିବେ, ମନ୍ତ୍ରୀ ଏଥର ଅନେକ କଷ୍ଟରେ ରାଜି ହେଇଛନ୍ତି ଆମ ଗାଁକୁ ଆସିବାକୁ । ଆମର ଏଠାକୁ ଆସିବାରେ ତାଙ୍କର କିଛି ସ୍ୱାର୍ଥ ନଥିଲା, କି ନାହିଁ ମଧ୍ୟ । ସେ ତ ଆମର ଏମ୍.ଏଲ.ଏ. ନୁହନ୍ତି । କେବେ ହେବେ କି ନା ଜଣାନାହିଁ । ଆମେ କିନ୍ତୁ ଖାସ୍ ସେଇଥିପାଇଁ, ମାନେ ଆମ ପାଇଁ, ସେ ଜଣେ ସ୍ୱାଧୀନ ତଥା ନିରପେକ୍ଷ ସଦସ୍ୟ ହୋଇଥିବାରୁ, ଆମ ସ୍କୁଲର ବାର୍ଷିକ ଉତ୍ସବ ପାଇଁ ଡାକିଛୁଁ । ଆପଣ ତ ଜାଣନ୍ତି, ମନ୍ତ୍ରୀମାନଙ୍କ ସ୍ୱାର୍ଥ ନଥିଲେ ଆସନ୍ତି ନାହିଁ । କିନ୍ତୁ ଆମ କଥା ଅଲଗା । ସେ ରାଜି ହେଇଛନ୍ତି । ଆମର ସୌଭାଗ୍ୟ ।ଆପଣ ଆମକୁ ଏ କାମରେ ସାହାଯ୍ୟ କରନ୍ତୁ ।''

''ସାହାଯ୍ୟ କଅଣ ? ଆପଣ ଆମର ନେତୃତ୍ୱ କିଣନ୍ତୁ ।'' କହିଲା ରମେଶ । ସୂର୍ଯ୍ୟର ବନ୍ଧୁ ।

''କିନ୍ତୁ ମୁଁ ତ ତୁମମାନଙ୍କ ସହିତ ଦଉଡ଼ ଧାପଡ଼ କରିପାରିବି ନାହିଁ । ସେ ବୟସ କଅଣ ମୋର ଅଛି । ତେବେ ମୁଁ ତୁମମାନଙ୍କ ସହିତ ଅଛି ବୋଲି ଧରି ନିଅ । ତୁମେ ଗୋଟାଏ ଭଲ କାମରେ ହାତ ଦେବ । ମୁଁ ସେଥିରେ ସହଯୋଗ କରିବି ନାହିଁ । ଏହା କିପରି କଥା ?''

''ମଉସା, ସେକଥା ଠିକ୍ ?'' ସୂର୍ଯ୍ୟ କହିଲା- ''ଅସଲ କଥାଟା ହେଉଚି ଆମେ ମନ୍ତ୍ରୀଙ୍କୁ ମନ୍ଦିର ତିଆରି ପାଇଁ ଟଙ୍କା ମାଗିବା । ଚୌଧୁରୀ ମଉସା ଆମକୁ ସାହାଯ୍ୟ କରିବାକୁ କଥା ଦେଇଛନ୍ତି । ଆମର କହିବାର କଥା, ଆପଣ ଆମକୁ ଟିକିଏ ସାହାଯ୍ୟ କଲେ କଥାଟା ସହଜ ହୋଇଯିବ । ଆଉ ତା'ଛଡ଼ା ଗ୍ରାମ ଲୋକଙ୍କୁ ମଧ୍ୟ କଷ୍ଟ କରିବାକୁ ପଡ଼ିବ ନାହିଁ । ବିଶେଷକରି ଆମ ଗାଁର ଯେଉଁମାନେ ମାଗଣାରେ ମନ୍ଦିର କାମ କରୁଛନ୍ତି, ଯେଉଁମାନଙ୍କୁ

ଆପଣ ନିଜ ଘରେ ରାନ୍ଧିବାଢ଼ି ଖୁଆଉଛନ୍ତି କିମ୍ବା ଆପଣ ଯେମିତି ଧାରରେ ବଜାରରୁ ସିମେଣ୍ଟ, ରଡ଼ ଆଣୁଛନ୍ତି, ସେମାନେ ସମସ୍ତେ କିଛି କିଛି ପଇସା ପାଆନ୍ତେ । ଗରିବ ଲୋକମାନେ ମାଗଣାରେ ମଜୁରୀ କାହିଁକି ଦେବେ ? ଏଇଟା ତ ଆଉ ରାଜା ରାଜୁଡ଼ାର ଯୁଗ ନୁହେଁ ଯେ ସେମାନେ ବେଠି ଖଟିବେ। ସମସ୍ତଙ୍କ ଲାଭ । ମନ୍ଦିରକୁ ମନ୍ଦିର ହେବ । ଗରିବଙ୍କୁ ବି ପଇସା ମିଳିବ ।''

ଭୂପତିବାବୁ ଦେଖିଲେ ସେ ଆସ୍ତେ ଆସ୍ତେ ବାଘର ଆଁ ଆଡ଼କୁ ଟାଣିହୋଇ ଚାଲିଛନ୍ତି । ତଥାପି ସେ କହିଲେ, ''ମୋର ଇଚ୍ଛା ମନ୍ଦିର ତିଆରି କାମ ଯେତେବେଳେ ସରି ଆସିଲାଣି, ଆଉ ସାମାନ୍ୟ କାମ ପାଇଁ ମନ୍ତ୍ରୀଙ୍କ ସାହାଯ୍ୟ କଅଣ ଦରକାର ? ମନ୍ଦିର ଟଙ୍କା ମୋ ପାଖରେ ଯାହା ଅଛି ସେତକରେ ପ୍ରାୟ ହୋଇଯିବ।ନିହାତି ଦରକାର ହେଲେ ଚୌଧୁରୀବାବୁ ଅଛନ୍ତି । ସେ ମନା କରିବେ ନାହିଁ । ଏଥିରେ ଆମେ ଅଯଥାଟାରେ ମନ୍ତ୍ରୀଙ୍କୁ ଜଡ଼ିତ ନକଲେ ଭଲ ହୁଅନ୍ତା । ଆଉ ଗୋଟିଏ କଥା ହେଉଛି, ଲୋକେ ନିଜ ହାତରେ, ନିଜ ଦାନରେ ଯୋଉ କାମ କରିବେ, ତାହା ଗୋଟାଏ କଥା ଏବଂ ଯାହା ଅନ୍ୟର ଅର୍ଥରେ ହେବ, ତାହା ଆଉ ଗୋଟାଏ କଥା । ତେଣୁ ମୁଁ ଭାବୁଚି ମନ୍ତ୍ରୀ ମନ୍ଦିର ପାଇଁ ନଦେଇ ବରଂ ସ୍କୁଲ ତିଆରି କି ରାସ୍ତା ତିଆରି ପାଇଁ ଦିଅନ୍ତୁ । ସେଥିରେ ଆମେ ବେଶି ଟଙ୍କା ତାଙ୍କଠୁ ପାଇପାରିବା ।''

''ସେ କଥା ଆମେ ଜାଣିଚୁଁ ମଉସା । ସ୍କୁଲ ପାଇଁ କିଛି ବର୍ଷ ତଳେ ଦଶଲକ୍ଷ ଟଙ୍କା ମଞ୍ଜୁର ହୋଇଥିଲା । ସ୍କୁଲର ମୂଳଦୁଆ ଦେଉ ଦେଉ ସେତକ ସରିଗଲାଣି ବୋଲି କହୁଛନ୍ତି । ରାସ୍ତା ପାଇଁ ଗଲା ମନ୍ତ୍ରିମଣ୍ଡଳ ଦେଇଥିଲେ, ଦୁଇଟା ପୋଲ ପାଇଁ ଚାରି ଲକ୍ଷ । ଯୋଉମାନେ ଠିକା ନେଇଥିଲେ ସେମାନେ ତାଙ୍କ ଲୋକ । ସେମାନେ ଏବେ ପଞ୍ଚାୟତରେ ଓ ଜିଲ୍ଲା ପରିଷଦରେ। ଏବେ ଦୁଇଟିଯାକ ଅଫିସରେ ତାଲା ପଡ଼ିଛି । ଖାଲି ଏଇ ମନ୍ଦିରଟା ବାକି ଅଛି । ଆପଣ ଯଦି କହିବେ.....''

ଭୂପତିବାବୁଙ୍କ ମୁଣ୍ଡ ବୁଲେଇଦେଲା । ସମଗ୍ର ଗାଁଟା ଟାକ ଯେତେବେଳେ ପାପଗର୍ଭରେ ବୁଡ଼ି ରହିଛି ସେ ତାକୁ କେମିତି ଉଦ୍ଧାର କରିବେ ? ସେ ଯଦି ଜାଣି ଥାଆନ୍ତେ ତାଙ୍କ ପିଲାବେଳର ଗାଁ ଏଇଟା ନୁହେଁ । ଯୋଉ ଶରଧାପୁରର ସ୍କୁଲ ତାଙ୍କୁ ଏତେ ଆକୃଷ୍ଟ କରିଥିଲା ଯେ, ସେ ରାଜଧାନୀର ଚାକଚକ୍ୟ ଛାଡ଼ିଦେଇ ଏଠାକୁ ପଳେଇ ଆସିଥିଲେ ନିଜର ପିଲାବେଳକୁ ଏଠି ଖୋଜିବା ପାଇଁ, ସେ ଗାଁ ଆଉ ନାହିଁ, ମଶାଣିରେ ପରିଣତ ହେଇଯାଇଛି, ତେବେ ସେ ମୋଟେ ଏଠାକୁ ଆସି ନଥାଆନ୍ତେ । ତାଙ୍କର ସେତେବେଳେ ରାସେଶ୍ୱରୀ ଦେବୀଙ୍କ କଥା ମନେ ପଡ଼ିଲା । ସେ ଯାହା କହିଥିଲେ, ଠିକ୍ କହିଥିଲେ । ଯୋଉ ଶରଧାପୁରରେ ନିଜେ ଶରଧାମାନ ପୂରି ରହିଥିଲା, ତାର ମହମହ ବାସ୍ନା ସମଗ୍ର ବାୟୁମଣ୍ଡଳକୁ ମହକାଇ ଦେଉଥିଲା, ସେଠି ଆଜି ନର୍ଦ୍ଦମାର ଗନ୍ଧରେ ନାକ ଫାଟି ପଡୁଛି। ସେ ବ୍ୟତିବ୍ୟସ୍ତ ହୋଇ ପଡ଼ିଲେ । ତାଙ୍କ ଭିତରଟା ଯେମିତି ହାହାକାର କରି ଉଠିଲା । ସେ ନିଜ ଭିତରର ସମସ୍ତ କାକୁସ୍ଥ

କାତରତାକୁ ଚାପି ରଖି ହଠାତ୍ କହି ପକାଇଲେ, ''ତେବେ କଅଣ ଶେଷରେ ଏଇ ମନ୍ଦିରଟା ଖାଇବାକୁ ଅଛି ?'' ହଠାତ୍ ସେ ସଚେତନ ହେଇଗଲେ ଏବଂ କହିଲେ, ''ମାନେ ମୁଁ କହିବାକୁ ଚାହୁଁଥିଲି ସେ.....''

''ଆପଣ ଠିକ୍ କହିଛନ୍ତି ମଉସା । ଆପଣଙ୍କ ଅନ୍ତରର କଥା ହିଁ ବାହାରକୁ ବାହାରି ପଡ଼ିଛି ।'' ରମେଶ ଏଯାଏ ଖୁବ୍ ଗମ୍ଭୀର ଦେଖା ଯାଉଥିଲା । ଅନ୍ତତଃ ଆଉ ତିନିଚାରିଜଣଙ୍କ ଭିତରେ ତାର ବୟସ ଥିଲା ବୋଧେ ସବୁଠୁ ବେଶି ଏବଂ ସେ ମଧ୍ୟ ଥିଲା ଅପେକ୍ଷାକୃତ ଅଧିକ ମାର୍ଜିତ ।

ସେ କହିଲା, ''ଆପଣ ତ ତିରିଶ ବର୍ଷରୁ ବେଶି ରହିଲେ ସହରରେ । ସହରରେ ରହିବା ଦ୍ୱାରା ଆପଣଙ୍କ ପିଲାମାନେ ସମସ୍ତେ ପାଠପଢ଼ି ପାରିଲେ । ସେମାନେ ଚାକିରି ମଧ୍ୟ କଲେ । ଆଉ ଆମେ ତ ଏଠି ଗାଁରେ ପଡ଼ି ରହିଲୁଁ । ଯଦି ବା କୌଣସି ପ୍ରକାରେ ସାଇକେଲରେ ଆଠ ମାଇଲ ଦୂର କଲେଜକୁ ଯାଇ ପାଠ ପଢ଼ିଲୁଁ, ତା'ପରେ ? ହେଇ ଦେଖନ୍ତୁ, ମୁଁ ଏମ୍.ଏ. ପାଶ୍ କରିଛି । ଇଏ ଡିପ୍ଲୋମା ଇଞ୍ଜିନିୟର । ଆଉ ଇଏ ଗୋଟାଏ ପ୍ରାଇଭେଟ କଲେଜରେ ବି.ଏଡ୍ କରୁଛି । ତା'ପରେ ? ଆପଣ ଜାଣନ୍ତି, ଆମେ ସବୁ ସକାଳ ହେଲେ ଘରୁ ବାହାରି ଆସୁଁ ଏବଂ ରାତି ହେଲେ ଘରକୁ ଯାଉଁ, ନଚେତ୍ ଅନ୍ୟ କୋଉଠି ଶୋଇପଡୁଁ । ବାପା ମାଆଙ୍କୁ ମୁହଁ ଟେକି ଦେଖିବାର ସାହସ ଆମର କାହାରି ନାହିଁ କି ସେମାନଙ୍କର ମଧ୍ୟ ରାତି ପାହିଲେ ଆମ ମୁହଁ ଦେଖିବାର ଇଚ୍ଛା ନାହିଁ ।''

ସେ ଟିକିଏ ଦମ୍ ନେଲା ତା'ପରେ କହିଲା ''ଆମର ଅନେକ ପୂର୍ବରୁ ଆମର ପୂର୍ବସୁରୀମାନେ ଆମ ଗାଁର ରାସ୍ତା ଓ ସ୍କୁଲ କାମ ଠିକା ନେଇ ଆରାମରେ ବସିଛନ୍ତି । ତାଙ୍କୁ କେହି କଥା ବି କହିପାରୁ ନାହିଁ । ସେମାନେ ହୁଏତ ଆଉ ଗୋଟିଏ ନିର୍ବାଚନକୁ ଅପେକ୍ଷା କରୁଥିବେ । ଅପେକ୍ଷା କରୁଥିବେ ସମୟର ଚକ ଗଡ଼ିଗଡ଼ି ଆସି ତାଙ୍କ ପାଖରେ ପହଞ୍ଚିବାକୁ । ଯୋଉ ଅବସ୍ଥା ଆମ ରାଜନୀତି ଏବେ ସୃଷ୍ଟି କରିଛି ସେଥିରେ ଯୁଗ ଯୁଗକୁ ଆମ ଗାଁକୁ ରାସ୍ତା ଫିଟିବ ନାହିଁ । ଯୁଗ ଯୁଗକୁ ଆମ ଭାଗ୍ୟର ରାସ୍ତା ମଧ୍ୟ କେହି ଫିଟେଇବାକୁ ନାହିଁ ।

ଭୂପତିବାବୁଙ୍କ ଭିତରେ ସେତେବେଳେ ଦୁଃଖ, ହତାଶା, ଗ୍ଲାନିର ଗୋଟିଏ ସମ୍ମିଳିତ ତୁଫାନ ଉଠି ଆସିଲା । ପ୍ରଚଣ୍ଡ କ୍ରୋଧର ଘୂର୍ଣ୍ଣିଟିଏ ତାଙ୍କ ଚାରିପଟେ ଘୂରିବୁଲି ତାଙ୍କୁ ଅଣନିଃଶ୍ୱାସୀ କରିପକାଉ ଥାଏ । କିନ୍ତୁ ସେ ବୁଝିପାରୁ ନଥାନ୍ତି ଏ କ୍ରୋଧ କାହା ବିରୁଦ୍ଧରେ । ଅନାବଶ୍ୟକ ଭାବେ ସୃଷ୍ଟି ହେଇଥିବା ଧ୍ୱଂସକାରୀ ସିଷ୍ଟମ ବିରୁଦ୍ଧରେ ନା ଅବସ୍ଥାଚକ୍ରରେ ପଡ଼ି ଅନୀତିଟାକୁ ପେଷା କରିବାକୁ ପଣ କରିଥିବା ଯୁବକମାନଙ୍କ ବିରୁଦ୍ଧରେ ? ସେ କାହାକୁ ଦୋଷ ଦେବେ ? ସରକାରକୁ ନା ନିଃସ୍ୱାର୍ଥ ଭାବରେ କିଛି କାମ କରିବାର ଇଚ୍ଛା ପୋଷଣ କରୁଥିବା ନିଜକୁ ? କିଏ ତାଙ୍କୁ ସେ ଉତ୍ତର ଦେବ ?

ଭୂପତିବାବୁ କେବେ ଅନ୍ୟାନ୍ୟ ସହିତ ସାଲିସ୍ କରିନାହାନ୍ତି । ତାଙ୍କର ଦୀର୍ଘ ଚାକିରି

କାଳରେ ସେ ବହୁ ଅଫିସ୍‌ର ବହୁ ରାଜନେତାଙ୍କ ସଂସ୍ପର୍ଶରେ ଆସିଛନ୍ତି । ବହୁ ଘଟଣା ଓ ଦୁର୍ଘଟଣାର ସମ୍ମୁଖୀନ ମଧ୍ୟ ହୋଇଛନ୍ତି । କିନ୍ତୁ ନୀତିକୁ ସେ ପାଶୋରି ଦେଇନାହାନ୍ତି । ସେଥିପାଇଁ ଅବଶ୍ୟ ତାଙ୍କୁ ବହୁ ମୂଲ୍ୟ ଦେବାକୁ ପଡ଼ିଚି । କିନ୍ତୁ ସେ ତାଙ୍କ ରାସ୍ତାରୁ ଅଲଗା ହେଇ ନାହାନ୍ତି । ସେ ଠକିଛନ୍ତି କିନ୍ତୁ କାହାକୁ ଜୀବନରେ ଠକେଇ ନାହାନ୍ତି । ଜୀବନର ଗୋଟାଏ ମହାନ ଆଦର୍ଶକୁ ସେ ସବୁବେଳେ ନିଜର କରି ସାଇତି ଥାଆନ୍ତି ।

ସେ ଆଖିରୁ ଲୁହ ପୋଛିଲେ । ଯୁବକମାନଙ୍କର ଦୟନୀୟ ଅବସ୍ଥା କଥାଶୁଣି ସେ ହୁଏତ ବରଫ ପରି ତରଳି ଯାଇଥିବେ । କିନ୍ତୁ ଗୋଟିଏ ପଟେ ତାଙ୍କର ଅସହାୟତା ଓ ଅନ୍ୟପଟେ ତାଙ୍କର ନୀତିଗତ ସ୍ୱାଭିମାନ, ତାଙ୍କୁ ଦୁଇପଟୁ ଭିଡ଼ି ଧରିଥିଲେ । ଏ ମାନସିକ ଦ୍ୱନ୍ଦ୍ୱ ଭିତରେ ସେ କୋଉଟାରେ ଜୟଲାଭ କଲେ କେଜାଣି । ସେ ନିମିଷକ ପାଇଁ ସ୍ଥିର ହୋଇଗଲେ ଏବଂ କହିଲେ ''ମୋତେ ଟିକିଏ ସମୟ ଦିଅ । ମୁଁ ଅନ୍ୟମାନଙ୍କୁ ପଚାରି ତୁମକୁ କହିବି । ଗାଁର ସମସ୍ତଙ୍କୁ ନ ପଚାରି....''

ସେମାନେ ଉଠିଲେ ।

ତା'ପରେ ଆଉ ଭୂପତିବାବୁ ସେମାନଙ୍କୁ ଭେଟି ନାହାନ୍ତି କି ସେମାନେ ମଧ୍ୟ ଭୂପତିବାବୁଙ୍କୁ ଖୋଜି ନାହାନ୍ତି । ଏ ଦୁଇଦଳଙ୍କ ଭିତରେ ଗୋଟାଏ ଅସ୍ୱାଭାବିକ ନିରବତା ସେମାନଙ୍କୁ ଅଲଗା କରିଦେଇଛି ।

ମନ୍ତ୍ରୀଙ୍କ ଆସିବା ଦିନକୁ ସମସ୍ତେ ହୁଏତ ଅପେକ୍ଷା କରିଥିଲେ । ଦଳେ ତା'ପାଇଁ ପ୍ରସ୍ତୁତି ପର୍ବ ତିଆରି କରୁଥିବାବେଳେ ଭୂପତିବାବୁଙ୍କ ନେତୃତ୍ୱରେ ଆଉଦଳେ ମନ୍ଦିରକୁ ନେଇ ନିଜର ସ୍ୱାଭାବିକତା ଭିତରେ ବୁଡ଼ି ରହିଥିଲେ । ତେବେ ସମୟ ଯେତିକି ପାଖେଇ ଆସୁଥାଏ ଭୂପତିବାବୁ ସେତିକି ନିଜକୁ ଗୋଟିଏ ଭୟଭୀତ କଇଁଛ ପରି ନିଜର ମୁଣ୍ଡ ଖୋଳପା ଭିତରକୁ ନେଇଯାଉ ଥାଆନ୍ତି ।

ଶେଷରେ ମନ୍ତ୍ରୀଙ୍କ ଆସିବାର ଶୁଭ ଦିନଟି ଆସି ପହଞ୍ଚିଲା । ସେଦିନ ସକାଳ ହୋଇଥିଲା ଠିକ୍ ସମୟରେ ଏବଂ ପୂର୍ବଦିଗରେ ସୂର୍ଯ୍ୟ ମଧ୍ୟ ଉଦୟ ହୋଇଥିଲେ ନିର୍ଦ୍ଧାରିତ ସମୟରେ । କିନ୍ତୁ ଭୂପତିବାବୁ ଯେତେବେଳେ କାହାର ଡାକରେ କେଜାଣି, ନିଦରୁ ଉଠି କବାଟ ଖୋଲି ବାହାରକୁ ଆସିଲେ, ତାଙ୍କୁ ଜଣାଗଲା ଯେମିତି ଦିନର ସୂର୍ଯ୍ୟାଲୋକ ବିଗତ ରାତିର ଅନ୍ଧକାରକୁ ଠେଲି ପୃଥିବୀକୁ ସମ୍ପୂର୍ଣ୍ଣ ଆଲୋକିତ କରିବା ପାଇଁ ଯଥେଷ୍ଟ ନୁହେଁ । ରାତିର କରାମତି ଯେମିତି ତଥାପି ଯଥେଷ୍ଟ ପ୍ରଭାବଶାଳୀ ମନେ ହେଉଥିଲା ।

''ସବୁ ସରିଯାଇଛି ଭୂପତିବାବୁ । ମନ୍ଦିରଟାକୁ ପୂରାପୂରି ଧୂଳିସାତ୍ କରି ଦିଆଯାଇଛି କାଲି ରାତିରେ । ମୋର ମନେ ହେଉଛି ମନ୍ଦିର ତଳେ ସେମାନେ କିଛି ବାରୁଦ ରଖି ନିଆଁ ଲଗେଇ ଦେଇଥିବେ । ତା' ନହେଲେ ଏତେବଡ଼ ମନ୍ଦିରଟା ଏମିତି ମାଟିରେ ମିଶିଯାଇ ଥାଆନ୍ତା ?''

ଭୂପତିବାବୁ ପ୍ରଥମେ ସ୍ତବ୍ଧ ହୋଇଗଲେ ଏବଂ ତା'ପରେ ଭାବିଲେ ଯେତିକି ବାରୁଦ ମୁଁ ସେଦିନ ସେମାନଙ୍କ ଭିତରେ ଦେଖିଥିଲି, ତାର ସାମାନ୍ୟ ଅଂଶଟିଏ ମଧ୍ୟ ସେ ମନ୍ଦିରକୁ ଧ୍ୱଂସ କରିଦେବାକୁ ଯଥେଷ୍ଟ । କିନ୍ତୁ ସେ ମୁହଁ ଖୋଲିବା ପୂର୍ବରୁ କାଳିଆ ପୁଣି ଥରେ କହିଲା, "ମୁଁ ଆହୁରି କଅଣ ଶୁଣିଲି ଜାଣଚି ? ମନ୍ତ୍ରୀ କୁଆଡ଼େ ଚୌଧୁରୀବାବୁଙ୍କ ନିକଟକୁ ଖବର ପଠାଇଛନ୍ତି, ସେ ଦଶଲକ୍ଷ ଟଙ୍କା ଆଣି ଏଇଠି ଦେଇଯିବେ । ମନ୍ଦିରଟା କୁଆଡ଼େ ପୁରୀ ଓ କୋଣାର୍କ ପରି ତିଆରି ହେବ ।''

''ମୁଁ ତ ତାହାହିଁ ଆଶା କରୁଥିଲି କାଳିଆ ! ମୋ ମନକୁ ଏମିତିକା ଗୋଟେ ଧାରଣା କାହିଁକି କେଜାଣି କେତେଦିନ ହେଲା ଆସୁଥିଲା । ଆମ ଗାଁରେ ଯଦି ଅପକୀର୍ତ୍ତିର କୋଣାର୍କଟିଏ ସେମାନେ ତିଆରି କରିବେ, ତେବେ ସେଥିରେ କାହାରି କିଛି କରିବାର ନାହିଁ । ଆମର କୀର୍ତ୍ତିର କୋଣାର୍କ ଧ୍ୱଂସ ହେଇ ସାରିଥିବାବେଳେ ସମୟର ଆଉ ଗୋଟିଏ କୋଣାର୍କ ଗଢ଼ି ଉଠୁ । ଏଥିରେ ଦୁଃଖ କରିବାର କଅଣ ଅଛି ?''

# ପାପ

୧୯୭୯ ମସିହାର କଥା-

ଶେଷରେ ମୋତେ ରାଞ୍ଚି ଯିବାକୁ ହିଁ ପଡ଼ିଲା । ଗୋଟିଏ ଅର୍ଦ୍ଧସାମରିକ ବାହିନୀରେ ଚାକିରି କଲେ ଶୃଙ୍ଖଳାର ଅନ୍ୟନାମ ଯେ ପରାଧୀନତା ଏକଥା ସବୁବେଳେ ମନେ ରଖିବାକୁ ହୁଏ । ତଥାପି ମୁଁ ଚେଷ୍ଟା କରୁଥିଲି ଯେତେସବୁ ସମ୍ଭାବ୍ୟ ମାଧ୍ୟମକୁ ବ୍ୟବହାର କରି ନିଜର ଏକାନ୍ତ ପାରିବାରିକ ସମସ୍ୟା ସହିତ ଚାକିରିର ସାଲିସ୍ ନକରି କାମ କରିଯିବାକୁ । ସେତକ ହେଲା ନାହିଁ । ମୋତେ ସେମାନେ ରିଲିଭ କରିଦେଲେ । ମୋର ଡି.ଆଇ.ଜି. ମୋତେ କହିଲେ, ଯାଆନ୍ତୁ ବର୍ଷେଖଣ୍ଡେ ସେଠି ରହନ୍ତୁ, ତା'ପରେ ଦେଖିବା । ଆଉଥରେ ଦିଲ୍ଲୀରେ ଚେଷ୍ଟା କରିବା ।

ମୁଁ ରାଞ୍ଚି ଯିବାକୁ ଏଇଥିପାଇଁ ଚାହୁଁ ନଥିଲି ଯେ ସେଠାକାର କାରଖାନାର ଅବ୍ୟବସ୍ଥା, ଆଇନ ଶୃଙ୍ଖଳା ପରିସ୍ଥିତି ଏବଂ ବିଶେଷକରି ସେଠାର ଅପରାଧ ପ୍ରବଣତା ସହିତ ମୁଁ ନିଜକୁ ପ୍ରଶାସନ  ସହିତ ଖାପ ଖୁଆଇ ପାରିବି ନାହିଁ ବୋଲି ଭାବୁଥିଲି। ବିହାର ଏକ ସ୍ୱତନ୍ତ୍ର ରାଜ୍ୟ । ତାର ଅପରାଧ ରାଜ୍ୟ କଥା ଯିଏ ଥରେ ଶୁଣେ ସେ ଚମକି ପଡ଼େ ।

ସେତେବେଳେ ରାଉରକେଲାରୁ ରାଞ୍ଚି ଯିବାକୁ ମାତ୍ର ଗୋଟିଏ ରାସ୍ତା । ରେଳରେ । ସଡ଼କ ରାସ୍ତା ନଥାଏ କହିଲେ ଚଳେ । ରେଳରେ ମଧ୍ୟ ଗୋଟିଏ ଟ୍ରେନ୍ । ରାଉରକେଲା-ହାତିଆ ପାସେଞ୍ଜର । ସକାଳ ୯ଟାରେ ବାହାରି ଗୋଟିଏ ବଣୁଆ ଅଜଗର ଗତିରେ ଯାଇ ହାତିଆ ଷ୍ଟେସନରେ ପହଞ୍ଚେ ସନ୍ଧ୍ୟା ୫ଟାରେ । ମୁଁ ଟିକିଏ ଆରାମରେ ଯିବି ବୋଲି ଦିନକ ଆଗରୁ ତାର ଫାଷ୍ଟକ୍ଲାସରେ ଗୋଟିଏ ରିଜରଭେସନ୍ କରିଦେଇ ରାଞ୍ଚି ୟୁନିଟ୍‌କୁ ମୋର ଯିବା କଥା ଜଣେଇ ଦେଲି ।

ବନ୍ଧୁମାନେ ଆସି ମୋତେ ଷ୍ଟେସନରେ ବିଦାୟ ସମ୍ବର୍ଦ୍ଧନା ଜଣେଇଲେ । ଅନେକ ଦିନ ପରେ ରାଉରକେଲା ଛାଡୁଥିବାରୁ ଏବଂ ଏଇଟା ମୋର ପ୍ରଥମ ବଦଳି ହେଉଥିବାରୁ

ମୋ ଭିତରେ ଗୋଟାଏ ଅହେତୁକ ଦୁଃଖ ମୋତେ ଆବୋରି ପକାଉଥାଏ । ଗାଡ଼ି ଛାଡ଼ିଦେଲା । କମ୍ପାର୍ଟମେଣ୍ଟରେ ମୁଁ ଏକୁଟିଆ । ଗୋଟାଏ ତଳ ବର୍ଥରେ ମୁଁ ମୋର ବିଛଣା ଚାଦର ଓ ତକିଆ ପକେଇ ଅର୍ଦ୍ଧଶାୟିତ ଅବସ୍ଥାରେ କିଛି ସମୟ ପାହାଡ଼ ଜଙ୍ଗଲର ଚିତ୍ର ଦେଖୁଦେଖୁ ମୋ ଆଖିଟା କେଜାଣି କାହିଁକି ମୁଦିହେଇ ଆସିଲା । ପର ମୁହୂର୍ତ୍ତରେ ମୁଁ ସେଥିରୁ ନିଜକୁ ମୁକ୍ତ କରିନେଇ ଗୋଟାଏ ମେଗାଜିନ୍‌ରେ ଆଖି ବୁଲେଇଲି । କିନ୍ତୁ ହାୟ କେମିତି କେଜାଣି ସେଥିରେ ମଧ୍ୟ ମୋ ମନ ଲାଗିଲାନି । ପରେ ବୋଧେ ନିଦ ଆସିଗଲା ।

ହଠାତ୍ କବାଟରେ ଠକ୍‌ଠକ୍ ଶବ୍ଦରେ ମୋ ନିଦ ଭାଙ୍ଗିଗଲା । ଟି.ଟି.ଆଇ. ହେଇଥିବ ଭାବି ମୁଁ କବାଟ ଖୋଲି ଦେଖିଲି ଦୁଇଜଣ ବିହାର ପୁଲିସର କନେଷ୍ଟବଳ । ଆଶ୍ଚର୍ଯ୍ୟ ହେଲି । କିନ୍ତୁ କିଛି କହି ନପାରି ପଛକୁ ହଟି ଆସିଲି । ଜଣେ ପ୍ରଥମେ ପଶି ଆସିଲା । ହାତରେ ତାର ଲମ୍ବା ଓ ମୋଟା ଦଉଡ଼ିଟାଏ । ପଛକୁ ପଛକୁ ଲମ୍ବି ଯାଇଛି । ହାତରେ ହ୍ୟାଣ୍ଡକପ୍ । ତାଙ୍କ ପଛରେ ଆଉ ଜଣେ କନେଷ୍ଟବଳ । ଯୁବକଙ୍କୁ ଦେଖିଲି, ବୟସ ଚାଳିଶ ହେବ । ତୀକ୍ଷ୍ଣ ଆଖି, ଲେଲିନ୍ ଦାଢ଼ୀ, ମୁଣ୍ଡରେ ବାଳ ଅନେକ, ପ୍ୟାଣ୍ଟସାର୍ଟରେ ଆଭିଜାତ୍ୟ ନଥିଲେ ବି ରୁଚି ଅଛି । ସେମାନେ ମଝିରେ ଆସି ଠିଆ ହେଲେ ଏବଂ ବର୍ଥର ଉପର ତଳ ଦେଖିବାକୁ ଲାଗିଲେ ।

ମୁଁ ବିରକ୍ତ ହେଲି ଏବଂ ହିନ୍ଦୀରେ ପଚାରିଲି ''ଏଟା ଫାଷ୍ଟକ୍ଲାସ ନୁହେଁକି ?''

ସିପାହୀର ଉତ୍ତର ଯେମିତି ଆଗରୁ ପ୍ରସ୍ତୁତ ହୋଇଥିଲା । କହିଲା, ''କଏଦୀ ଫାଷ୍ଟକ୍ଲାସର ହଜୁର ।''

ମୁଁ କ୍ଷଣକ ପାଇଁ ହତବାକ୍ ହୋଇଗଲି । ମୁଁ ଯେ ଯା ଭିତରେ ବିହାର ସୀମା ଭିତରେ ପ୍ରବେଶ କରି ସାରିଲିଣି ଏକଥା ମନେ ପଡ଼ିଗଲା । ମୋର ପରବର୍ତ୍ତୀ ପ୍ରଶ୍ନକୁ ଅପେକ୍ଷା ନକରି ସିପାହୀ ଜଣକ ଯୁବକଙ୍କୁ କହିଲେ, ''ଆପ୍ ବୈଠିୟେ ଜୀ । ଆରାମସେ ବୈଠିୟେ ।'' ଦ୍ୱିତୀୟ ସିପାହୀଟି ସେତେବେଳେ ଯୁବକର ବ୍ରିଫ୍‌କେଶ୍ ସହିତ ନିଜର କେତେକ ଥଳିଆ ଉପର ବର୍ଥରେ ରଖି ସେଠାକୁ ଚଢ଼ିବାକୁ ଉପକ୍ରମ କଲାଣି । ଘଡ଼ି ଦେଖିଲି, ଦିନ ୨ଟା ପାଖାପାଖି ।

ମୁଁ ସିପାହୀକୁ ପଚାରିଲି, ''କେସ୍‌ଟା କଅଣ ?'' ''ଦୁଇ ମାସ ହେଲା ଅଣ୍ଡର ଗ୍ରାଉଣ୍ଡ ଥିଲେ । ଏବେ ଧରା ପଡ଼ିଲେ । ଆମେ କଅଣ ଜାଣୁଁ କେସ୍ କଅଣ ?'' ତା'ପରେ ସେ ଯୁବକଙ୍କୁ ପଚାରିଲେ, ''କଅଣ ଖାଇବେ ?'' ସେ କହିଲେ ''ଭୋକ ତ ହେଲାଣି କଅଣ ମିଳିବ ଏଠି ?'' ଆଗ ଷ୍ଟେସନରେ ଗାଡ଼ି ଅନେକ ସମୟ ରହିବ । ଅଣ୍ଡା ଝୋଳ ଓ ପୁରି ତରକାରୀ ମିଳିବ । ସିପାହୀଟି କହିଲା ।

ଯୁବକ ପକେଟରୁ ୫୦ ଟଙ୍କିଆ ନୋଟ୍ ବାହାର କରି ତାକୁ ଦେଲେ ଏବଂ କହିଲେ ''ଆଣ, ସମସ୍ତେ ଖାଇବା ।''

''ଆଉ ଦଶଟଙ୍କା ଦିଅନ୍ତୁ । ଦୁଇଟା ଅଣ୍ଡାର ଝୋଳ, ଛଅଟା ପୁରି ଓ କିଛି ତରକାରୀର ଗୋଟିଏ ପ୍ଲେଟର ଦାମ୍ ଗୋଡ଼ିଏ ଟଙ୍କା । ଆମେ ତିନି ଜଣ ।''

ବିହାରର ପୁଲିସ ପ୍ରଶାସନ ମୋ ଆଗରେ ଆସ୍ତେ ଆସ୍ତେ ସ୍ପଷ୍ଟ ହେଇ ଆସୁଥିଲା । ମୋର କୌତୂହଳ ବଢ଼ି ଚାଲିଲା । ଯୁବକଙ୍କୁ ପଚାରିଲି, ''ଆପଣଙ୍କ ଅପରାଧ'' ଭାବୁଥିଲି ସତ ସିଏ କହିବେ ତ ?

ସେ କିନ୍ତୁ ନିର୍ବିକାର । କହିଲେ, ''ମର୍ଡ଼ର ଓ ଡକାୟତି ।'' ତା'ପରେ କହିଲେ ''ରେପ୍ ମଧ୍ୟ ଯୋଡ଼ା ଯାଇଚି ।'' କିନ୍ତୁ ସବୁ ମିଛ । ଆପଣ ବିହାର ପୁଲିସକୁ ଜାଣି ନଥିବେ ।'' ସେମାନେ ଗୋଟିଏ ଧାରା ଥିଲେ ଆଉ ଦିଇଟା ଯୋଡ଼ି ଦିଅନ୍ତି ।''

ମୁଁ ଭାବିଲି ଏଥିରେ ଆଉ ବିହାର କଅଣ ଓଡ଼ିଶା କଅଣ ? ଏସବୁ କାମରେ ସବୁ ପୁଲିସ ସମାନ ।

ଏଥର ମୁଁ ସିପାହୀକୁ ପଚାରିଲି, ତୁମେ କହୁଥିଲ ''କଏଦୀ ଫାଷ୍ଟ କ୍ଲାସର ବୋଲି ।''

ସେତେବେଳେ ସିପାହୀଟି ମୋତେ ଟିକିଏ ଦେଖିଲା ଏବଂ ବୋଧେ ବୁଝି ପାରିଲା ଜଣେ ପୁଲିସ ଅଫିସର ହେଇଥିବେ । ସେ ମୋ ପାଖକୁ ଆସିଲା ଏବଂ କହିଲା, ''ସାବ୍ ରାଞ୍ଚି କାରଖାନାର ସ୍ୱୀକୃତିପ୍ରାପ୍ତ ଇଉନିୟନ୍‌ର ସେକ୍ରେଟାରୀ ।''

ମୁଁ ଯେମିତି ଆକାଶରୁ ତଳକୁ ଖସି ପଡ଼ିଲି । ଭାବିଲି ଯାହାସବୁ ଶୁଣୁଚି ସବୁ ସତ ତ ? ଏଥର ମୁଁ ମାନନୀୟ କଏଦୀଙ୍କୁ ମୋର ପରିଚୟ ଦେଲି ଏବଂ ମୁଁ ମଧ୍ୟ ସେଇ କାରଖାନାକୁ ବଦଳି ହୋଇ ଯାଉଚି ବୋଲି କହିଲି । ସେ ମୋ ଆଡ଼କୁ ହାତ ବଢ଼ାଇଦେଲେ । କହିଲେ ''ଆପଣଙ୍କ ସହିତ ପରିଚୟ ହେଲା, ଭଲ ହେଲା ।''

ଭଲ ହେଲା ? କାହାର ? ମୁଁ ଜଏନ୍ କରିବାକୁ ଯାଉଥିବା କାରଖାନାର ସ୍ୱୀକୃତିପ୍ରାପ୍ତ ଇଉନିୟନ୍‌ର ସମ୍ପାଦକ ଯଦି ମର୍ଡ଼ର, ଡକେଇତି ଏବଂ ରେପ୍ କେସ୍‌ରେ ଆରେଷ୍ଟ ହେଉଥାଆନ୍ତି ତେବେ ହେ ପ୍ରଭୁ, ମୋତେ ରକ୍ଷା କର । ମୁଁ ତାଙ୍କ ଆଡ଼କୁ ହାତ ବଢ଼ାଇ ଦେଇ ଭାବିଲି ଭଗବାନ, ମୁଁ ଯାହାଶୁଣୁଛି ସବୁଯାକ ମିଛ ହେଇଥାଉ ।

ସେ କହିଲେ ''ସବୁଯାକ ପଲିଟିକାଲ, ମିଛ କେସ୍ ।'' ମୁଁ ଏ କଥାରେ ଆଶ୍ଚର୍ଯ୍ୟ ହେଲି ନାହିଁ । ରାଜନୀତି ଓ ଶ୍ରମିକ ଆନ୍ଦୋଳନ ସବୁବେଳେ ଗୋଟିଏ ଲକ୍ଷ୍ୟ ଓ ଆଦର୍ଶ ହେବା କଥା ।

ଆପଣ "ଆଣ୍ଟିସିପେଟାରୀ ବେଲ୍ ପାଇଁ ଚେଷ୍ଟା କରି ନଥିଲେ ?"

"ନା," ସେ କହିଲେ, "ସେସବୁ ଆମର ନୀତି ନୁହେଁ । ଆରେଷ୍ଟ ହେଲେ ଆମ ୟୁନିଅନର ସଂଗ୍ରାମୀ ଚରିତ୍ର ଅଧିକ ଉଜ୍ଜ୍ୱଳ ହେବ । ଆମେ ସଂଗ୍ରାମୀ, ଭୀରୁ ନୁହେଁ, ଆରେଷ୍ଟକୁ ଭୟ କଲେ ଶ୍ରମିକମାନେ ଆମକୁ କାହିଁକି ମାନିବେ ? ଏମିତି କେତେଥର ହେଲାଣି । କେତେ କେସ୍ ଅଛି । କିଏ ପଚାରୁଛି ?

ମୁଁ ଏ କଥାରେ ତାଙ୍କ ଭିତରେ ଥିବା ଦମ୍ଭଟିକୁ ଦେଖୁଥିଲି । ଯେତିକି ତାଙ୍କ ଦମ୍ଭକୁ

ଦେଖୁଥିଲି ସେତିକି ମୁଁ ଯେ ମହରଗରୁ ଯାଇ କାନ୍ତାରରେ ପହଂଚୁଛି, ଏ କଥାରେ ସ୍ଥିର ନିଶ୍ଚିତ ହେଇ ଯାଇଥିଲି ।

''ଆପଣ 'ଭେଜ' ନା 'ନନ୍‌ଭେଜ୍‌' ?'' ସେ ହଠାତ୍ ମୋତେ ପଚାରିଲେ ।

ମୁଁ ଆଶ୍ଚର୍ଯ୍ୟ ହେଲି ଏ ପ୍ରଶ୍ନ ଶୁଣି । କଅଣ ତାର ଅର୍ଥ ହୋଇପାରେ ? ମୁଁ ବୁଝି ନପାରିବା ଦୃଷ୍ଟିରେ ତାଙ୍କୁ ଅନାଇ ରହିବାରୁ ସେ କହିଲେ, ''ତା'ମାନେ ଆପଣ ବ୍ରାହ୍ମଣ କି ନୁହେଁ ।'' ଆମର ଏପଟେ ବ୍ରାହ୍ମଣମାନେ ମାଛ ମାଂସ ଖାଆନ୍ତିନି ।

ମୁଁ କହିଲି, ମୁଁ ଉଭୟ 'ଆହାରରେ ଭଲ ମନ୍ଦ ନାହିଁ, ଯେସନ ଯେମନ୍ତ ମିଳଇ ।' ମୁଁ ବ୍ରାହ୍ମଣଙ୍କ ପାଖରେ ବ୍ରାହ୍ମଣ, ଖଣ୍ଡାୟତଙ୍କ ପାଖରେ.....

ସେ ହୋ ହୋ ହସିଲେ ।

''ଆଚ୍ଛା, ଆପଣ ବଜରଙ୍ଗ ଶର୍ମା । କିନ୍ତୁ ଅଣ୍ଡାଝୋଳ ଖାଇଲେ ଯେ ? ଆପଣ କଅଣ ମୋ ପରି ?'' ମୁଁ ପଚାରିଲି ।

''ମୋ କାମ ଯେମିତି, ସେଥିରେ ଏ ବ୍ୟତିକ୍ରମ ହେବା ଅବଶ୍ୟମ୍ଭାବୀ । ଯୋଉଠି ଯାହା ମିଳିଲା । କିନ୍ତୁ ମୋ ଭିତରେ ଥିବା ବ୍ରାହ୍ମଣର ପବିତ୍ରତା ସଦାବେଳେ ଅକ୍ଷୁଣ୍ଣ ଥାଏ । ଏଇ ଦେଖୁ ନାହାନ୍ତି, ମୋ ବିରୁଦ୍ଧରେ ମର୍ଡ଼ର, ଡକେଇତି ଏବଂ ରେପ୍ କେସ୍ ଅଣାଯାଇଛି । ମର୍ଡ଼ର ଓ ଡକେଇତି ଅଭିଯୋଗ ଚଳିବ । ସତ ହେଉ ମିଛ ହେଉ, ଜମିଜମା ନେଇ, ଶତ୍ରୁତା ଯେତେବେଳେ ଅଛି, ଲୋକେ ଅଭିଯୋଗକୁ ବିଶ୍ୱାସ କରିପାରନ୍ତି । କିନ୍ତୁ ଏ ରେପ୍ ? କେହି ବିଶ୍ୱାସ କରିବେନି । ଆପଣ ଆମ ଘରକୁ ଚାଲନ୍ତୁ ଦେଖିବେ, ନୈଷ୍ଠିକ ବ୍ରାହ୍ମଣ ପରିବାର । ଆମ ଧର୍ମରେ ଆପଣ ତ ଜାଣନ୍ତି ବ୍ରାହ୍ମଣମାନେ ହରିଜନ ବସ୍ତିକୁ ମଧ୍ୟ ଯାଆନ୍ତି ନାହିଁ । ପଇତାମାରା ହୁଏ, ପଇତା ବଦଳେଇବାରେ କେତେ ଖର୍ଚ୍ଚ ଜାଣନ୍ତି ? କମ୍‌ସେ କମ୍ ଏକ ହଜାର । ଆଉ ଏ ହରିଜନ ଚମାର ଝିଅଟିକୁ ମୁଁ ରାତିଅଧରେ ଘରେ ପଶି ଟେକିନେଇ ରେପ୍ କଲି,ଏକଥା ସ୍ୱୟଂ ଜଜ୍ ମଧ୍ୟ ବିଶ୍ୱାସ କରିବେନି ।"

ସେ ଟିକିଏ ରହିଗଲେ ତା'ପରେ ପୁଣି କହିଲେ, ''ଜଜ୍ ବିଶ୍ୱାସ କରୁନାହାନ୍ତି ବୋଲି ତ ମୁଁ ଆଜି ରାତିରେ ପହଞ୍ଚିଲା ମାତ୍ରେ ବେଲ୍ ପାଇବି । ଆପଣ କାଲି ସକାଳେ ମୋତେ ଦେଖିବେନି ?''

"ଜଜ୍ ଏକଥା ବିଶ୍ୱାସ କରିବେନି ?" ମୁଁ ପଚାରିଲି ।

"କେମିତି କରିବେ ? ନୈଷ୍ଠିକ ବ୍ରାହ୍ମଣ କହିଲେ କଅଣ ବୁଝାଏ ସେ କଅଣ ଜାଣିନାହାନ୍ତି ? ସାମାଜିକ ପ୍ରଥାକୁ ଛାଡ଼ି ଆଇନ ତିଷ୍ଠି ପାରିବ ? ଇଂଲଣ୍ଡରେ ସମ୍ବିଧାନ ଆଉ କାହିଁକି ନାହିଁ ? ସେଠି ପରମ୍ପରା ବଡ଼ ।"

ମୁଁ ତାଙ୍କ କଥା ଶୁଣୁଶୁଣୁ ଯେମିତି ପଥର ପାଲଟି ଯାଉଥିଲି ।

ଆମ ଗପ ଏମିତି ଅମଡ଼ା ମାଡ଼ି ଚାଲିଥିଲାବେଳେ କେତେବେଳେ ଯେ ହାତିଆ

ଷ୍ଟେସନ ଆସିଗଲା ମୁଁ ଜାଣି ପାରିଲିନି । ହଠାତ୍ ଦେଖିଲି ଷ୍ଟେସନରେ ପ୍ରବଳ ଭିଡ଼ । 'ବଜରଙ୍ଗ ଭାୟା ଜିନ୍ଦାବାଦ' ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇଉଠୁଛି । ବୋଧେ ଏଇଥିପାଇଁ ପ୍ରଚୁର ପୁଲିସ ମଧ୍ୟ ଥିଲେ । ଆମେ ସେଇଠୁ ବିଦାୟ ନେଲୁଁ ।

ମୁଁ ଯା ଭିତରେ ଆମ ୟୁନିଟରେ ଜଏନ୍ କରିସାରିଛି । 'ହେଭି ଇଞ୍ଜିନିଅରିଂ କାରଖାନା'ଟି ତିନିଭାଗରେ ବିଭକ୍ତ । ତିନୋଟି ସ୍ୱତନ୍ତ୍ର ପ୍ଲାଣ୍ଟ । ଅବସ୍ଥିତି ମଧ୍ୟ ଅଲଗା ଅଲଗା ଜାଗାରେ । ତେଣୁ ନିରାପତ୍ତା ଦୃଷ୍ଟିରୁ ଅନେକ ଅସୁବିଧା । ମୁଁ କାମରେ ନିଜକୁ ପୂରା ସ୍ଥିର କରିପାରି ନଥାଏ । କାରଣ କାରଖାନାର ଅବସ୍ଥା ମୋଟେ ଭଲ ନଥାଏ । ପ୍ରତିଦିନ କିଛି ନା କିଛି ଗୋଳମାଳ, ଘେରାଓ, ମାରପିଟ,ଧର୍ମଘଟ ଓ ସଂଗଠିତ ଭାବରେ ଚୋରି, କାରଖାନାଟିକୁ ଏକପ୍ରକାର ପଙ୍ଗୁ କରି ଦେଇଥାଏ । ମୋତେ ଗୋଟାଏ ମିନିଟ ମଧ୍ୟେ ସମୟ ମିଳୁ ନଥାଏ । ପୁଲିସର ଅସହାୟତା ଆମକୁ ବେଶି ଅସୁବିଧାରେ ପକାଏ । ଦେଖିଲି ସେଠାରେ ସିଭିଲ ଅଥରିଟି ଯେମିତି ରାଜନୈତିକ ଦଳର ଗୋଟାଏ ମୁଖ୍ୟ ଅଂଶ ।

ସେଦିନ ସକାଳେ ଦେଖିଲି ମୋ ଘରର ଗେଟ ପାଖରେ ଲୋକଟିଏ ତଳକୁ ମୁହଁ ପୋତି ବସିଛି ଏବଂ ମୋର ଗେଟ ଜଗୁଆଳୀ ତାକୁ କଅଣ କହୁଛି । ଗେଟ୍‌ଟା ଘରଠାରୁ ଟିକିଏ ଦୂରରେ । ତେଣୁ ତା କଥା ମୋତେ କିଛି ଶୁଭୁ ନଥାଏ । ତେବେ ଅନୁମାନ କଲି ଜଗୁଆଳୀ ତାକୁ ତଡ଼ିବାକୁ ଚେଷ୍ଟା କରୁଛି ଏବଂ ଗାଳି ଗୁଲଜ କରୁଛି ।

ମୁଁ ତାକୁ ଡାକିଲି ''କଅଣ ହେଲା ?''

ସେ କହିଲା, ''ତ୍ରିନାଥ, ଆମ ୟୁନିଟ୍‌ର ସୁଇପର ।''

"କୁଆଡ଼େ ଆସିଛି ସିଏ ?"

ମୋ କଥାର ଉତ୍ତର ନଦେଇ ସେ କହିଲା ''ଲୋକଟା ବଡ଼ ବଦମାସ । ସବୁ ଦରମାରେ ମଦ ପିଇଦିଏ । ତା' ସ୍ତ୍ରୀକୁ ବାଡ଼ାଏ ।'' ଧେତ୍ ମୁଁ ବିରକ୍ତ ହେଲି । ''ସେ କୁଆଡ଼େ ଆସିଛି କହୁନୁ ?'' ସେ ଏଥର ସତର୍କ ହେଲା ।

''ତାକୁ ଡାକିଲୁ ।''

ମୁଁ ବାରଣ୍ଡା ଉପରେ ଠିଆ ହେଲି । ସେ ଆସିଲା ।

''କଅଣ ହେଲା ?''

ସେ କାନ୍ଦି ପକାଇଲା ।

ମୁଁ ତାକୁ ପାଖକୁ ଡାକିଲି, ସେ ଆଉ ଦି'ପାଦ ଆସନ୍ତେ ଜଗୁଆଳୀ ତା ପଛେପଛେ ଆସି ତାକୁ ସେଇ ପିଣ୍ଡାତଳେ ଠିଆ ହେବାକୁ କହିଲା ।

''କାନ୍ଦୁଛୁ କାହିଁକି ? କଅଣ ହେଇଛି କହୁନୁ ?''

"ମୋ ସ୍ତ୍ରୀ ବେମାର ଅଛି । ଆଉ ବଞ୍ଚିବ ନାହିଁ ।"

ଜଗୁଆଳୀ କହିଲା, ''ମିଛ କହୁଛି । ଇଏ ତାକୁ ମାରିଥିବ । ଆଉ ବେମାରୀ କଅଣ ?''

ମୁଁ ତାକୁ ଏଥର ଆକଟିଲି । "ଆରେ ତାକୁ କହିବାକୁ ଦେ । ତା'ପରେ ତାକୁ ଉପରକୁ ଡାକିଲି । ଗୋଟାଏ ଚେୟାରରେ ବସି ତାକୁ ପଚାରିଲି, ''ହଁ ଏଥର କହିଲୁ କଅଣ ହୋଇଛି ତୋ ସ୍ତ୍ରୀର ?''

''ମାସେ ହେଲା ହାସପାତାଳରେ ପଡ଼ିଛି । ଡାକ୍ତର କହୁଛି ରକ୍ତ ଦେବାକୁ । ରକ୍ତ ମିଳୁନି । ରକ୍ତ କିଣିବାକୁ ମୋ ପାଖରେ ପଇସା ନାହିଁ ।''

''ରକ୍ତ ମିଳୁନି ? ତୁ କଅଣ କହୁଛୁ ? ପନ୍ଦର ଶହ ଲୋକର ୟୁନିଟ । ରକ୍ତମିଳୁନି ? କିଣିବା ପାଇଁ କେତେ ଟଙ୍କା ଦରକାର ?''

''ଦୁଇ ହଜାର ।''

''ଦୁଇ ହଜାର ? ଏତେ କଅଣ ହେବ ? ତୋ ସ୍ତ୍ରୀ କୋଉ ହସପିଟାଲରେ ଅଛି କି ? କମ୍ପାନୀ ହସପିଟାଲରେ ତ ? ସେଠିତ ତୋର ସବୁ ଟ୍ରିଟ୍‌ମେଣ୍ଟ ଫ୍ରି ହେବାକଥା ।''

''ସବୁ କଥାରେ ସେମାନେ ପଇସା ମାଗୁଛନ୍ତି, ପିସାବ ଡବାଟାକୁ ପାଖକୁ ଦେବାକୁ ମଧ୍ୟ ପଇସା ମାଗୁଛନ୍ତି ।''

ମୁଁ କହିଲି, ''ଆଚ୍ଛା ହେଉ, ତୁ ମୋଟେ ବ୍ୟସ୍ତ ହେବୁନି । ଯାହାଯାହା ଦରକାର ତାର ବ୍ୟବସ୍ଥା ମୁଁ କରୁଛି ।'' ମୁଁ ସଙ୍ଗେ ସଙ୍ଗେ ଲୁଗା ବଦଳେଇ ଆସିଲି ଏବଂ ଜିପ୍ ବାହାର କଲି । ତାକୁ କହିଲି ତୁ ପଛରେ ବସ୍ ।

ୟୁନିଟ ଅଫିସରେ ପହଞ୍ଚି ମୁଁ ପ୍ରଥମେ ଇନ୍ସପେକ୍ଟର ପାଣ୍ଡେଙ୍କୁ ଡକାଇଲି । ତାଙ୍କୁ କହିଲି ବ୍ଲଡ୍ ଗ୍ରୁପ ରେଜିଷ୍ଟରରେ କେତେ ଜଣଙ୍କର 'ଏ ନେଗେଟିଭ୍' ବ୍ଲଡ୍ ଅଛି ଦେଖିଲ । ଶୀଘ୍ର ଆଣ ।"

ସେ ରେଜିଷ୍ଟର ନେଇ ଆସିଲେ ଏବଂ କହିଲେ, "ଛଅ ଜଣଙ୍କର ।"

ମୁଁ କହିଲି, "ସେ ସମସ୍ତଙ୍କୁ ଗୋଟିଏ ଗାଡ଼ିରେ ନେଇ ହସପିଟାଲକୁ ଆସ । ମୁଁ ସେଠି ଡକ୍ଟର ବର୍ମାଙ୍କ ଚାମ୍ବରରେ ଅଛି ।"

ମୁଁ ଯାଇଁ ଡକ୍ଟର ବର୍ମାଙ୍କ ସହିତ ରୋଗୀ ବିଷୟରେ ଆଲୋଚନା କଲି । ସେ କହିଲେ, "ଆଜିକୁ ଚାରିଦିନ ହେଲା ମୁଁ ତାକୁ ରକ୍ତ କଥା କହିଲିଣି । ଅନ୍ୟଠି ନ ମିଳିଲେ ବ୍ଲଡ୍ ବ୍ୟାଙ୍କରୁ ଆଣିପାରି ଥାଆନ୍ତା । ମୁଁ ତ ସେଇ ଦିନଠୁ ଅପେକ୍ଷା କରିଛି ।"

ମୁଁ କହିଲି, "ଆପଣ ବ୍ୟସ୍ତ ହୁଅନ୍ତୁନି । ମୁଁ ସେସବୁର ଆୟୋଜନ କରି ସାରିଛି । ଏଇନେ ଆପଣଙ୍କୁ ମିଳିଯିବ ।" ଟେଲିଫୋନ୍‌ରେ ରିଂଟିଏ ଆସିଲା । ସେ ଉଠାଇଲେ । ତା'ପରେ ମୋ ହାତକୁ ରିସିଭର ବଢ଼େଇ ଦେଇ କହିଲେ ''ଆପ୍‌କା'' ।

ମୁଁ ନେଲି । ''ହାଲୋ'' ସେଆଡୁ ଆସିଲା, "ମୁଁ ବଜରଙ୍ଗ ଶର୍ମା କହୁଛି । ମୁଁ ଶୁଣୁଛି ଆପଣଙ୍କ ସୁଇପର ତ୍ରିନାଥର ସ୍ତ୍ରୀ ପାଇଁ ରକ୍ତ ଦେବାକୁ ଆପଣ ଆପଣଙ୍କ ଲୋକଙ୍କୁ ବାଧ୍ୟ କରୁଛନ୍ତି ?"

ମୁଁ କହିଲି, "ବାଧ୍ୟ କରିବି କାହିଁକି ? ଏଇଟା ତ ଆମର ନିୟମ ।"

"ନାଇଁ ନାଇଁ, ଏ ନିୟମ ଠିକ୍ ନୁହେଁ । ଗୋଟାଏ ମେହେନ୍ତରକୁ ଅପରକାଷ୍ଟ ଲୋକମାନେ କାହିଁକି ରକ୍ତ ଦେବେ ? ଏ ନିୟମ କିଏ କରିଛି ?" ତାଙ୍କ କଣ୍ଠରୁ ସେ ଉତ୍ତେଜିତ ଥିଲେ ବୋଲି ଜଣାପଡ଼ିଲା ।

ମୁଁ ହଠାତ୍ ତାଙ୍କୁ କଅଣ କହିବି ଠିକ୍ କରି ପାରିଲିନି ।

ସେ କହିଲେ, ''ଆପଣ ଆପଣଙ୍କ ଲୋକମାନଙ୍କୁ ପାପ କରିବାକୁ ନିର୍ଦ୍ଦେଶ ଦେଉଛନ୍ତି ? ଏହା ଘୋର ଅନ୍ୟାୟ, ଆପଣ ଯଦି ଏମିତି କରନ୍ତି ତେବେ ଆପଣଙ୍କୁ ଏଇଟା ବଡ଼ ମହଙ୍ଗା ପଡ଼ିବ । ଆପଣ ଆଉଥରେ ଚିନ୍ତା କରନ୍ତୁ ।'' ସେ ଟେଲିଫୋନ୍ ଛାଡ଼ି ଦେଲେ ।

ମୁଁ ସ୍ତମ୍ଭୀଭୂତ ହୋଇଗଲି । ରକ୍ତଦାନ କରି ଜୀବନ ରକ୍ଷା କଲେ ପାପ ହୁଏ ? ମୋ ମୁଣ୍ଡର ଶିରାପ୍ରଶିରାଗୁଡ଼ିକ ଯେମିତି ରଟ୍‌ମଟ୍ କରି ଛିଣ୍ଡିବାକୁ ଆରମ୍ଭ କଲା । ମୁଁ ଉତ୍ତେଜିତ ଅବସ୍ଥାରେ ଠିଆ ହୋଇ ପଡ଼ିଲା ବେଳକୁ ତ୍ରିନାଥ ସେଆଡୁ ଦଉଡ଼ି ଆସିଲା । କାନ୍ଦିକାନ୍ଦି ସେ କହିଲା, ''ନେହିଁ ସାବ୍, ଉଧର ଜରୁରତ ନେହିଁ, ଓ୍ୱ ଚଲିଗୟୀ ।''

''ଚଲିଗୟୀ ?''

ତା ସ୍ତ୍ରୀକୁ ବଞ୍ଚେଇ ରଖିବାର ସବୁ ସୁବିଧା ମୋ ପାଖରେ ଥାଇ ମଧ୍ୟ ମୁଁ ତାକୁ ବଞ୍ଚେଇ ପାରି ନଥିବାରୁ ପାପବୋଧରେ ମୋ ଭିତରଟା ହାହାକାର କରି ଉଠିଲା । ମୁଁ ତ୍ରିନାଥକୁ ମୋ କୋଳକୁ ଆଉଜାଇ ଆଣିଲି ।

(ଅଧିକାର)

# ଅପରାଜିତ

ସେଦିନ ମୁଁ ଜୟନ୍ତବାବୁଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଅନେକ ଦିନ ପରେ ତାଙ୍କୁ ଦେଖୁଥିଲେ ମଧ୍ୟ ତାଙ୍କୁ ଚିହ୍ନିବାରେ ମୋର ଖୁବ୍ ବେଶି ଅସୁବିଧା ହେଇନଥିଲା । ତାଙ୍କର ପରିଧାନ ଥିଲା ବଡ଼ ବିଚିତ୍ର । ବେଶ୍ ମୋଟା ଓ ଗହଳିଆ ଦାଢ଼ି, ଯାହା ସେ ଛାତ୍ରାବସ୍ଥାରୁ ଅତି ଯତ୍ନରେ ବଢ଼ାଇଥିଲେ । ତେବେ ଗୋଟାଏ ପାର୍ଥକ୍ୟ, ଏବେ ସେ ଆଉ ଦାଢ଼ିର ଯତ୍ନ ନେଉନାହାନ୍ତି । କାନ୍ଧରେ ଗୋଟାଏ ଚାଦର ଯାହା ସେ ସ୍ୱାଧୀନତା ସଂଗ୍ରାମରେ ଝାସଦେବା ଦିନଠାରୁ, ମାନେ ଗାନ୍ଧୀଙ୍କ ବାଣୀ ଶୁଣୁଶୁଣୁ ମଜ୍ଜି ଯାଉଥିଲେ ଏବଂ ସେଥିରେ ନିଜକୁ ହଜେଇ ଦେବାର ଶପଥ ନେବା ଦିନଠାରୁ କାନ୍ଧରେ ପକେଇବା ଆରମ୍ଭ କରିଥିଲେ। ଆଉ ଶେଷରେ ତାଙ୍କ ମୁଣ୍ଡରେ ବାଳ ଯାହା ଏବେ ବଦଳିଯାଇଚି ଏବଂ ଗୈରିକ ହେଇଯାଇଛି ।

ମୁଣ୍ଡର ବାଳ ଯେ ଗୈରିକ ହେଇପାରେ ଏବଂ କିଛି ଲୋକ ତାକୁ ଜାଣିଶୁଣି ଏମିତି କରନ୍ତି, ମାନେ ଗୋଟାଏ ସଉକରେ, ଏକଥା ମୁଁ ଶୁଣିଥିଲେ ମଧ୍ୟ କେବେ ଦେଖି ନଥିଲି । ଜୟନ୍ତବାବୁଙ୍କଠାରେ ସେତକ ମୁଁ ପ୍ରଥମେ ଦେଖିଲି । ବେକଯାଏ ସେ ବାଳ ଲମ୍ବିଛି, ଅସଜଡ଼ା ଓ ଅଯତ୍ନ ବର୍ଦ୍ଧିତ । ମୁଁ ବୁଝି ପାରିଲିନି ତାଙ୍କ ଦାଢ଼ି ଓ ମୁଣ୍ଡର ବାଳ, ଏମାନେ ଜୟନ୍ତବାବୁଙ୍କ ଅଧୀନରେ ନରହି ନିଜକୁ ସ୍ୱାଧୀନ ଘୋଷଣା କରୁଥିବାର କଅଣ ମାନେ ହୋଇପାରେ । କେବଳ ଅବହେଳା ନା ଆଉ କିଛି ।

ମୁଁ ତାଙ୍କୁ ଦେଖୁ ଦେଖୁ ଠିଆ ହେଇଗଲି କାବା ହେଇ । ଦେଖିଗଲି ତାଳୁରୁ ତଳିପା ଯାଏ । "ଆରେ, ଏମିତି କେମିତି ହେଲା ? ଜୟନ୍ତବାବୁ ନା ?" ମୁଁ ଥତମତ ହେଇ ପଚାରିଲି ।

ତୁମେ ଠିକ୍ ଚିହ୍ନିଛ । ତାଙ୍କ ସ୍ୱର ସେମିତି ଗୁରୁଗମ୍ଭୀର । ଯେମିତି ଥିଲା କଲେଜରେ ପଢୁଥିଲାବେଳେ । କଲେଜରେ ଧର୍ମଘଟ ହେଲେ ଯେଉଁ ମେଘ ଗର୍ଜନର ବାକ୍ୟସବୁ ଗଗନ ପବନ ପ୍ରକମ୍ପିତ କରୁଥିଲା, ସେସବୁ ଥାଏ ଜୟନ୍ତବାବୁଙ୍କ ମୁଖନିସୃତ । ତାଙ୍କର

ସେଦିନର 'ତୁମେ ଠିକ୍ ଚିହ୍ନିଛ' ଶବ୍ଦ କେତେଟା ମୋତେ ମୋର ସେ ଅତୀତର କଥା ମନେ ପକେଇଦେଲା । ଏଥର ମୁଁ ତାଙ୍କ ପାଖକୁ ଆହୁରି ଲାଗିଆସି ପଚାରିଲି, ''ଏଥର ମୋର ପ୍ରଥମ ସନ୍ଦେହ ମୋଚନ କରନ୍ତୁ ।''

ଆଉ ସନ୍ଦେହ କଅଣ ହେ ? ''ଠିକ୍ ଚିହ୍ନିଛ, ଜୟନ୍ତ..... ଜୟନ୍ତ ଗୋସ୍ୱାମୀ । ପିତା.... ସ୍ୱର୍ଗତ....।'' ''ଆଜ୍ଞା ମୁଁ ସେକଥା ମୋତେ ପଚାରୁ ନାହିଁ । ମୁଁ ପଚାରୁଛି, ଆପଣ ଏ ବିଚିତ୍ର ବର୍ଣ୍ଣ ହେଲେ କେମିତି ?''

ସେ ହସିଲେ । ''କି ନିର୍ବୋଧ ହେ ତୁମେ ? ତୁମେ ବିରୁ ! ଏଯାଏ ବାଲ୍ୟଚପଳତା ଗଲା ନାହିଁ ? ଏବେ ମୁଁ ଭାବୁଛି, ଆମେ ଯେ ଏତେ ପରିଶ୍ରମ କରି ଇଂରେଜମାନଙ୍କୁ ଦେଶରୁ ତଡ଼ିଲୁ ସେଥିରେ ତ ପଇସାକର ବି ଲାଭ ହେଲାନାହିଁ । ତେବେ ଏ ସ୍ୱାଧୀନତାରୁ ଆଉ ପାଇଲୁଁ କଅଣ ?''

ଅହେତୁକ ଭାବନାଟି ପୂର୍ଣ୍ଣିମା ରାତିରେ ସମୁଦ୍ରର ଉତ୍ତାଳ ତରଙ୍ଗ ପରି ଅସମ୍ଭବ ଗର୍ଜନ କରି ଅଚାନକ ମୋ ଭିତରୁ ମାଡ଼ି ଆସୁଥିଲା । ସେ କହିବାକୁ ଚାହୁଁଥିଲା, ମହାଭାଗ ! ସେଇ ଗୋଟିଏ ମହାର୍ଘ 'ନିର୍ବୋଧତା', ପାଇଁ ଗୋଟାଏ ମହତ କାମ ଆପଣମାନେ କରି ନାହାନ୍ତି କି ?

କିନ୍ତୁ ଅନେକ ଦିନ ପରେ ମୋର ଏଇ ପ୍ରଥମ ସାକ୍ଷାତରେ ମୁଁ ତାଙ୍କୁ ସେମିତି କିଛି କହିପାରିଲି ନାହିଁ । କହିଲି, ''ଆଜ୍ଞା, ଟିକିଏ ରହନ୍ତୁ ।'' ମୋର ଏ ପ୍ରଥମ ସନ୍ଦେହଟା ଆଗେ ଦୂର ହୋଇସାରୁ । ତା'ପରେ ଆମେ ଅନ୍ୟ କଥାକୁ ଯିବା । ମୋତେ ଆପଣ ଆଗ କହନ୍ତୁ ତ, ଆପଣଙ୍କ ମୁଣ୍ଡଠାରୁ ଗୋଡ଼ଯାଏ ମ୍ଳାନ ଗୋଧୂଳିର ରଙ୍ଗ କିପରି ହେଲା ।''

''ମ୍ଳାନ ଗୋଧୂଳି ? ତୁମର ଶବ୍ଦ ସଂଯୋଜନାର କ୍ଷମତା ତ ଅଦ୍ଭୁତ ଦେଖୁଚି । ତୁମେ କଅଣ ଯା ଭିତରେ କବିତା ଫବିତା ଲେଖାଲେଖି କରୁଚ କି ? ଗାଁରେ ଅଛ ଯେତେବେଳେ- ବରଗଛ, ନଈପଠା, ସୋରିଷ କ୍ଷେତ, ପୋଖରୀ ତୁଠରେ କୁଆଡ଼େ କବିତାମାନେ ଜହ୍ନ ଉହ୍ଲରେ ଦୋଳି ଖେଳନ୍ତି । ତେବେତ ସେମାନେ ଗାଁ ଲୋକଙ୍କ ପାଖକୁ ଆସିବାକୁ ତୁମେ ବି ଯାଇ ସେଠି ସଂଜବେଳେ ଦୋଳି ଖେଳୁଥିବ ? ହଉ, ଚା' ପିଇବ ?''

ମୁଁ ତାଙ୍କର ଚା' କଥାଟା ଶୁଣି ଆଶ୍ଚର୍ଯ୍ୟ ହେଲି, ଏମିତି ଗୋଟାଏ ନିର୍ଜନ ନିକାଞ୍ଚନ ଜାଗାରେ ଏବଂ ସହରତଳିର ଅଜଣା ଅଶୁଣା ବସ୍ତି ପାଖଦେଇ ଗଡ଼ିଯାଇଥିବା ସରୁ ରାସ୍ତାଟିରେ ସେ ଚା'ର ଗନ୍ଧ କୋଉଠୁ ପାଇଲେ ? ମୋତେ ପୁଣି ଅଫର୍ ମଧ୍ୟ କରି ସାରିଲେଣି । ମିରାକଲ୍ ନୁହେଁ ତ ? ଜୟନ୍ତବାବୁ ମେଜିକ୍ ଜାଣନ୍ତି ନା କଅଣ ?

ମୁଁ ଟିକିଏ ଚା'ପ୍ରିୟ । ମୁଁ ଯେକୌଣସି ସମୟରେ ଏବଂ ଯେତେଥର ଇଚ୍ଛା ଚା' ପିଇପାରେଁ । ସ୍ଥାନ, କାଳ ଓ ପାତ୍ର ନିର୍ବିଶେଷରେ । ସେଥିରୁ ମୁଁ ପାଏଁ ଅପାର ଆନନ୍ଦ । ଏଥିପାଇଁ ମୁଁ ମୋର କର୍ମକ୍ଷେତ୍ରରେ ବହୁ ପରାଭବ ପାଇଚି । କେତେ ଗାଳି ଶୁଣିଚି, କେତେ

ୱାର୍ଣ୍ଣିଂ ଲେଟର ମଧ୍ୟ ପାଇଛି । କିନ୍ତୁ କୌଣସିଥିରେ ମୋର ସାମାନ୍ୟ ପରିବର୍ତ୍ତନ ହୋଇନାହିଁ ।

ଥରେ ତ ଏମିତି ହୋଇଥିଲା । ମୁଁ ଗୋଟାଏ କାରଖାନାରେ କାମ କରୁଥିଲି । ଗୋଟାଏ ମେସିନ୍‌କୁ ଷ୍ଟାର୍ଟ କରିଦେଇ ମୋ ହେଲପରକୁ ଜଗେଇ ଦେଇ ଚାଲିଗଲି ଚା' ପିଇବାକୁ । କାରଖାନାର କେଣ୍ଟିନରେ ଚା'ପିଇବା ସମୟ ଅପେକ୍ଷା ଗପିବାରେ ସମୟ ବେଶି କଟେ । ଆମ ଗପ ଚାଲିଛି । ହଠାତ୍ କେଣ୍ଟିନ୍ ଆଗଦେଇ ଫାୟାର ବିଗ୍ରେଡ୍ ଗାଡ଼ି ସାଇରନ ବଜେଇ ଚାଲିଗଲା । ଆମେ କିନ୍ତୁ ନିର୍ବିକାର । ସେଥିରେ ଆମର କଅଣ ଯାଏ ? ମୋର ବନ୍ଧୁ ମନ୍ତବ୍ୟ ଦେଲେ- ''ନିଆଁତ ଲିଭି ସାରିବଣି । ଏମାନେ ଏତେବେଳେ ଯାଇ କରିବେ କଅଣ ?''

ସମସ୍ତେ ହସି ଉଠିଲେ ।

ଖାଲକୋ ସେପଟୁ ଦଉଡ଼ି ଆସୁଥିବାର ଦେଖି ମୋ ହୋସ୍ ଉଡ଼ିଗଲା । ଖାଲକୋ ମୋ ହେଲ୍‌ପର । ମୁଁ ପଚାରିଲି- ''କଅଣ ହେଲା ?'' ସେ କହିଲା- ''ଯୋଉ ମେସିନ୍ ଆପଣ ଚଲେଇ ଦେଇ ଆସିଥିଲେ, ତାର ପାଣି ପମ୍ପଟାକୁ ଆପଣ ଖୋଲି ନଥିଲେ । ମୁଁ କଅଣ ଜାଣିଚି ସେ କଥା । ମେସିନ୍‌ରୁ ନିଆଁ ବାହାରି ଗୋଦାମରେ ନିଆଁ ଲାଗି ଯାଇଛି ।''

ସେଥର ମୁଁ ଛଅମାସ କାଳ ସସ୍‌ପେଣ୍ଡ ଥିଲି ।

ଏଠି କୋଉଠି ଚା' ମିଳିବ ? ମୁଁ ଚାରିଆଡ଼କୁ ଅନାଇଲି । ସତକଥା କହୁଚି ମୁଁ ତାଙ୍କ ପାଟିରୁ ଚା' ଶବ୍ଦଟା ଶୁଣିବା ମାତ୍ରେ ମୋର ତାଙ୍କୁ ପଚାରିଥିବା ପ୍ରଶ୍ନ କଥା ଏକାଥରେ ଭୁଲିଗଲି । ପଦ୍ମତୋଳା ଶୁଣିଲେ ସାପ ଯେମିତି ନଇଁ ପଡ଼େ, ସେମିତି ।

''ମିଳିବ, ଆସ, ମୋ ସହିତ ଆସ ।'' ସେ ମୋ ହାତ ଧରି ଟାଣିଲେ ।

ଆରେ କୁଆଡ଼େ ? ମୁଁ କିନ୍ତୁ ସେତେବେଳକୁ ପୂରାପୂରି ତାଙ୍କ ଅକ୍ତିଆରକୁ ଆସି ସାରିଥାଏଁ । ଆରେ, ଏବେବି ତାଙ୍କ ଦେହରେ ଏତେବଳ ।

ଜୟନ୍ତବାବୁ ମୋଠୁ ସାତ ଆଠ ବର୍ଷ ବଡ଼ ହେବେ ବୋଧେ । କିନ୍ତୁ ମୋର ମନେଅଛି, ମୁଁ ସେକେଣ୍ଡ ଇଅରରେ ପଢୁଥିଲାବେଳେ ସେ ଥାର୍ଡ଼ ଇଅରରେ । ତାର କାରଣ ସେ ଅନେକ ଥର ଅଧା ବାଟରେ ଅଟକି ଯାଇଛନ୍ତି । କଲେଜରୁ ମାସମାସ କାଳ ଗାଏବ ହେଇଯାଆନ୍ତି କୁଆଡ଼େ ଯାଆନ୍ତି କେଜାଣି । ବେଳେବେଳେ ସେ କୁଆଡ଼େ ସଶସ୍ତ୍ର ଆନ୍ଦୋଳନରେ ଯୋଗ ଦେଇ ଜେଲ୍ ଯାଇଥିବା କଥା ମଧ୍ୟ ଶୁଣାଯାଏ ।

ଜୟନ୍ତବାବୁ କିନ୍ତୁ ଫେରି ଆସନ୍ତି । କ୍ଲାସରେ ଯୋଗ ଦିଅନ୍ତି । ଯେମିତି କିଛି ହେଇ ନାହିଁ କି ସେ କିଛି ଜାଣି ନାହାନ୍ତି । କେହି ପଚାରିଲେ କହନ୍ତି- ''ଏଠି ନଥିଲି । ଅନେକ ଦୂରକୁ ଚାଲି ଯାଇଥିଲି ।''

ଥରେ କଲେଜରେ ତାଙ୍କ ପାଇଁ ମଜାର କଥାଟିଏ ହୋଇଥିଲା । ପ୍ରାୟ ଛଅମାସ ପରେ ଦିନେ ଯେତେବେଳେ ସେ ଫେରିଲେ ତାଙ୍କୁ କଲେଜରେ ସମସ୍ତେ ଘେରିଗଲେ ।

ନାନାପ୍ରକାର ଗପସପ ହେଉହେଉ ଘଣ୍ଟା ବାଜିଲା ମାତ୍ରେ ସମସ୍ତେ କ୍ଲାସକୁ ଗଲେ, ସେ ମଧ୍ୟ ଗଲେ । ଅଧ୍ୟାପକ ବିଜନ ଦାସ ଥାଆନ୍ତି ରାଜନୀତି ବିଜ୍ଞାନର ଅଧ୍ୟାପକ । ଭାରି ମଜାଳିଆ ଲୋକ। କ୍ଲାସରେ ଭଲ କୌତୁକ କରି ପାରନ୍ତି । ପଢ଼ାଉ ପଢ଼ାଉ ସେ ଏମିତି ଭାବବିହ୍ୱଳ ହୋଇଯାଆନ୍ତି ଯେ ବେଳେବେଳେ ପଲିଟିକାଲ ସାଇନ୍ସ ଛାଡ଼ି ସାହିତ୍ୟ କିମ୍ବା ଦର୍ଶନ ଉପରେ ବକ୍ତୃତା ଆରମ୍ଭ କରି ଦିଅନ୍ତି । ସେଦିନ ସେମିତି ହେଲା । ରାଜନୀତି ବିଜ୍ଞାନରେ ସମ୍ବିଧାନ ଉପରେ କହୁକହୁ ସେ ହଠାତ୍ ଅଟକିଗଲେ ଏବଂ କିଛି ସମୟ ଅର୍ଥଶୂନ୍ୟ ଭାବରେ ଛାତକୁ ଏବଂ ଝରକା ଆଡ଼କୁ ଚାହିଁ କହିଲେ, ''ତମେସବୁ ଜର୍ଜ ଅରୱେଲଙ୍କ ଏନିମେଲ ଫାର୍ମ ପଢ଼ିଛ ?''

ସମସ୍ତେ କାବା ହେଇଗଲେ । କେହି ଜଣେ ଧୀର ସ୍ୱରରେ କହିଲା, ''ହେଡ୍ କ୍ୱାର୍ଟର୍ସ ସିଫ୍ଟ କରିଗଲା ।'' ପିଲାମାନେ ହସି ଦେଲେ । ସେ କିନ୍ତୁ ନିର୍ବିକାର । ସେ ପୁଣି ଥରେ ପଚାରିଲେ- ''କିଏ ପଢ଼ିଚି ଏନିମେଲ ଫାର୍ମ ?''

ଗୋଟିଏ ମାତ୍ର ହାତ ଉପରକୁ ଉଠିଲା ଏବଂ ସେଇଟା ଥିଲା ଜୟନ୍ତବାବୁଙ୍କର ।

''ଠିଆ ହୁଅ'' ସେ ଠିଆ ହେଲେ ।

''ତମେ କିଏ ? ମାନେ ତମେ ଏ କ୍ଲାସରେ କାହିଁକି ?''

ଜୟନ୍ତବାବୁ ଚୁପ୍ ।

ଅଧ୍ୟାପକ ମହୋଦୟ ଆସି ଜୟନ୍ତବାବୁଙ୍କ ପାଖରେ ଠିଆ ହେଲେ । ତାଙ୍କ କାନ୍ଧରେ ହାତ ରଖି ପଚାରିଲେ, ''ଯା ଭିତରେ ଛଅମାସ ଅତିବାହିତ ହେଇ ଗଲାଣି । ବାର୍ଷିକ ପରୀକ୍ଷା ସରି ପିଲାମାନେ ପ୍ରମୋଶନ ପାଇ ଗୋଟିଏ ପାହାଚ ଉପରକୁ ଉଠିଗଲେଣି । ଆଉ ତମେ.....''

ସାର୍ ସରି....।

ନୋ, ନୋ, ନୋ ସରି । ସେ ଗୋଟାଏ ମଞ୍ଚ ଅଭିନେତାଙ୍କ ପରି ନିଜ ଜାଗାକୁ ଫେରି ଯାଉଯାଉ କହିଲେ, ''ଏଥିରେ ଦୁଃଖ କରିବାର କଅଣ ଅଛି ? ଏ କ୍ଲାସରେ ତମେ ଏକମାତ୍ର ଛାତ୍ର ଯେ କି ଆମ ଫାର୍ମର ଏନିମେଲମାନଙ୍କୁ ଚିହ୍ନି ପାରିଛ । ତେଣୁ ନିୟମ ଯାହାକହୁ ନା କାହିଁକି ମୁଁ ତୁମକୁ ଆନ୍ତରିକତାର ସହ ସ୍ୱାଗତ କରୁଛି ।''

ଆମେ ଗୋଟାଏ ବିଲ୍ଡିଂ ଭିତରକୁ ପଶିବା ପାଇଁ ଯେତେବେଳେ ଗେଟ ପାଖରେ ପହଞ୍ଚିଲୁଁ ସେତେବେଳେ ମୋର ହୋସ୍ ଆସିଲା । କେତେ ବାଟ ? ଆମେ ମାତ୍ର ଚାରିପାଞ୍ଚ ମିନିଟ ଚାଲିଚାଲି ଆସିଛୁ କି ନାହିଁ ହଠାତ୍ ଏତେବଡ଼ ବିଲିଡିଂଟାଏ ଆମ ସାମ୍ନାକୁ ଆସିଗଲା । କାହିଁ ଆଗରୁ ଜଣାପଡୁ ନଥିଲା ତ ? ଅବଶ୍ୟ ସମଗ୍ର ଅଞ୍ଚଳଟା ଗୁଡ଼ାଏ ଘଞ୍ଚ ଗଛରେ ଭର୍ତ୍ତି । ଅଳ୍ପ ଦୂରରୁ ମଧ୍ୟ ମୋଟେ ଦେଖାଯାଉ ନଥିଲା । ଆଖପାଖରେ ଅନେକ ଗୁଡ଼ାଏ ଝୁମ୍ପୁଡ଼ି । ଆଉ ଟିକିଏ ଆଗକୁ କୁଷ୍ଠାଶ୍ରମ ବୋଧେ । କାରଣ କେତେଜଣ କୁଷ୍ଠରୋଗୀ ସେ ଆଡ଼କୁ

ଯାଉଥାଆନ୍ତି । ଝୁମ୍ପୁଡ଼ିମାନଙ୍କରୁ ସେତେବେଳେ ଚାଳ କଣା କରି କାଠଚୂଲାର ଧୂଆଁ ଉପରକୁ ଉଠି ବାୟୁମଣ୍ଡଳଟାକୁ ଅଧା ଆକ୍ରାନ୍ତ କରିସାରିଲାଣି । ବଣ ଓ ସନ୍ତସନ୍ତିଆ ବୁଦା ଭିତରେ ଛେଳି, କୁକୁଡ଼ା ଓ ଘୁଷୁରୀମାନେ ସେମାନଙ୍କର ଆହାର ଖୋଜିବାର ଶେଷ ଚେଷ୍ଟାରେ ପ୍ରାଣପଣେ ଲାଗି ଯାଇଛନ୍ତି ।

ଫାଟକ ଭିତରେ ପଶୁପଶୁ ମୁଁ ପଚାରିଲି, "ଏଇଟା ଆପଣଙ୍କ ଘର ?"

-''ମୋ ଘର ନୁହେଁ ମ । ଆମ ଘର । ଏବେ ଏଇଠି ଅଛି ଏବଂ ଶେଷଯାଏ ରହିବି ମଧ୍ୟ ।''

- "ମାନେ ?"

ସେ ଆଙ୍ଗୁଳି ଦେଖେଇ କହିଲେ- ''ହେଇ ଦେଖ ।''

ମୁଁ ଦେଖିଲି ଦୁଇ ମହଲା କୋଠା ଉପରେ ଲେଖାଯାଇଛି 'ଜରାନିବାସ' । ପୁରୁଣା କୋଠାଟିଏ । ଅନେକ ଦିନରୁ ଚୂନ ଲାଗିନି । ମରାମତିର ବି ଅଭାବ ରହିଚି । 'ଜରା ନିବାସ'ର ଅବସ୍ଥା କି ଜରାଗ୍ରସ୍ତ । ଖାଲି ସେତିକି ନୁହେଁ ଗୋଟିଏ ସ୍କୁଲ୍ ଭଳିଆ ଦେଖା ଯାଉଥିବା କୋଠାଟିରେ ଖୁବ୍ ବେଶି ଲୋକ ଚଳପ୍ରଚଳ ହେଉଥିବାର ଜଣାପଡୁ ନଥିଲା । ତେଣୁ ସବୁଠି ନିରବତା । ସେ ନିରବତା କୋଠାର ଜରା ଅବସ୍ଥାକୁ ଆହୁରି ଭୟଙ୍କର କରିଦେଉଚି । ଘରର ବାରଣ୍ଡାଠାରୁ ଫାଟକ ଯାଏ ପ୍ରାୟ ପଚାଶ ଫୁଟର ସରୁ ଗୋଡ଼ି ବିଛା ରାସ୍ତା । ଘର ଆଗରେ ଥିବା ଜାଗାମାନଙ୍କରେ କେବେ କେମିତି ସାରୁଗଛ କି ଶାଗ ବାଇଗଣ ଗଛ ମନ୍ଦାଏ କେହି ଲଗେଇ ଦେଇଥିଲେ ବୋଧେ । କିନ୍ତୁ ସେମାନେ ମଧ୍ୟ ଏବେ ଜରାନିବାସର ନାଁକୁ ସାର୍ଥକ କରିବା ପାଇଁ ପତ୍ର ରହିତ ହେଇ ମାଟି ଉପରେ ଖାଲି ଅସ୍ତିତ୍ୱ ଜାହିର କରୁଛନ୍ତି ।

ଜୟନ୍ତବାବୁ ଗୋଟିଏ ଘରର ତାଲା ଫିଟାଇଲେ ।

''କେମିତି ଲାଗୁଚି ଏ ଜାଗା ? ବସ ।''

"ଏଇଠି ଏଇ ଖଟ ଉପରେ ।" ସେ ମୋତେ ତାଙ୍କର ସେ ଘରର ଏକମାତ୍ର ଆସବାବପତ୍ର ଖଟଟିକୁ ଦେଖାଇଦେଲେ । ତା ଉପରେ ଖାଲି ଖଣ୍ଡେ ମସିଣା । ତେଲ ଚିକିଟା ଲାଗିଚି ଅନେକ ଦିନୁ । ମସିଣାର ଗୋଟିଏ କୋଣକୁ ଖୋଳ ନଥିବା ଗୋଟିଏ ତକିଆ । ତାର ଜରାବସ୍ଥା ମଧ୍ୟ ଦେଖିହେଉଛି । ତାର ତୁଳା କେତେକ ଜାଗାରେ ମୁକ୍ତି ପାଇଁ ସଂଗ୍ରାମ କରୁଥିବା ମଣିଷମାନେ ପଟୁଆରରେ ଗଲାବେଳେ ଯେମିତି ଉପରକୁ ହାତ ଟେକି ସ୍ଲୋଗାନ ଦିଅନ୍ତି ସେମିତି ଦେଖାଯାଉ ଥାଆନ୍ତି । ତକିଆଟା ତାର ପ୍ରକୃତ ସାଇଜ୍ ହରେଇ ଏମିତି ଚେପାଚେପି ହେଇ ଯାଇଥାଏ ଯେ ମନେହେବ ଯେମିତି ତାର ମାଲିକକୁ ରାତିରେ 'ଗାଲଷ୍ଟୋନ୍' ଜନିତ ହେଉ କି କଲିକ୍ ଜନିତ ହେଉ ପେଟର ଯନ୍ତ୍ରଣା ଆକ୍ରମଣ କରେ, ଇତିହାସର ବର୍ଗୀଙ୍କ ପରି ତା'ର ସମସ୍ତ ସୈନ୍ୟ ସାମନ୍ତ ନେଇ । ଆଉ ତାରି

ଭୟରେ ଘରର ଆସବାବପତ୍ର ମଧ୍ୟ ଡରି ଯାଉଥିବ ।

ମୁଁ ନିଜେ ଗୋଟାଏ 'ଡିସ୍କପ୍ରୋଲାପସ୍' ରୋଗୀ । ଅଳ୍ପ ଚାଲିଲେ ମୋ ଅଣ୍ଟାବ୍ୟଥା ଆରମ୍ଭ ହୋଇଯାଏ । ପ୍ରାଣମୂର୍ଚ୍ଛା ମୁଁ ଖୋଜି ପକାଏଁ କୋଉଠି ବସିବି । ଜୟନ୍ତବାବୁଙ୍କ ପାଟିରୁ କଥା ଶେଷ ହେବା ପୂର୍ବରୁ ମସିଣା ଉପରେ ବସିପଡ଼ି ଶାନ୍ତିରେ ଟିକିଏ ନିଃଶ୍ବାସ ମାରିଲି ।

କୋଠରୀଟୀ ବେଶି ବଡ଼ ନୁହେଁ । ବାର ବାଇ ଚଉଦ ହବ ବୋଧେ । ଗୋଟାଏ କୋଣକୁ ଗୋଟାଏ ଝାଡୁ । ତା ପାଖକୁ ଖଣ୍ଡେ ଆଲଣା, ଆମ୍ବକାଠର; ଅନେକ ଜାଗା ପୋକ ଖାଇ ଗଲାଣି । ଜୟନ୍ତବାବୁ ତାଙ୍କ କାନ୍ଧରୁ ଚାଦରଟା କାଢ଼ି ତା ଉପରେ ରଖିବା ମାତ୍ରେ ଆଲଣାଟା ମୃଦୁ ପ୍ରତିବାଦ କରିଉଠିଲା । ସେତିକି ଭାର ମଧ୍ୟ ସେ ସମ୍ଭାଳି ପାରୁନାହିଁ ।

ଆଲଣା ପାଖରେ ଗୋଟାଏ ସୁରେଇ । ସୁରେଇ ଉପରେ ଖଣ୍ଡେ ପିଚ୍ ବୋର୍ଡ଼ । ତା'ଉପରେ କୋଉ ମାନ୍‌ଧାତା ଅମଳର କାଚଗ୍ଲାସ । ମୋଟା କାଚ, ଲମ୍ବ ଓ ଫୁଲପକା । ମୋ ବୁଢ଼ୀମା ଏମିତିକା ଗ୍ଲାସ ବ୍ୟବହାର କରୁଥିବାର ମୋର ମନେ ପଡୁଚି । ସେ ଗ୍ଲାସ ଜୟନ୍ତବାବୁଙ୍କ ଘରେ ଦେଖି ମୁଁ ବିସ୍ମିତ ହେଲିନାହିଁ । କାରଣ ସେ ଘରେ ଆଉ ଯେତେ ଯାହା ଥିଲା ସବୁ ପୁରୁଣା । ଖଟ ତଳେ ଗୋଟାଏ ପୁରୁଣା ଟିଣବାକ୍ସ । କଳଙ୍କି ଲାଗିଚି ତା ଦେହରେ । ତା ଉପରେ ଗୋଟାଏ ଛିଣ୍ଡା ତଉଲିଆକୁ ଚଉତା ହେଇ ରଖାଯାଇଛି । କିନ୍ତୁସେଥିରେ ଥିବା ତାଲାଟି ବଡ଼ ଜବର । ମନେ ହେବ ଯେମିତି ବହୁ ମୂଲ୍ୟବାନ ଜିନିଷ ଅଛି ସେଥିରେ ।

ଜୟନ୍ତବାବୁ କୋଠରୀ ବାହାରକୁ ଗଲେ ଏବଂ ଅନ୍ୟଆଡ଼କୁ ଚାହିଁ ତିନିଥର ତାଳି ମାରିଲେ । ତା'ପରେ ଡାକିଲେ, "ତିଳୋତ୍ତମା', ଦୁଇକପ୍ ଚା... ?"

ତିଳୋତ୍ତମା ? କିଏ ଇଏ ? ସେଇ ନାଁର ନାରୀଟି ବୋଧେ ବାରଣ୍ଡାର ସେ ମୁଣ୍ଡରେ ଠିଆ ହୋଇଥିବ କି କଅଣ ? ମୁଁ ତାକୁ ଦେଖିବାକୁ ଇଚ୍ଛା କରୁଥିଲେ ମଧ୍ୟ ଦେଖିପାରୁ ନଥିଲି । ମନେମନେ ଭାବିଲି, କିଏ ଏଇ ତିଳୋତ୍ତମା ?

'ଜରା ନିବାସ' ବିଷୟରେ ମୋର କିଛି ଧାରଣା ନଥିଲା । କିଛି ଶୁଣିଥିଲି । ଶୁଣିଥିଲି ବହୁ ବଡ଼ବଡ଼ ସହରରେ ଏମିତି ଥାଏ । ଜୟନ୍ତବାବୁ ଆସି ମୋ ପାଖରେ ବସିପଡ଼ିଲେ । ମୋର ସେ ପୁରୁଣା ପ୍ରଶ୍ନ ମନେ ପଡ଼ିଲା । ପଚାରିଲି- ''କହିଲେ ନାହିଁ ତ ?''

-''କୋଉ କଥା ? ଏଇ ରଙ୍ଗ କଥା ତ ?'' ସେମିତି କିଛି ନାହିଁ ମ । ତୁମେତ ଜାଣ ମୁଁ ଆଗରୁ ଧଳା ପିନ୍ଧୁଥିଲି । ପରେ ଦେଖିଲି ତାକୁ ମେଣ୍ଟେନ୍ କରିବା ବଡ଼ କଷ୍ଟ । ତେଣୁ ତାକୁ ଗେରୁଆ କରିଦେଲି, ତା'ପରେ ଦେଖିଲି ଲୁଗାପଟା ସିନା ଗେରୁଆ ହେଲା, ଦାଢ଼ିଟା ଧଳା ଓ ମୁଣ୍ଡବାଳ ଅଧେ ଧଳା ଓ ଅଧେ କଳା । ଏତେ ରଙ୍ଗ ଭଲ ଲାଗିଲାନି, ଗୋଟାଏ ସମତା ଆଣିବା ପାଇଁ ସେସବୁକୁ ବି ଗେରୁଆ କରିଦେଲି । ଏଠି ସମସ୍ତେ ମୋତେ ଗୈରିକ

ବାବା ବୋଲି ଡାକନ୍ତି ।''

''ସେମାନେ ଠିକ୍ ନାଁ ଦେଇଛନ୍ତି । କିନ୍ତୁ ଆପଣ ଏଠି କାହିଁକି ? ଆପଣଙ୍କ ପିଲାମାନେ ? ଭାଉଜ ? ମୁଁ ତ ଶୁଣିଥିଲି.....''

''ତୁମେ ମୋତେ ସେଇ କଥାଟା ନ ପଚାରିଲେ ଭଲ ହୁଅନ୍ତା, ରମାକାନ୍ତ । ମୁଁ ଅନେକ ଆଗରୁ ସେସବୁ ସହିତ ସମ୍ପର୍କ ଛିଣ୍ଡେଇ ଦେଇଚି । କିଏ ଅଛି, କୋଉଠି ଅଛି, କେମିତି ଅଛି- ମୁଁ ସେସବୁଠାରୁ ଅନେକ ଦୂରରେ; ମୁଁ କେବଳ ମୋତେ ହିଁ ଜାଣିଚି ।ବାସ୍ । ସେତିକି ।''

ମୁଁ କାବା ହେଇ ଜୟନ୍ତବାବୁଙ୍କୁ ଅନେଇ ରହିଲି । ମୁଁ ଯେ ତାଙ୍କ ମୁହଁରୁ ଏକଥା ଶୁଣିବି, ସେ ଆଶା ମୋର ମୋଟେ ନଥିଲା ।

ତିଳୋତ୍ତମା ଏଥର ଦୁଇଟା ଗ୍ଲାସରେ ଚା' ଧରି ଆସିଲା । ସେ ଦୁଇଟା ଗ୍ଲାସକୁ ରଖିଦେଲା ଏବଂ ପଚାରିଲା, ''ଏତେବେଳ ଯାଏ କୁଆଡ଼େ ଯାଇଥିଲ ମ ? କହି ଯାଇଥିଲେ ହେଇ ନଥାନ୍ତା ?''

ମୋତେ ତିଳୋତ୍ତମା କଥାଟା କେମିତି କେମିତି  ଲାଗିଲା । ତାର ଜୟନ୍ତବାବୁଙ୍କୁ ପଚାରିଥିବା ପ୍ରଶ୍ନ ଚାରିପଟେ ମୋର ଅନେକ ପ୍ରଶ୍ନ ଘେରିଗଲେ । କିଏଏଇ ତିଳୋତ୍ତମା ? ତା' ସହିତ ଜୟନ୍ତବାବୁଙ୍କ ସମ୍ପର୍କ ? ସେ କୋଉଠି ଥାଏ ? ଚା' କୋଉଠୁ ଆଣିଲା ଇତ୍ୟାଦି ଇତ୍ୟାଦି ।

ଜୟନ୍ତବାବୁ କଥାଟାକୁ ଏଡ଼ାଇ ଯିବାକୁ ଚାହିଁଲେ ବୋଧେ । ସେ ତାକୁ କହିଲେ, ''ହଉ, ତୁ ଯାଆ । ପରେ ଆସିବୁ ।''

ତିଳୋତ୍ତମା ଚାଲିଗଲା । ମୋ ମନର ପ୍ରଶ୍ନଗୁଡ଼ିକ କିନ୍ତୁ ମୋତେ ଆହୁରି ବ୍ୟାକୁଳିତ କରି ପକାଇଲେ । ବିଶେଷକରି, ଯେ ଜୟନ୍ତବାବୁଙ୍କ ଅତୀତକୁ ଜାଣେଁ, ସେ ତାର ବର୍ତ୍ତମାନକୁ ଦେଖିଲେ ବହୁ ପ୍ରଶ୍ନ ତା ମନକୁ ଆସିବା ସ୍ୱାଭାବିକ। ତେବେ କଅଣ ଜୟନ୍ତବାବୁ ତାଙ୍କର ପରିବାର ଛାଡ଼ି ବାବାଜୀ ହେଇ ଯାଇଛନ୍ତି, ଏଇ ନାରୀ ପାଇଁ ? ବାବାଜୀର ଖୋଳ ଭିତରୁ ମଣିଷର ଅସ୍ୱାଭାବିକ ମନ ବେଳେବେଳେ ଏମିତି ପିଶାଚର ରୂପ ନେଇଥାଏ । କିନ୍ତୁ ଜୟନ୍ତବାବୁଙ୍କର ଏ ଦରିଦ୍ର ଅବସ୍ଥା କାହିଁକି ?

ମୋର ଅନ୍ୟମନସ୍କତାକୁ ଦେଖି ଜୟନ୍ତବାବୁ କହିଲେ- ''ତିଳୋତ୍ତମା ଏଇ ନିବାସର ଜଣେ କର୍ମୀ । କେୟାରଟେକର୍ ମଧ୍ୟ କୁହାଯାଇ ପାରେ । ରାନ୍ଧେ, ବାଢ଼େ, ଖୁଆଏ, ଖାଏ ଏବଂ ସମସ୍ତଙ୍କର ଯତ୍ନ ନିଏ । କିନ୍ତୁ ଟଙ୍କା ନିଏନା ।''

''କାହିଁକି ? ଫ୍ରି ସର୍ଭିସ୍ ଦିଏ ?''

''ସେ ନିଜେ ମଧ୍ୟ ଆମରି ପରି ଜଣେ । ତାର କେହି ନାହିଁ କିମ୍ବା ସେ ହୁଏତ କାହାରି ପାଖକୁ ଯିବାକୁ ଚାହୁଁନି । ତେଣୁ ସେ ଏଇଠି ରୁହେ । ରହିବା ପାଇଁ ସେ ଟଙ୍କା

ଦିଏନା କି ସର୍ଭିସ୍ ପାଇଁ ଟଙ୍କା ମଧ୍ୟ ନିଏନା ।''

"ସେ କଥା ବୁଝିଲି । କିନ୍ତୁ ଆପଣ ଏଠି କାହିଁକି ? ଆପଣଙ୍କ ପରିବାର ?"

"ସମସ୍ତେ ଅଛନ୍ତି । ସୁସ୍ଥ, ସୁନ୍ଦର ଓ ପ୍ରାଚୁର୍ଯ୍ୟ ଭିତରେ ସେମାନେ ଅଛନ୍ତି । ମୋ ବଡ଼ ପୁଅର ସିନା ଗୋଟାଏ କାର୍, ମୋ ସାନ ପୁଅର ଚାରିଟା କାର୍ । ତା'ର ବିଶାଳ ପ୍ରାସାଦଟିକୁ ପଲେ ଡୋବରମ୍ୟାନ୍ ଜଗୁଛନ୍ତି । ମୋ ସ୍ତ୍ରୀ ସେଇଠି ।" ସେ ହସିଲେ ।

ମୁଁ ହାଁ କରି ତାଙ୍କ ମୁହଁକୁ ଅନାଇ ରହିଲି । ମୋ ଅଜାଣତରେ ମୁଁ ଠିଆ ହେଇ ପଡ଼ିଲି । ହାତଯୋଡ଼ି କହିଲି, "ଜୟନ୍ତବାବୁ । ଆପଣଙ୍କ ପରି ସୌଭାଗ୍ୟବାନ ପୁରୁଷ ଏଠି ରହିବା କ'ଣ ଶୋଭା ପାଉଛି ? ଆପଣଙ୍କର କଅଣ ନାହିଁ ? ଅଥଚ ଆପଣ ଏଠି, ଏଇ ପରିବେଶରେ... ।"

ସେ କହିଲେ, "ତୁମେ ବୁଝିନ ରମାକାନ୍ତ ! ତୁମେ ଭିତରର କଥା ମୋଟେ ବୁଝିନ । ତୁମେ ଯାହା ଦେଖୁଚ ତା ବାହାରେ ଆଉ ଗୋଟାଏ ବିରାଟ ବିଶ୍ୱ ରହିଚି, ସେ କଥାଟା ତୁମେ ଖାଲି ଆଖି ଦେଖି ପାରିବନି ।"

ତାଙ୍କର ଏ ଉତ୍ତରରେ ମୁଁ କଅଣ କହିବି ଠିକ୍ କରି ପାରିଲିନି । ମୋ ଭିତରେ ସବୁ ଗୁଡ଼େଇ ଯାଉଥାଏ ଯେମିତି ।

"ତୁମକୁ ମୁଁ ମନେମନେ ଖୋଜୁଥିଲି ରମାକାନ୍ତ । ଅନେକ କଥା ତୁମକୁ କହିବାର ଅଛି । କିନ୍ତୁ ଆଜି ନୁହେଁ । ତୁମେ ଏବେ ଅଛ କେଉଁଠି ?"

"ମୋ ପୁଅ ବୋହୂ ଏଠି ଅଛନ୍ତି । ମୁଁ ଏଠିକୁ ମଝିରେ ମଝିରେ ଆସେଁ । ଦଶପନ୍ଦର ଦିନ ରହି ଗାଁକୁ ପଳାଏ । ପୁଅ ବୋହୂ ଦୁହେଁ ଏଠି ଅଧ୍ୟାପକ ଚାକିରି କରନ୍ତି । ରିଟାୟାର କଲାପରେ ମୋ ସମୟ ଏମିତି କଟି ଯାଉଚି ।"

ସେଦିନ ଜୟନ୍ତବାବୁଙ୍କଠାରୁ ଆସିଲା ପରେ ମୁଁ ଅବଶ୍ୟ ଆଉ ଦୁଇ ଚାରିଦିନ ଭୁବନେଶ୍ୱରରେ ଥିଲି । ସେତେବେଳେ ଜୟନ୍ତବାବୁଙ୍କ କଥା ମୋ ମନକୁ ସବୁବେଳେ ଆନ୍ଦୋଳିତ କରୁଥିଲେ ମଧ୍ୟ ମୁଁ ଚେଷ୍ଟା କରି ସେସବୁକୁ ଆଡ଼େଇ ଦେଇଥାଏଁ । ସେସବୁ ତାଙ୍କର ଏକାନ୍ତ ଘରୋଇ କଥା । ମୁଁ ସେଥିରେ ମୁଣ୍ଡ ପୂରେଇ ବା କରିବି କ'ଣ ? ତାଙ୍କ ବ୍ୟକ୍ତିଗତ ସମସ୍ୟା ଯେ କେତେ ଲମ୍ବା ସେ କଥା କିଏ ଜାଣିଚି ? ଆଳୁ ଖୋଳୁ ଖୋଳୁ ମହାଦେବ ଯେ ନ ବାହାରିବ ସେକଥା କିଏ କହିବ ? ମୁଁ ସେସବୁ ପାରିବି ତ ?

ଗାଁକୁ ଆସି ମୁଁ ଯେତେବେଳେ ମୋ ସ୍ତ୍ରୀଙ୍କୁ ଏସବୁ କଥା କହିଲି ସେ କହିଲେ, "ମୋର ପୂରା ବିଶ୍ୱାସ ତିଳୋତ୍ତମା ହିଁ ଅସଲ ମଞ୍ଜି । ତାରି ପାଇଁ ବୁଢ଼ା ଘର ତ୍ୟାଗ କରିଚି । କି ଦେଶସେବା ହୋ ? ଆମେ ଦେଖୁନୁଁ ଆଜିର ଦେଶସେବୀମାନଙ୍କୁ ! ଚୋଠାମାନଙ୍କୁ ଚିହ୍ନିବାକୁ ଆଉ ବାକି ଅଛି ?"

ପ୍ରାୟ ମାସକ ପରେ ମୁଁ ପୁଣି ଥରେ ଭୁବନେଶ୍ୱର ଗଲି । ସେତେବେଳକୁ ଜୟନ୍ତବାବୁଙ୍କ

କଥା ଅଧାରୁ ବେଶି ମୋ ମନରୁ ଅପସରି ଯାଇଥାଏ । ଇଚ୍ଛା ମଧ୍ୟ ନ ଥାଏ । ସେଦିନ ଖରାବେଳେ ମୁଁ ବାରଣ୍ଡାରେ ବସି ପତ୍ରିକାଟିଏ ପଢୁଥାଏଁ, ଅତି ମନଯୋଗ ସହକାରେ । ବୋହୂ ଆସି ଡାକିଲା- ''ଆପଣଙ୍କ ଫୋନ୍ ।'' ଧରିଲି । ହାଲୋ ।

''ମୁଁ ତିଲୋତ୍ତମା କହୁଚି । ଜରା ନିବାସରୁ । ଏଇ ଦିନ ଦି'ଟାବେଳେ ଜୟନ୍ତବାବୁ ହଠାତ୍ ଚାଲିଗଲେ । ମୋତେ କହିଥିଲେ ଆପଣଙ୍କୁ ଖବର ଦେବାକୁ । ଏଇ ଫୋନ୍‌ରେ ଜଣେଇ ଦେବାକୁ ।''

"ଜୟନ୍ତବାବୁ ଚାଲିଗଲେ ? କାହିଁକି ? କଅଣ ହୋଇଥିଲା ?"

"ହାର୍ଟ ଆଟାକ୍ । ଆପଣ ଆସନ୍ତୁ, ସବୁ କହିବି । ଶବ ଛାଡ଼ି ଆସିଛି । ଆଉ କିଏ ଅଛି ତାଙ୍କୁ ଜଗିବ ?" ସେ ଫୋନ୍ ଛାଡ଼ିଦେଲା । ମୁଁ ଅଡୁଆରେ ପଡ଼ିଲି । ଯୋଉ ଝାମେଲା ଭିତରକୁ ମୁଁ ପଶିବାକୁ ଚାହୁଁ ନଥିଲି ଏବେ ତ ଆପେଆପେ ସେଠାକୁ ଟାଣି ହୋଇ ଆସୁଚି ।

ପୁଅ କହିଲା- ''କୋଉ ଅବସ୍ଥାରେ ତାଙ୍କର ମୃତ୍ୟୁ ହେଲା । ଯେମିତି ପାରିବାରିକ ଗୋଳମାଳ ସବୁ ଆଗରୁ ଥିଲା ବୋଲି ଆପଣ କହୁଥିଲେ, ପ୍ରକୃତ କଥାଟା କଅଣ ହେଇଥିବ ନଜାଣି ସେଠାକୁ ଯିବା ଠିକ୍ ହେବ ନାହିଁ ।''

ମୋ ମନକୁ ପାପ ଛୁଇଁଲା । ତାଙ୍କ ମୃତ୍ୟୁଟା ସ୍ୱାଭାବିକ ନୁହେଁ ଏକଥା ସେଠାକୁ ଯିବା ପୂର୍ବରୁ ମୋର ଜାଣିବା ଉଚିତ । ତିଲୋତ୍ତମା କହିଥିଲା, ''ଜୟନ୍ତବାବୁ କେବଳ ମୋତେ ଖବର ଦେବାକୁ କହିଥିଲେ । ତାଙ୍କର ଏତେ ଲୋକ ଥାଉଁ ଥାଉଁ ସେ ମୋ ଉପରେ ଏତେ ବିଶ୍ୱାସ ରଖିଛନ୍ତି ? ମୁଁ କଅଣ କରିବି ଠିକ୍ କରିପାରୁ ନଥାଏଁ । ବୋହୂ କହିଲା, "ଏମିତି ଚୁପ୍ ରହିବା ଠିକ୍ ହେବ ନାହିଁ । ବରଂ ଦୁହେଁ ଯାଅ, ଅବସ୍ଥା ଦେଖି ବ୍ୟବସ୍ଥା କରିବ । କି ସମସ୍ୟା । ସମସ୍ତେ ଥାଉଁ ଥାଉଁ କେହି ନାହାନ୍ତି ?" ଶେଷରେ ଆମେ ଦୁହେଁ ବାହାରି ଗଲୁଁ । ଯାଇ ଦେଖିଲୁଁ ତିଲୋତ୍ତମା ତାଙ୍କ ପାଦ ପାଖରେ ବସିଚି । ଆଉ କେହି ନାହିଁ । ଏପରିକି ଜରା ନିବାସର ମଧ୍ୟ ଅନ୍ୟକେହି ସେଠି ନାହାନ୍ତି । ସେମାନେ ଯେଝା କୋଠରୀରେ ବୋଧେ । କି ଆଶ୍ଚର୍ଯ୍ୟ । ଏମିତି କଅଣ ହୁଏ ?

-''ତାଙ୍କ ପୁଅ କି ସ୍ତ୍ରୀଙ୍କୁ ଖବର ଦିଆ ହେଇଚି ?''ମୁଁ ପଚାରିଲି ।

ତିଲୋତ୍ତମା ମୁଣ୍ଡ ହଲାଇ ମନାକଲା । କହିଲା- ''ମୋତେ କେବଳ ଆପଣଙ୍କ କଥା ଓ ସେଇ ନମ୍ବରଟା ଦେଇଥିଲେ । କହିଥିଲେ ଏଇଟା ରଖିଥା । ମୋର କେତେବେଳେ କିଛି ହୋଇଗଲେ ଖବରଦେବୁ ।'' ତିଲୋତ୍ତମା ଆଖିରୁ ଲୁହ ପୋଛିଲା । ତା'ପରେ କହିଲା- ''ବାକ୍ସଟା ବି ଆପଣଙ୍କୁ ଦେବାକୁ କହିଛନ୍ତି । ଏଇ ନିଅନ୍ତୁ, ଏଇଟା ତା'ର ଚାବି ।''

ମୁଁ ଆସ୍ତେ ଆସ୍ତେ ଗୋଟାଏ ରହସ୍ୟ ଘେରରେ ଛନ୍ଦି ହୋଇପଡ଼ିଲି । ପଚାରିଲି- ''କଅଣ ଅଛି ଏଥିରେ ?''

''ମୁଁ କଅଣ ଜାଣିଚି ? ମୋତେ ସେ ଯେମିତି କହିଥିଲେ ।''

ଭାବିଲି ତିଳୋତ୍ତମା ମୋତେ ଅସୁବିଧାରେ ପକାଇ ଦେବ ନାହିଁ ତ ? ତା ପାଖରେ ଚାବି ଅଛି, ଅଥଚ ସେ ବାକ୍ସରେ କଅଣ ଅଛି ସେ ଜାଣିନାହିଁ ? ଏହା କିପରି ସମ୍ଭବ ? ତା'ଛଡ଼ା ମୋତେ ତ ଜୟନ୍ତବାବୁ ଏସବୁ ଦାୟିତ୍ୱ ଦେବା କଥା କହୁ ନଥିଲେ କିଛି କଥା କହିବେ ବୋଲି କହୁଥିଲେ । ତଥାପି ମୁଁ ଚାବିଟା ନେବାକୁ ଯାଉଥିଲି, ପୁଅ ମନା କଲା । କହିଲା- ''କିଛି ନଜାଣି ଏସବୁ ଦାୟିତ୍ୱ ନେବା ଉଚିତ ନୁହେଁ ।''

''ସେକଥା ହେବ ନାହିଁ- କହିଲା ତିଳୋତ୍ତମା । ''ମୁଁ ସାଧାରଣ ସ୍ତ୍ରୀଟିଏ । ଆପଣମାନେ ସମସ୍ତେ ତାଙ୍କର ନିଜର ଲୋକ । ତା ନହେଲେ ଚାବିଟା ଆପଣଙ୍କୁ ଦେବାକୁ କାହିଁକି କହି ଥାଆନ୍ତେ ? ଏଇ ନିଅନ୍ତୁ । ସେ ଦାୟିତ୍ୱ ମୁଁ ନେବାକୁ କିଏ ?'' ସେ ମୋ ହାତରେ ଚାବିଟା ଗୁଞ୍ଜିଦେଲା ।

ମୁଁ ଚାବିଟା ନେଇ ବାକ୍ସଟା ଫିଟେଇଲି । ସେଥିରେ କେତେଗୁଡ଼ାଏ କାଗଜପତ୍ର ଥିଲା । କିନ୍ତୁ ଉପରେ ଥିଲା ଖଣ୍ଡେ ଚିଠି । ମୁଁ ତାକୁ ଖୋଲିଲି ।

ପ୍ରିୟ ରମାକାନ୍ତ,

ସେଥର ତୁମର ଯିବାର ଦି'ଦିନ ପରେ ମୋର ହାର୍ଟଆଟାକ୍ ହୋଇଥିଲା । କେମିତି କେଜାଣି ବର୍ତ୍ତିଗଲି ସେଥିରୁ । ତା'ପରେ ଭାବିଲି ଏଥର ପ୍ରସ୍ତୁତ ରହିବାକୁ ହେବ । ତୁମ ସହିତ ଦେଖା ହେବା ପରେ ସବୁ ଦାୟିତ୍ୱ ତୁମକୁ ଦେଇ ଯିବାକୁ ସ୍ଥିରକଲି । ଦାୟିତ୍ୱ ଅତି ସାମାନ୍ୟ । ମୁଁ ତାକୁ ଆଉ କାହାକୁ ଦେବାକୁ ଚାହେଁନା ।

ତୁମେ ତ ଜାଣ,  ମୁଁ ମୋ ଜୀବନରେ କାହା ସହିତ ସାଲିସ୍ କରିପାରିଲି ନାହିଁ । ପୁଅମାନେ ଅମୀର । ବିରାଟ ବିରାଟ ବ୍ୟବସାୟୀ । କିନ୍ତୁ ଯେତେବେଳେ ଧରାହେଇ ଜେଲ୍‌କୁ ଯାଆନ୍ତି ତା'ପର ଦିନ ଖଲାସ ହେଇ ଫେରି ଆସନ୍ତି । ଆସନ୍ତି ଫୁଲମାଳ ପକେଇ ଶୋଭାଯାତ୍ରାରେ । ମନ୍ତ୍ରୀମାନେ ତାଙ୍କୁ ସ୍ୱାଗତ କରନ୍ତି । ମୋର ସ୍ୱାଧୀନ ଓ ବିଦ୍ରୋହୀ ମନ ଏସବୁକୁ ମୋଟେ ଗ୍ରହଣ କରି ପାରିଲା ନାହିଁ । ଛାଡ଼, ତୁମକୁ ଆଉଥରେ ଭେଟିବାର ସମ୍ଭାବନା କମ୍ । ଏଥିରେ ଯେଉଁ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ଅଛି ସେଥିରୁ ଅଧେ 'ଜରା ନିବାସ'କୁ ଦେବ । ବାକି ଅଧକ ତିଳୋତ୍ତମାକୁ ଦେବ । ସେ ମୋର ସେବା କରି ନ ଥିଲେ ମୁଁ ଅନେକ ଆଗରୁ ବିଦାୟ ନେଇ ସାରନ୍ତାଣି । ମୋଟାମୋଟି ଗୋଟାଏ ଉଇଲ ଏଥିରେ ଅଛି । ବାକି କାମ ତମର ।

ଚିଠିଟି ପଢ଼ି ସାରିଲା ବେଳକୁ ଦେଖିଲି ତିଳୋତ୍ତମା ଜୟନ୍ତବାବୁଙ୍କ ଗୋଡ଼ ଉପରେ ମୁଣ୍ଡ ଥୋଇ ଭୋ ଭୋ କାନ୍ଦୁଚି । ଝିଅ ଯେମିତି କାନ୍ଦେ ବାପାର ଶବ ପାଖରେ ।

(ପଂମ ସ୍ତମ୍ଭ)

# ଆବର୍ତ୍ତ

ଶିଳ୍ପୀ ଚନ୍ଦ୍ରଶେଖର । ସେଦିନ ସେ ବ୍ୟସ୍ତ ଥିଲେ ତାଙ୍କ ବାସଭବନ ସଂଲଗ୍ନ ଚିତ୍ରଶାଳାରେ । ସୂର୍ଯ୍ୟୋଦୟର ଯଥେଷ୍ଟ ପୂର୍ବରୁ ଶିଳ୍ପୀ ଚିତ୍ରଶାଳା ଭିତରକୁ ପ୍ରବେଶ କରିଥିଲେ ମଧ୍ୟ ସେଏଯାଏ ହୁଏତ ସୂର୍ଯ୍ୟଙ୍କ ଅବସ୍ଥିତି ସମ୍ପର୍କରେ ଅବହିତ ନାହାନ୍ତି । ସୂର୍ଯ୍ୟ ଯେମିତି ତାଙ୍କର ଗତିପଥରେ କେବେ ଅଟକି ଯାଆନ୍ତି ନାହିଁ- ଲକ୍ଷ୍ୟସ୍ଥଳରେ ନ ପହଞ୍ଚିବା ଯାଏ, ଶିଳ୍ପୀ ଚନ୍ଦ୍ରକିଶୋର ଠିକ୍ ସେମିତି । ତାଙ୍କର ମନେ ନଥାଏ ତାଙ୍କ ନିଜ କଥା, ପୃଥିବୀ କଥା । ସେ ସଦା ତାଙ୍କ ସୃଜନରେ ନିମଗ୍ନ । ତୂଳୀ ଓ ରଙ୍ଗ ଭିତରେ ସେ କେବଳ ଦେଖୁଥାଆନ୍ତି ତାଙ୍କ ପୃଥିବୀକୁ ।

ଶିଳ୍ପୀ ଚନ୍ଦ୍ରକିଶୋରଙ୍କ ଚିତ୍ରଶାଳା ସେଦିନ ଯେମିତି ସତେଜ ହୋଇ ଉଠିଥାଏ । ସତେଜ ନୁହେଁ-ଜୀବନ୍ତ । ପ୍ରତ୍ୟେକଟି ଛବି-ଗଛ, ପତ୍ର, ନଦନଦୀ, ଆକାଶ, ପାହାଡ଼, ପର୍ବତ, ବଣ, ଭୂଇଁ ଏପରିକି ପଶୁପକ୍ଷୀ ସମସ୍ତେ ଯେମିତି ପାଇଛନ୍ତି ଜୀବନ୍ୟାସ । କେଉଁ ମନ୍ତ୍ରିତ ଜଳର ସ୍ପର୍ଶରେ ସେମାନେ ହୋଇ ଉଠିଛନ୍ତି ଚଳଚଞ୍ଚଳ । ସୃଷ୍ଟି ହେଉଛି ଅନନ୍ୟ ପୃଥିବୀଟିଏ । ଭୂ'ରୁ ଭୂମାଯାଏ ସବୁଠି ସମସ୍ତେ ନୃତ୍ୟରତ । ସବୁଠି କଳରବ । କେଳିବଣର କାକଳିଠାରୁ ଆରମ୍ଭ କରି କୃଷ୍ଣାର ଜଳବେଣୀ ଯାଏ- ସବୁଠି ମନ୍ତ୍ରମୁଗ୍ଧ ଅପୂର୍ବ ଜୀବନ୍ୟାସ ।

ଜଣେ ବିସ୍ମିତ ହୁଏ । ଏମିତି କଅଣ ଈଶ୍ୱର ନାମକ ଜଣେ କୁଶଳୀ ଶିଳ୍ପୀ ତାଙ୍କର ଐନ୍ଦ୍ରଜାଲିକ ହାତର ତୂଳୀରେ ଦିନେ ତିଆରି କରିଥିଲେ ବିଶ୍ୱର ଅବିସ୍ମରଣୀୟ ବିସ୍ମୟ ? ଏମିତି ଏଇ କାନଭାସ ଉପରେ ଖଞ୍ଜି ଦେଇଥିଲେ ଆକାଶରେ ଅଗଣନ ଗ୍ରହ ନକ୍ଷତ୍ରମାନଙ୍କୁ ? ଝରେଇ ବି ଦେଇଥିଲେ ସେମାନଙ୍କ ଦେହରୁ ରୂପାର ଝିଲମିଲ ଝରଣାସବୁ ? ଝରି ପଡୁଥିଲା ଆମ ଉପରେ ଥୋପି ଥୋପି ହୋଇ ?

ଆଉ ଶିଳ୍ପୀ ଚନ୍ଦ୍ରକିଶୋର ? ଆଉ ଏକ ସୃଷ୍ଟି ?ସୃଷ୍ଟିର ମହନୀୟତା ବି ? ଶିଳ୍ପୀ ହିଁ ସୃଷ୍ଟିକର୍ତ୍ତା, ସେ ହିଁ ଈଶ୍ୱର । ଈଶ୍ୱର ଏବଂ ଶିଳ୍ପୀ ଦୁହେଁ ଏକାକାର ହୋଇ ଯାଇଥିଲେ- ଜଣେଆଉ ଜଣକ ଭିତରେ । ଏମାନେ ଏକ । ଜଣେ ଦେଖୁଥାଏ ଅନ୍ୟକୁ ଆଉ ଜଣକ

ଭିତରେ । ତା'ପରେ ସୃଷ୍ଟି ହୁଏ ସୃଷ୍ଟି ପ୍ରକ୍ରିୟା ।ଏକ ଅନ୍ତହୀନ ଅମୃତର ଧାରା । ସୃଷ୍ଟି ବଞ୍ଚିଥାଏ ଶିଳ୍ପୀ ଭିତରେ । ଶିଳ୍ପୀ ବଞ୍ଚିଥାଏ ସୃଷ୍ଟି ଭିତରେ । ପରସ୍ପରର ପରିପୂରକ । ଦୁଇଟି ଅସମାପ୍ତ ସମାନ୍ତରାଳ ସରଳରେଖା ପରି । ଗତି ସରେ ନାହିଁ । ସରେ ନାହିଁ ଦିଗ ଓ ଦିଗନ୍ତ ।

ଏହାହିଁ ମଣିଷର ହଜାର ହଜାର ବର୍ଷର ଇତିହାସ । ବ୍ୟାପିଥାଏ ଯୁଗରୁ ଯୁଗକୁ । ଅସମାପ୍ତ ଓ ଅନ୍ତହୀନ  ଜୀବନର ରହସ୍ୟ ।

ମହାନ ଶିଳ୍ପୀ ଆଜି ସେଇ ଅନାଦି କାଳରୁ ସୃଷ୍ଟି ହେଇଥିବା ଜନଜୀବନର ଅମୃତମୟ ଧାରାକୁ ଗୋଟିଏ ଚିତ୍ରରେ ଆଙ୍କିବାକୁ ଚେଷ୍ଟା କରୁଛନ୍ତି । ସେ ଆଉ ଗୋଟିଏ ସୃଷ୍ଟିକୁ ଧରି ରଖିବାକୁ ଚେଷ୍ଟା କରୁଛନ୍ତି ମାତ୍ର ଖଣ୍ଡିଏ କାନଭାସରେ । ଅନ୍ତତଃ ପାଞ୍ଚ ହଜାର ବର୍ଷର ଇତିହାସ । 'ମହାଭାରତରୁ ଭାରତବର୍ଷ' । ଶିରୋନାମା ସେ ଦେଇ ସାରିଛନ୍ତି । ଦୀର୍ଘ ଅର୍ଦ୍ଧଶତାବ୍ଦୀ ଧରି ଯାହା ତାଙ୍କୁ ବହୁବାର ଆନ୍ଦୋଳିତ କରିଚି, ତାଙ୍କର ଚିନ୍ତା ଓ ଚେତନାକୁ ବାରମ୍ବାର ହାତୁଡ଼ିରେ ପିଟିପିଟି କ୍ଷତାକ୍ତ କରିଚି, ତାଙ୍କୁ ଉତ୍ତେଜିତ କରିଚି, ଯାହା ପାଇଁ ସେ ବହୁ ରାତ୍ରୀ ନିଦ୍ରା ଯାଇନାହାନ୍ତି, ବହୁ ଦିନର ମାନସିକ ଉତ୍ତାପକୁ ପାଶୋରି ଯାଇଚନ୍ତି, ଅଜସ୍ର ଚନ୍ଦ୍ରକିରଣକୁ ସେ ଆଖିବୁଜି ଦେଇଛନ୍ତି, ବହୁବାର ନିଜର ନିମଗ୍ନ ଧ୍ୟାନ ଭିତରେ ନିଜକୁ ହଜାଇ ଦେଇଛନ୍ତି ଏବଂ ପୁଣି ଖୋଜିଛନ୍ତି, ଆଜି ତାକୁଇ ନେଇ ସେ ବ୍ୟସ୍ତ ।

ଶିଳ୍ପୀ କଅଣ ଆଜି ଚିତ୍ର ସହିତ ଚିତ୍ର ପାଲଟି ଯାଇଚନ୍ତି ?

ସେ ପଥର ପାଲଟି ଯାଇଚନ୍ତି ?

ମଗ୍ନତା କଅଣ ମଣିଷକୁ ନିରବ ନିଷ୍ପନ୍ଦ କରିଦିଏ ? ଜଡ଼ରେ ପରିଣତ କରିଦିଏ ? ଏହାହିଁ କଅଣ ସୃଷ୍ଟି ପ୍ରକ୍ରିୟା ?

''ଶିଳ୍ପୀ !''

''କିଏ ?ଅରୂପା ?''

X X X

ଶିଳ୍ପୀ ତଥାପି ସ୍ଥିର ।

''ତୁମେ କେଉଁଠି ଅରୂପା ? ମୋ ଭିତରେ ନା ବାହାରେ ?''

''ଧନ୍ୟ ତୁମେ । ତେବେ ବି ଜାଣି ପାରୁନ ? କେବେ ଆଉ ଜାଣିବ ?''

''ସେତକ ଜାଣିବାକୁ ମୋତେ ଯଦି ଆହୁରି ହଜାର ହଜାର ବର୍ଷ ବିତି ଯାଆନ୍ତା, ମୁଁ ଖୁସି ହୁଅନ୍ତି । ଜାଣିବାରେ ଆନନ୍ଦ ନଥାଏ ଅରୂପା । ଆନନ୍ଦ ଥାଏ ନ ଜାଣିବାରେ । ମିଳିବାରେ ତ କିଛି ବି ନଥାଏ, ଥାଏ ଖୋଜିବାରେ । ହଜିବାର ମୁଗ୍ଧ ମନ ନଥାଏ ବି ପାଇବାରେ । ଅତୃପ୍ତିରେ ବ୍ୟାକୁଳତା ନଥାଏ, ନଥାଏ ବି କେବେ ପରମ ତୃପ୍ତିରେ ।''

ଶିଳ୍ପୀ ତଥାପି ମଗ୍ନ ତାଙ୍କ ସୃଷ୍ଟିରେ । ତଥାପି ଅଚଳ ।

''ଦିନ ଏଗାରଟା ହେଲାଣି, ବ୍ରେକଫାଷ୍ଟ ଦୂରର କଥା- ତମେ ଏଯାଏଁ ଚା'କପେ ବି ପିଇନ ।'' ଆଜିକୁ ପାଞ୍ଚବର୍ଷ ହେଲା ତୁମର ନିଜ ପ୍ରତି ଯୋଉ ଅତ୍ୟାଚାର, ହଁ, ଅତ୍ୟାଚାର ନୁହେଁ ଆଉ କଅଣ ?''

ଶିଳ୍ପୀ ନିରବ । ସେ ଯେମିତି କିଛି ଶୁଣିପାରି ନାହାନ୍ତି ।

''ତୁମେ ଯେ ଯା ଭିତରେ ସତୁରିଟି ଉତପ୍ତ ନିଦାଘକୁ ଅତିକ୍ରମ କରି.....''

''ଅତିକ୍ରମ କରି ?'' ତୁମେ କଅଣ କହୁଚ ଅରୂପା ? ମୁଁ ତ ଯୋଉଠି ଥିଲି ସେଇଠି ଅଛି । ଅତିକ୍ରମ କରିବାକୁ ଦେଲ କୋଉଠି ?''

''ଥାଉ, ବାଜେ କଥା । ଆସ ଏଥର । ଏଇ ନିଅ ବ୍ରସ ଓ ତଉଲିଆ । ଜଳଖିଆ ଏଇଠିକୁ ଆଣିବି ?''

ଶିଳ୍ପୀ ତଥାପି ନିରବ । ମଗ୍ନ, ମୁକ କାନଭାସ ଉପରେ । ଏକ ଭିନ୍ନ ପୃଥିବୀରେ । ସେଠୁ ବା ତାଙ୍କୁ କିଏ ଫେରେଇ ଆଣି ପାରିବ ? କିଏ ବା ତାଙ୍କର ଧ୍ୟାନ ଭାଙ୍ଗି ପାରିବ ?

ଅରୂପା ଅଭିମାନରେ ଭାଙ୍ଗି ପଡୁଥିଲା ।

''ଅରୂପା !''

ଅରୂପା ନିରବ ।

''ତୁମକୁ ଗୋଟେ କଥା ପଚାରିବି ? ତୁମର ସଚେତନତା ଓ ଅଚେତନତା, କୋଉଥିରେ ତୁମେ ବେଶି ସୁନ୍ଦର ?''

''ମୁଁ ଜାଣେନା।''

''ଠିକ କହିଚ । ତୁମେ ଯଦି ଜାଣିଚ ବୋଲି କହିଥାଆନ୍ତ ତେବେ ମୋ ହାତ ଅଟକି ଯାଇଥାଆନ୍ତା । ତୁଳୀ ଓ ରଙ୍ଗମାନେ ମୋ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥାଆନ୍ତେ । ସେମାନେ ହୁଏତ କହିଥାଆନ୍ତେ ତୁମେ ଶିଳ୍ପୀ । ତୁମେ ସୃଷ୍ଟିକର୍ତ୍ତା । ତୁମେ ସତ୍ୟର ପୂଜାରୀ । ଯୁଗେଯୁଗେ ତୁମେ ସତ୍ୟର ପ୍ରତିଷ୍ଠା କରି ଆସିଚ । ଆଜି ତୁମେ ସେଇ ଚିରନ୍ତନ ସତ୍ୟକୁ ହତ୍ୟା କରୁଚ ? ବିଶ୍ୱ ତୁମକୁ ଭୁଲ୍ ବୁଝିବନି ?''

''କୋଉଟା ସତ୍ୟ ଶିଳ୍ପୀ ?''

''ଆଃ କିଏ ଏ ଅସମୟରେ ଘଣ୍ଟି ଦେଲା ଅରୂପା ।''

ସେ ଫେରି ପଡ଼ିଲେ । ହାତ, ମୁହଁ, ଓଠ ସବୁଠି ତାଙ୍କର ରଙ୍ଗର ପ୍ରଲେପ । କିମ୍ଭୁତ କିମାକାର । ସର୍କସର ଜୋକର ।

''ତୁମେ ହସୁଚ ? ଯାଇ ଦେଖ । କିଏ , ଆଗନ୍ତୁକ ?''

''ଆଗନ୍ତୁକା ।''

''ତୁମେ ତାଙ୍କୁ ଆପଏଣ୍ଟମେଣ୍ଟ ଦେଇଥିଲ ।''

''ମୁଁ ଦେଇଥିଲି ?''

ଅରୂପା ସୁଇଚ ଚିପିଦେଲେ । ସଙ୍ଗେସଙ୍ଗେ ଦୀର୍ଘ ଶହେ ଫୁଟର ଲମ୍ବା କାନଭାସ ଉପରେ ପାତଳ ସଫେଦ ପରଦାଟାଏ ଆପେ ଆପେ ଟାଣି ହେଇ ଆସିଲା । ସମଗ୍ର 'ମହାଭାରତରୁ ଭାରତବର୍ଷ'ର ଛବିଟା ରହିଗଲା ପରଦାର ଅନ୍ତରାଳରେ ।

ସେ ସାଷ୍ଟାଙ୍ଗ ପ୍ରଣିପାତ ଜଣେଇଲେ ଏବଂ ପାଦଧୂଳି ନେଇ ମୁଣ୍ଡରେ ମାରିଲେ । ଗୋଟାଏ ପରମ ତୃପ୍ତିର ଆଭା ତାଙ୍କ ମୁହଁରେ ଉକୁଟି ଉଠିଲା । ଯେମିତି ଗୋଟାଏ ବିରଳ ଅନୁଭବ । ସେ ତରଳି ଯାଉଥିଲେ । ଗୋଟାଏ ଗଦ୍‌ଗଦ ଭାବ । ଶିଳ୍ପୀଙ୍କ ଆଖି ଆଗନ୍ତୁକାଙ୍କ ଉପରେ । ଗୋଟାଏ ସ୍ଥିର ଅଥଚ ନୀଳ ହ୍ରଦର ସ୍ଥିତି ଉପରେ ସିଆର କାଟି ଘୂରି ବୁଲୁଥିଲା ଆଗନ୍ତୁକାଙ୍କ ପରିଚୟ । ଖୋଜୁଥିଲା ସେ କିଏ ଓ କାହିଁକି । କୋଉଠି ଦେଖିଥିଲା ପରି ମନେ ପଡୁନି । ଶିଳ୍ପୀଟିଏ ତ ବରାବର ଭୁଲ୍ କରେ । ସୃଜନ ବିନା ଆଉ କଅଣ ବା ସେ ମନେ ରଖିପାରେ ? ତାଙ୍କ ଆଖିର ଅସହାୟତା ସ୍ପଷ୍ଟ ହୋଇ ଆସୁଥିଲା ।

ଅରୂପା କିଛି ସମୟ ଦୁଇଜଣଙ୍କୁ ଦେଖିଲେ ଓ ତା'ପରେ ନିରବରେ ସେଠୁ ଏବଂ ସେମାନଙ୍କ ଦୃଷ୍ଟିପଥରୁ ଅପସାରିତ ହୋଇ ଚାଲିଗଲେ । ସେ ଜାଣୁଥିଲେ ଯେ ଶିଳ୍ପୀ ଏଯାଏ କିଛି ମନେ ପକେଇ ପାରୁ ନାହାନ୍ତି । ସେ ମନେ ମନେ ଖୁସି ହେଉଥିଲେ । ଅରୂପାକୁ ଛାଡ଼ି ଶିଳ୍ପୀ ପୃଥିବୀରେ ଆଉ କାହାକୁ ମନେ ନ ରଖନ୍ତୁ । ଏହାହିଁ ଏକ ସ୍ୱାଭାବିକ ନାରୀର ଇଚ୍ଛା । ଗୋଟାଏ ଅହେତୁକ ଗର୍ବ ତାଙ୍କୁ ଉଦ୍‌ବେଳିତ କରୁଥିଲା । ସେ ଗୁଣୁଗୁଣୁ ହେଇ ଗୀତ ଗାଇଲେ ଏବଂ ଘର ମଝିରେ ଥିବା ଅଗଣାରେ ଅଗଣିତ ଫୁଲ ଓ ଲତାର ମହୋତ୍ସବ ଭିତରେ ଝୁଲନ୍ତ ଦୋଳିରେ ବସି ଝୁଲିବାକୁ ଲାଗିଲେ ।

''ସାର୍, ମୁଁ ଉତ୍ତରା । ଉତ୍ତରା ବର୍ମା । ମୁଁ ସେଦିନ ହୋଟେଲ 'ତାଜ ଇଣ୍ଟରନ୍ୟାସନାଲ'ରେ ଆପଣଙ୍କୁ ଅନୁରୋଧ କରିଥିଲି, ଏଇ ନିଅନ୍ତୁ । ଏଇଥିରେ ରହିଚି ଆମ ଅନୁଷ୍ଠାନର ଆଭିମୁଖ୍ୟ । 'ବିଷୁବରେଖା' ଏଇ ଅଳ୍ପଦିନ ଭିତରେ ଯଥେଷ୍ଟ ସୁନାମ ଅର୍ଜନ କରିଚି । ମୁଁ ତାର ଡାଇରେକ୍ଟର । ତାର ପ୍ରଥମ ବାର୍ଷିକ ଉତ୍ସବ ହେବ ଆସନ୍ତା ପନ୍ଦର ତାରିଖରେ ।''

''ମୋତେ ଟିକିଏ ସଂକ୍ଷେପରେ କୁହନ୍ତୁ ଅନୁଷ୍ଠାନ ବିଷୟରେ ।''

'ବିଷୁବରେଖା' ନାରୀମାନଙ୍କର ଓ ନାରୀମାନଙ୍କ ପାଇଁ । ତାକୁ ନେଇ ଆମେ ଗୋଟାଏ ନୂତନ ସାଂସ୍କୃତିକ ଭାରତ ବର୍ଷର ପରିକଳ୍ପନା କରୁଁ । ଆମର ବିବିଧତା ଭିତରେ ଏକତ୍ୱବୋଧର ପରିକଳ୍ପନା । ଗୋଟାଏ ସ୍ୱପ୍ନର ଭାରତବର୍ଷ । ଆମେ ଚାହୁଁ କବି, ଲେଖକ ଓ ଶିଳ୍ପୀମାନେ, ଯେଉଁମାନେ ସବୁବେଳେ ନୂତନ ସୃଷ୍ଟି ସମ୍ଭାର ନେଇ ବ୍ୟସ୍ତ, ଗୋଟାଏ ବାସ୍ତବବାଦୀ ପୃଥିବୀର ଚିତ୍ର ଆଙ୍କିବାରେ ସାଧନାରତ, ସେମାନେ ଆମକୁ ଦିଗ୍‌ଦର୍ଶନ ଦିଅନ୍ତୁ ।

ଆପଣ ସେଦିନ ଆମର ମୁଖ୍ୟଅତିଥି । ଆପଣଙ୍କୁ ପାଇଲେ.....''

''ବେଶ୍ ବେଶ୍ । ଆପତ୍ତି ନାହିଁ ।''

ଦିଲ୍ଲୀର ତଲକୋତରା ଷ୍ଟାଡ଼ିଅମ ସେଦିନ ଲୋକାରଣ୍ୟ । ସମଗ୍ର ଭାରତବର୍ଷଟା ଯେମିତି ଉଠିଆସିଚି । ରଙ୍ଗ ବେରଙ୍ଗର ପାରମ୍ପରିକ ପୋଷାକରେ ନାରୀମାନେ ଚିତ୍ରିତ ଚଢ଼େଇ ପରି ଖାଲି ଉଡ଼ି ବୁଲୁଥାଆନ୍ତି । ସମଗ୍ର ଷ୍ଟାଡ଼ିଅମକୁ ଦେଖିଲେ ମନେହେବ ଯେମିତି ଗୋଟାଏ ବିଶାଳ ଫୁଲବଗିଚା । ଫୁଲର ମହମହ ବାସନା । ବାସ୍ନାରେ ବଦଳି ଯାଉଚି ବାୟୁମଣ୍ଡଳ ।

ଗୋଟାଏ ସୁସଜ୍ଜିତ ମଞ୍ଚ ଉପରେ ଆସନ ଗ୍ରହଣ କଲେ ଶିଳ୍ପୀ । ଚାରିପାଖରେ ଶହଶହ ଟିଭି କ୍ୟାମେରା ।

ଗୋଟାଏ ଅପୂର୍ବ ଶୋଭା ସମ୍ଭାର ନେଇ ଚଞ୍ଚଳ ପଦକ୍ଷେପରେ ପ୍ରବେଶ କଲେ ଉତ୍ତରା । କାର୍ଯ୍ୟକ୍ରମ ବିଷୟରେ ଶିଳ୍ପୀଙ୍କୁ ସୂଚନା ଦେଇ ସେ ନାତିଦୀର୍ଘ କାଗଜ ଖଣ୍ଡେ ତାଙ୍କ ହାତକୁ ବଢ଼ାଇ ଦେଲେ ଏବଂ ତାଙ୍କୁ ଅନେଇଲେ ।

ଶିଳ୍ପୀ ତାକୁ ପଢ଼ିଲେ ଏବଂ ହସିହସି କହିଲେ ''ମୁଁ ପାରିବି ତ ?''

''ସାମାନ୍ୟ ମାତ୍ର, ସାର ! ଜଣେ ଖାତନାମା ଶିଳ୍ପୀ ଆଗରେ ପୃଥିବୀର ସୁନ୍ଦରତମ ବସ୍ତୁଟି ଧରା ନପଡ଼ି ରହିପାରେନା । ଏଇ ମାତ୍ର ଆରମ୍ଭ ହେବ । ପ୍ରତିଯୋଗୀମାନେ ଜଣକ ପରେ ଜଣେ ଏଇ ମଞ୍ଚ ଉପରେ ହିଁ ପରିବେଷଣ କରିବେ ।'' ସେ ବିଦାୟ ନେଲେ । ଯେମିତି ଆସିଥିଲେ । ସେମିତି ଚାଲିଗଲେ ।

କାର୍ଯ୍ୟକ୍ରମ ଶେଷ ହେଲାପରେ ଉତ୍ତରା ପୁଣି ସେଠାକୁ ଲେଉଟି ଆସିଲେ । ଶିଳ୍ପୀ ନିଜେ ହିଁ ପ୍ରତିଯୋଗୀମାନଙ୍କୁ ପୁରସ୍କୃତ କରିବେ । କିନ୍ତୁ ଇଏ କଅଣ ? ଶିଳ୍ପୀ କୁଆଡ଼େ ଗଲେ ? କାହିଁ କୋଉଠି ତ ନାହାନ୍ତି । ବାହାରେ ଅପେକ୍ଷମାଣ ଜନବେଣୀରେ ଅସମ୍ଭବ ଅସ୍ଥିରତା । ଟେବୁଲ ଉପରେ ସାଧା କାଗଜଟି ତଥାପି ପଡ଼ି ରହିଥିଲା ଶିଳ୍ପୀଙ୍କ ସମଗ୍ର ଅସହାୟତାକୁ ଉପହାସ କରି ।

ଶିଳ୍ପୀଙ୍କ ଆଖିରେ ସବୁଠାରୁ ବେଶି ସୁନ୍ଦରୀଟି ଧରା ପଡ଼ିନାହିଁ ।

(ଗଳ୍ପ ପତ୍ରିକା)

# ମୁଖା

ଆମ ଘରେ ଲଘୁଚାପଜନିତ ଯୋଉ ଝଡ଼ ସୃଷ୍ଟି ହୋଇଥିଲା ତାକୁ କିପରି ଭାବରେ ପ୍ରଶମିତ କରିହେବ ଏବଂ ନୂତନ ବାୟୁମଣ୍ଡଳଟିଏ ତିଆରି କରିହେବ ସେକଥା ମୁଁ ଚିନ୍ତା କରିପାରୁ ନ ଥିଲି । ସମୁଦ୍ରର ଲଘୁଚାପ ଓ ଘରର ଲଘୁଚାପ ଭିତରେ କିଛି ଫରକ ନାହିଁ । ଦୁଇଟାଯାକ ବାୟୁମଣ୍ଡଳରେ ସମାନ ଚାପ ସୃଷ୍ଟି କରେ । ଏବଂ ସେଥିରୁ ରକ୍ଷା ପାଇବାକୁ ହେଲେ କେବଳ ଈଶ୍ୱର ସାହାଯ୍ୟ କରିପାରନ୍ତି, ଅନ୍ୟ କେହି ନୁହେଁ ।

ସେଲିନା ଆଦିବାସୀ ଝିଅଟିଏ । ଗୋଟିଏ ପିଲାର ମାଆ । ପିଲାଟି ମଧ୍ୟ ଝିଅଟିଏ ଏବଂ ତାର ବୟସ ପନ୍ଦର ଟପିଥିବ ନିଶ୍ଚୟ । ତା'ଠୁ କମ୍ ବୋଲି ମନେ ହେଉନି । ସେଲିନା ଆମ ଘରେ କାମ କରୁଚି ଏଇ ଛଅମାସ ହେଲା । ସେଲିନାର ବୟସ ତା' ଝିଅର ବୟସରୁ କଳି ହେଉଥିବ । ଘରର ଯାବତୀୟ କାମ ପାଇଁ ବେଶ୍ ଏକ୍ସପର୍ଟ ବୋଲି କହିହେବ । ଘରକୁ ସବୁଠି ସୁନ୍ଦର କରି ସଫା କରିବା, ଜିନିଷକୁ ସୁନ୍ଦର କରି ସଜେଇ ରଖିବାରେ ଗୋଟାଏ ଆର୍ଟିଷ୍ଟିକ୍ ଗୁଣ ତା'ଠାରେ ଥିଲା । ଅତି କମ୍ ସମୟ ଭିତରେ ସେ କାମଗୁଡ଼ିକ ସୁନ୍ଦର ଓ ସନ୍ତୋଷଜନକ ଭାବେ କରିପାରେ ।

ସେଲିନା ଠିକାରେ କାମ କରେ । ତାର ଭଲ କାମ ଦେଖି ତାକୁ କେତେଜଣ ବେଶି ପଇସା ଦେଇ ସ୍ଥାୟୀ ଭାବେ ରଖିବାକୁ ଚାହିଁଥିଲେ ମଧ୍ୟ ସେ ସେଥିରେ ରାଜି ହେଇ ନଥିଲା । ସେ ହୁଏତ ଭାବୁଥିଲା ଗୋଟାଏ ଜାଗାରେ ସ୍ଥାୟୀ ଭାବରେ କାମ କଲେ ଅସୁବିଧା ହେବ । କୌଣସି କାରଣରୁ କାମରୁ ବିଦା କରିଦେଲେ ହଠାତ୍ ଆଉ ଗୋଟାଏ ନ ମିଳିପାରେ । ନ ମିଳିବାର ପ୍ରଥମ କାରଣ ତାର ଅପାରଗପଣିଆ ନୁହେଁ ବରଂ କିଛି ଗୁପ୍ତ କଥା ଯାହା ସହଜରେ ଜଣାପଡ଼ି ନ ଥାଏ । କଅଣ ପାଇଁ ସେଲିନା କାମ ଛାଡ଼ିଲା, କି ମାଲିକାଣୀ ତାକୁ ବିଦା କଲେ ଏହା ଏପରି ରହସ୍ୟାବୃତ କଥା ଯେ ତାକୁ ନେଇ ଘରଣୀମାନଙ୍କ ଭିତରେ ବହୁ ସମ୍ଭାବନା ମନକୁ ମନ ବସା ବାନ୍ଧିଥାଏ । ସେଲିନା ଭାବେ ଏଥିରେ ରିସ୍କ ଅଛି । ଏମିତିକା

ଗୋଟାଏ ନିଆଁ ନଥାଇ ଧୂଆଁର ସନ୍ଦେହ ଭିତରେ କାମକରି ହେବନାହିଁ । ସେ କାମରେ ମଧ୍ୟ ଶାନ୍ତି ଆସେ ନାହିଁ । ଖାଲି ଯାହା ଆକାର ପ୍ରକାର ନଥିବା ମାନସିକ ଚିନ୍ତାର ବୋଝଟିଏ ଧରି ସେ ପ୍ରତିଦିନ ଘରକୁ ଫେରୁଥିବ ଏବଂ ଘରେ ବି ଆକରଣରେ ରାତିରେ ସନ୍ତୁଳି ହେଉଥିବ ।

ଏ ସନ୍ତୁଳନର କିଛି ମାନେ ଥାଏ ?

ସେଲିନାର ଏକମାତ୍ର ଅସଜ କଥାଟା ହେଲା, ଯାହାକୁ ଅନ୍ୟ ନାରୀମାନେ ପ୍ରଥମେ ବିଚାରକୁ ନେଇ ଖୋଳତାଡ଼ ଆରମ୍ଭ କରି ଦିଅନ୍ତି ଏବଂ ସବୁଯାକ ସନ୍ଦେହାତ୍ମକ ଅବବୋଧରୁ ମୁକ୍ତ ନହେଲା ଯାଏ କୋର୍ଟରେ ସାକ୍ଷୀକୁ ଜେରା କରିଥାଆନ୍ତି, ତାହା ହେଲା 'ସେ ସ୍ୱାମୀ ପରିତ୍ୟକ୍ତା କାହିଁକି ହେଲା ?'

ସେମାନଙ୍କର ଏ ସନ୍ଦେହକୁ ସମର୍ଥନ ଯୋଗାଏ ତାର ବୟସ । କଞ୍ଚା ଛନଛନ ଦୁବଘାସ ପରି ବଢ଼ି ଆସୁଥିବା ବୟସର ନାରୀଟିର ଏକମାତ୍ର ଅପରାଧ ହେଲା ସ୍ୱାମୀ ପରିତ୍ୟକ୍ତା ହେବା ।

ସ୍ୱାମୀ ତ ସ୍ୱାମୀଟିଏ । ସ୍ୱାମୀ ଶବ୍ଦଟିରେ ପୃଥିବୀର ସବୁ ଅପରାଧ ବିଲୀନ ହେଇଯାଇଥାଏ । ଡୋଡ଼ିର ଦେହ ପରି । ଈଶ୍ୱରଙ୍କ ସୃଷ୍ଟି । ସେଥିରେ ପଙ୍କ ଲାଗିଲେ ମଧ୍ୟ ଦେହ ତ ସବୁବେଳେ ଚିକ୍କଣ । ତାକୁ ନିଷ୍କଳଙ୍କ ଧରାଯାଏ । ତେଣୁ ଆକାଶର ସବୁ ବର୍ଷାପାଣି ପୃଥିବୀ ଉପରେ ହିଁ ପଡ଼େ । ଏହାହିଁ ନିୟମ । ଅପରାଧ ଓ ଅପବାଦ ସବୁ ନାରୀ ପାଖରେ ହିଁ ଅଜାଡ଼ି ହେଇଯାଏ । କବି ଓ ଲେଖକମାନେ ବୋଧେ ଏଇଥିପାଇଁ ନାରୀକୁ ପୃଥିବୀ ସହିତ ତୁଳନା କରି ଥାଆନ୍ତି । ସର୍ବଂସହା ନାରୀ ହିଁ ପ୍ରଥମେ ଅପରାଧ କରିଥାଏ । ସ୍ୱାମୀ ନୁହେଁ । ଏ ମାନସିକତାର ପରିବର୍ତ୍ତନ କେବେବି ନୁହେଁ ।

ଗୌରୀ ଏଇ କଥାଟା ଉପରେ ବେଶୀ ଜୋର୍ ଦିଅନ୍ତି । ସେଲିନା ସହିତ ଯୋଉଦିନ ତାଙ୍କର ପ୍ରଥମ ସାକ୍ଷାତ ହେଲା, ମାନେ ତାଙ୍କର ସାକ୍ଷାତକାର ଅନୁଷ୍ଠିତ ହେଇଥିଲା, ସାକ୍ଷାତକାର ପରେ ସେ ସଙ୍ଗେସଙ୍ଗେ ଫଳାଫଳ ଘୋଷଣା କରି ନ ଥିଲେ । କହିଥିଲେ, 'କାଲି ସନ୍ଧ୍ୟା ବେଳକୁ ମାନେ ପାଞ୍ଚଟା ବେଳକୁ ଆସିବୁ । ବାବୁ ଅଫିସରୁ ଆସି ଯାଇଥିବେ । ସେ ମଧ୍ୟ ତୋ ସହିତ କଥାବାର୍ତ୍ତା କଥା ଜାଣିଥିବା ଉଚିତ ।'

ମୁଁ ଜାଣେଁ, ଏସବୁ ବିଷୟରେ ମୁଁ ନିମିତ୍ତମାତ୍ର । ମୋ କାନ୍ଧରେ ଢିରା ଦେଇ ସେ କଥାଟାକୁ ଯେମିତି ଝୁଲେଇ ରଖିଲେ, ଏଥିରୁ ତାଙ୍କର କୂଟ ରାଜନୈତିକ ବିଚାର ବୁଦ୍ଧି ସ୍ପଷ୍ଟ ହେଇ ଯାଉଥିଲା ।

ମୁଁ ଯେତେବେଳେ ସେଦିନ ରାତିରେ କହିଲି, ''ତାକୁ ଫାଇନାଲ କଥାଟିଏ କହି ଦେଲନି ? ପନ୍ଦର ତାରିଖରୁ ସେ କାମ ଆରମ୍ଭ କରି ଥାଆନ୍ତା ।''

ସେ ଟିକିଏ ଚୁପ୍ ହୋଇଗଲେ, ତା'ପରେ କହିଲେ- ''କଥାଟା ଯେତେ ସହଜ

ବୋଲି ମନେ କରୁଛ, ସେତେ ସହଜ ନୁହେଁ । କଥାଟାକୁ ଭଲ ଭାବରେ ବୁଝିବା ଦରକାର ।''

''କୋଉ ବିଷୟରେ ?''

''ସ୍ୱାମୀ କାହିଁକି ତାକୁ ଛାଡ଼ିଲା ?''

''ସେଥିରେ ଆମର କଅଣ ଅଛି ?''

''ତୁମେ ସେଥିରୁ କଅଣ ପାଇବ ?'' ଗୌରୀ ମୋତେ ବିରକ୍ତ ହେଇ କହିଲେ ।

ମୁଁ ସେଦିନ ତାଙ୍କର ଉଦ୍ଦେଶ୍ୟ ବୁଝିଥିଲି । ସେଲିନା ଆମ ଘରେ କାମ କରିବା ଦିନୁ ସେ ଯେ ତାକୁ ଗୋଡ଼େଗୋଡ଼େ ଜଗନ୍ତି ଏକଥା ମଧ୍ୟ ବୁଝି ପାରିଥିଲି । ନାରୀମାନେ ସବୁବେଳେ ଚାହାନ୍ତି ପୁରୁଷମାନଙ୍କ ଛାଇ ପଡୁଥିବା ଅଞ୍ଚଳ ଭିତରେ ମଧ୍ୟ ଅନ୍ୟ ନାରୀର ଛାଇ ନ ପଡୁ । ସେ ଅଞ୍ଚଳ ଭିତରେ ଏକାଧିପତ୍ୟ ଜାହିର କରିବା ଅଧିକାର କେବଳ ସେମାନଙ୍କର ଥାଉ । ଗୋଟାଏ ମାଛିକୁ ମଧ୍ୟ ଅନ୍ୟ ନାରୀ ଦେହରୁ ଉଡ଼ିଆସି ସେମାନେ ସ୍ୱାମୀ ଦେହରେ ବସିବାକୁ ଦିଅନ୍ତି ନାହିଁ ।

ଗୌରୀକୁ ମୁଁ ବହୁବାର ଲକ୍ଷ୍ୟ କରିଛି । ସେଲିନା ମୋର ବେଡ୍‌ରୁମ୍ କି ଷ୍ଟଡ଼ିରୁମ୍ ଭିତରେ ପଶି କିମ୍ବା ଏପରିକି ମୁଁ ବାରଣ୍ଡାରେ ବସି ପେପର ପଢୁଥିବାବେଳେ ଯଦି ସେଲିନାର ସେଠାକୁ ଆସିବାକୁ ପଡ଼େ ତେବେ ଗୌରୀ କଥା ବାହାନାରେ ସେଠାକୁ ଦୌଡ଼ିଆସି କିଛି ନା କିଛି ପଚାରନ୍ତି ଏବଂ ତା' ଯିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତି ।

ତେବେ ସେଲିନା କାମ କରୁଥିବାବେଳେ ଯେକେହି ଲୋକ ତାକୁ ଗୋଟାଏ ସାଇଡ୍‌ରୁ ଦେଖିବାକୁ ଯେ ଥରେ ଚେଷ୍ଟା କରିବ, ଏଥିରେ ସନ୍ଦେହ ନାହିଁ । ଅତି ସଂକ୍ଷେପରେ କହିବାକୁ ଗଲେ ସେଲିନା ସୁନ୍ଦରୀ ଓ ସ୍ୱାସ୍ଥ୍ୟବତୀ । ସକାଳୁ ସକାଳୁ ସେ ଯେତେବେଳେ ଆସି ଆମ ଘରେ କାମ ଆରମ୍ଭ କରେ, ଏମିତି ଥରେ ଅଧେ ହେଇଚି, ନ ଜାଣିଥିବା ଲୋକ ଆମ ଘରକୁ ଆସି ତାକୁ ଦେଖି, ''ମ୍ୟାଡାମ୍ ନମସ୍କାର, ସାର୍ ଅଛନ୍ତି ?'' ବୋଲି କହି ଦେଇଛନ୍ତି । ଗୌରୀ ଏଥିରେ କ୍ଷୁବ୍ଧ ହେଇଛନ୍ତି ଏବଂ ସେକଥା ମୋ କାନରେ ପଡ଼ିଚି କି ନାହିଁ ବୋଲି ପଚାରନ୍ତି ।

ଏ ପ୍ରଶ୍ନର ଉତ୍ତର ଥାଏ ମୋ ପାଖରେ ଅତି ସ୍ୱାଭାବିକ ।

ସେଲିନା ତା କାମରେ କେବେବି ହେଳା କରିନାହିଁ । ଝାଡୁ ଦେବା, ପୋଛିବା, ବାସନକୁସନ ଧୋଇବା, ଡାଇନିଂ ଟେବୁଲ ସଫା କରିବା, ସୋଫା ଓ ବିଛଣା ଝାଡ଼ିଝୁଡ଼ି ସଫା କରିବା ଏବଂ ଲୁଗାପଟା ଚାଦର ଇତ୍ୟାଦିକୁ ମେସିନ କିମ୍ବା ଏମିତି ଧୋଇବା, ସବୁ ତା'ର କରିବା କାମର ସର୍ତ୍ତ ଅନ୍ତର୍ଭୁକ୍ତ । ଗୋଟାଏ ଉଚ୍ଚମଧ୍ୟବିତ୍ତ ପରିବାର ଆମର । ଆମେ ଦୁହେଁ ଓ ଆମର ଦୁଇ । ସରକାରୀ ସର୍ତ୍ତକୁ ମାନିବାକୁ ଯାଇ ଆମେ ଗ୍ରୀନ୍‌କାର୍ଡ଼ ହାସଲ କରିଛୁଁ । ଆମର ଆବଶ୍ୟକତା କ'ଣ, ଆମର ଷ୍ଟାଟସ୍ ଅନୁଯାୟୀ । ଏ ମାନସିକତାରେ ପ୍ରତିଯୋଗିତା ଥାଏ ଟିକିଏ ବେଶି । ଆମେ ସବୁବେଳେ ସମାନ ଓ ସମାନ୍ତରାଳ ସରଳରେଖା

ଉପରେ ନିଜକୁ ରଖିବାକୁ ମନ କରୁଁ । ସେ ସୂତା ଯେତେ ଲମ୍ବୁଥାଏ ଆମ ଭିତରେ ଆଗ୍ରହ ଓ ଉତ୍ସୁକତା ବଢ଼ିବଢ଼ି ଚାଲିଥାଏ । ବେଳେବେଳେ ଷ୍ଟାଟସ୍‌କୁ ପଛରେ ପକାଇ ଆଗକୁ ବଢ଼ିଯାଏ । ପିଲାମାନେ ସବୁବେଳେ ଘରୁ ବାହାରକୁ ଯାଉଥିବାରୁ ଅନ୍ୟ ପିଲାମାନଙ୍କ ସହ ମିଶୁଥିବାରୁ, ସେମାନଙ୍କ ବେଶପୋଷାକ କଅଣ ହେବ, ତାଙ୍କ ଟିଫିନ କଅଣ ହେବ, ସେ ବିଷୟରେ ଗୌରୀ ଖୁବ୍ ସଚେତନ । ସର୍ତ୍ତ ଭିତରେ ଆସୁ ନଥିଲେ ମଧ୍ୟ ସେ ଏସବୁ କାମରେ ସେଲିନାର ସାହାଯ୍ୟ ପାଇବାକୁ ଆଶା କରନ୍ତି । ସେଲିନାକୁ ତେଣୁ ଆସିବାକୁ ପଡ଼େ ଆମ ଘରକୁ ସକାଳ ଛଅଟାରେ ।

ସେଲିନା କାହିଁକି ହଠାତ୍ ଅନୁପସ୍ଥିତ ରହିଲା, ତା'ର କାରଣ ମୁଁ ଜାଣି ନ ଥିଲି । କିନ୍ତୁ ସେଲିନା ନ ଆସିଲେ ଯେ ଘରର ଘଣ୍ଟାକଣ୍ଟା ମଧ୍ୟ ଅଟକି ଯାଏ ଏକଥା ଆମେ ସମସ୍ତେ ଜାଣୁଁ । ଗୌରୀ ମୋତେ ପଚାରିଲେ- ''ତୁମେ ଟିକେ ଖବର ନେଉନ ସେ କାହିଁକି ଆସୁନି ?''

''ମୁଁ ତ ଜାଣିନି ତାର ଠିକଣା ।''

''କାହାକୁ ଟିକେ ପଚାରୁନ ?''

''କାହାକୁ ପଚାରିବି କୁହ ?'' କହିଲି, ସେଥିରେ ଆଗ୍ରହ ପ୍ରକାଶ ନ କରି । ମୋର ମନେ ପଡ଼ିଲା ଛଅମାସ ତଳର କଥା । ମର୍ଣ୍ଣିଂୱାକ୍‌ରୁ ଫେରୁଥିଲି ମୁଁ ଓ ରିଟାୟାର୍ଡ଼୍ ପୁଲିସ ଅଫିସ୍‌ର ଅରୁଣ ପରିଡ଼ା । ସେଲିନା ସେତିକିବେଳେ ଆସୁଥିଲା । ସେତେବେଳେ ସେ ଆମ ଘରେ କାମକରି ନ ଥିଲା । ସେଲିନା ଆମକୁ ଅତିକ୍ରମ କରିଗଲା ପରେ ଅରୁଣବାବୁ ମୋତେ ଅନେଇଲେ ଏବଂ ପଚାରିଲେ, ''ଆପଣ ଜାଣିଛନ୍ତି ଏଇଟିକୁ ?'' ସେ ତା' ଆଡ଼କୁ ଆଖି ଠାରିଲେ ।

''ମୁଁ ଜାଣିନି ।'' ମୁଁ କହିଲି ।

''ହଜାରେ ଘରେ କାମ କରେ । କି କାମ କରୁଥିବ କହିଲେ ?'' ସେ ହୋହୋ ହେଇ ହସିଲେ ।

''ଆପଣ ତେବେ ଜାଣିଛନ୍ତି ଯାକୁ ?'' ମୁଁ ପଚାରିଲି ।

''ଜାଣେ ମାନେ ? ମୁଁ ଯେତେବେଳେ ଚାକିରିରେ ଥିଲି ସେତେବେଳେ ମହିଳା ଥାନାରେ ଯା'ର କେସ୍ ପଡ଼ିଥିଲା । ତାର ସମାଧାନ କରିପାରି ନଥିଲି । ଯାର ଗୁଣ କମ୍ କି ? ଆଛା ଆପଣ କହିଲେ ସ୍ତ୍ରୀ ହେଇ ଯଦି ସ୍ୱାମୀର କଥା ନ ମାନେ ତେବେ କେମିତି ହେବ ? ତୁଚ୍ଛା କଥାଟାରେ ସ୍ୱାମୀକୁ ବି ସନ୍ଦେହ କରିବା ଉଚିତ ନୁହେଁ ।''

''ତୁଚ୍ଛା କଥାଟାକୁ ସମାଧାନ କରି ପାରିଲେନି ମାନେ ?''

''ମାନେ ଆଉ କଅଣ । ଆପଣ ତ ଜାଣନ୍ତି ପ୍ରେମ ବ୍ୟାପାରରେ ଅବଶ୍ୟ ସାକ୍ଷୀ ପ୍ରମାଣ ନ ଥାଏ । କିନ୍ତୁ ଟିକେ ବିଶ୍ୱାସଯୋଗ୍ୟ କଥା ଥିବା ଦରକାର । ହାୱାରେ ଉଡୁଥିବା

କଥାରେ ଆଇନ କଅଣ କରିବ ?''ସେ କହିଲେ ।

''କିନ୍ତୁ ସତରେ ଯଦି ସେମିତି କିଛି ସନ୍ଦେହର କାରଣ ଥାଏ ତେବେ..... ?''

''ତେବେ ଆଉ କଅଣ ? ଦୁହେଁ ଏକା ସାଥିରେ କାମ କରୁଛନ୍ତି ଯେତେବେଳେ, ସେତେବେଳେ ସେମିତି ଗୋଟେ ସମ୍ପର୍କର ଅବଶ୍ୟ ସମ୍ଭାବନା ଥାଏ । ଏବେ ଦେଖନ୍ତୁ, ଏ ଟୋକୀ କେତେ ଜଣକ ଘରେ କାମ କରୁଚି । କଅଣ କରୁଚି କିଏ ଜାଣେ ?''

ଅରୁଣ ବାବୁଙ୍କ ସାଥିରେ ମୁଁ ସେଦିନ ଆଉ ବେଶିକିଛି କଥା ହେବାକୁ ଇଚ୍ଛା କରି ନ ଥିଲି । କିନ୍ତୁ ମୋ ମନରେ ସ୍ୱତଃ ପ୍ରଶ୍ନଟିଏ ଉଠିଥିଲା । ସେଲିନା ପରି ନାରୀଟିକୁ ଯିଏ ସ୍ତ୍ରୀ ରୂପେ ପାଇଥିବ ସେ ତ ନିଶ୍ଚୟ ଭାଗ୍ୟବାନ । ସେଲିନାର ସମକକ୍ଷ ଆଉ ଝିଅଟିଏ ଆଦିବାସୀ ପରିବାରରେ ଥିବ କି ? କିନ୍ତୁ କଥାଟା ସେଠି ନଥାଏ । ପ୍ରେମ ଏକ ନିବୁଜ ଅନ୍ଧାର ରାତିର ସ୍ୱଚ୍ଛ ଜହ୍ନରାତି । ଯିଏ ଥରେ ସେ ଅଞ୍ଚଳରେ ପଶିଯାଏ ଜହ୍ନର ଆସ୍ତରଣ ହିଁ ତାକୁ ଆଚ୍ଛନ୍ନ କରିଦିଏ । ସେ ମୋହମୁଗ୍ଧ ଅବସ୍ଥାରୁ ବା ମୁକ୍ତି କାହିଁ ?

ସେଦିନର ଏକଥା ପରେ ମୁଁ ଆଉ କେବେ ସେଲିନା କଥା ବୁଝିବାକୁ ଚେଷ୍ଟା କରି ନ ଥିଲି । କାରଣ ଅରୁଣବାବୁ ସେଲିନାକୁ ଯୋଉ ଆଖିରେ ଦେଖିଥିଲେ ସେଥିରେ ତାଙ୍କୁ ଆଉଥରେ କିଛି ପଚାରିବାକୁ ମୋର ସାହସ ନଥିଲା । ଆଜି ଏତେ ଦିନ ପରେ ସେଲିନା ଯେ ମୋ ଘରେ କାମ କରୁଚି ଏ କଥା ମଧ୍ୟ ଅରୁଣ ବାବୁଙ୍କୁ କହିବାକୁ ସାହସ କରି ନ ଥିଲି । ପ୍ରକୃତ କଥାଟା କହିବାକୁ ଗଲେ ସେଲିନା ଆମ ଘରେ କାମ କରିବା ଦିନଠୁ ମୁଁ ଅରୁଣ ବାବୁଙ୍କୁ ମର୍ଣ୍ଣିଂୱାକ୍ ପାଇଁ ଟିକିଏ କରଛଡ଼ା ଦେବାକୁ ଲାଗିଲି । ମୁଁ ଜାଣିଶୁଣି ଡେରିରେ ଉଠିଲି କିମ୍ବା ଗତିପଥ ବଦଳାଇ ଦେଲି । ସେଲିନା ବିରୁଦ୍ଧରେ ଯାହା ଶୁଣିଲେ ବି ମୋତେ କେମିତି ଟିକିଏ ଅଡୁଆ ଲାଗୁଥିଲା ।

ତେଣୁ ସେଦିନ ଗୌରୀ ମୋତେ ଯେତେବେଳେ କହିଲେ, "ସେଲିନା ବିଷୟରେ ଖବର ନିଅ," ମୁଁ ତାଙ୍କୁ କହିଲି, "କୋଉଠି ଖୋଜିବି କୁହ ?"

ସେ ବିରକ୍ତ ହେଲେ । କହିଲେ, "ତାକୁ ଏ ଖଣ୍ଡମଣ୍ଡଳରେ ସମସ୍ତେ ଜାଣନ୍ତି । ତୁମେ ଯଦି ଟିକିଏ ଚେଷ୍ଟା କରିବ, ପାଇଯିବ ।" ତା'ପରେ ଟିକିଏ ରହି କହିଲେ, "ମୁଁ ଜାଣେଁ ପରା, ଏମାନଙ୍କୁ ମୋତେ ଘରେ ପୂରେଇବା କଥା ନୁହେଁ ।"

"ତୁମେ କଥାଟାକୁ ଏମିତି କାହିଁକି ଭାବୁଚ ? ତା' ଦେହ ଖରାପ ହେଇଥାଇପାରେ । ଜର କି ସେମିତି କିଛି । ଏବେ ଝୁମ୍ପୁଡ଼ି ଓ ବସ୍ତିମାନଙ୍କରେ ମେଲେରିଆ ଖୁବ୍ ହେଉଚି ବୋଲି ସେଦିନ ଖବରକାଗଜରେ ବାହାରିଥିଲା ।" ମୁଁ କହିଲି ।

"ଖବର ତ ଦେବାର କଥା ।"

ମୁଁ କହିଲି, "ଦେହ ଖରାପ ଥିଲେ ତା' ଝିଅକୁ ପଠେଇ କାମ ଚଳେଇ ନେଇ ପାରନ୍ତା । ଅନ୍ତତଃ ଖାଲି ବାସନଧୁଆ ଓ ଝାଡୁପୋଛା ହେଇଯାଆନ୍ତା । ତୁମେ କଅଣ ସେତକ

ଏବେ କରିପାରିବ ?"

"ନା ନା, ସେକଥା ତୁଣ୍ଡରେ ଧରନା ।" ସେ ମୋ ପାଖକୁ ଲାଗିଆସିଲେ ଓ କହିଲେ, "ଆମ ପୁଅ ବି ବଡ଼ ହେଲାଣି । ଏ ବର୍ଷ ମେଟ୍ରିକ୍ ପରୀକ୍ଷା ଦେବ ।"

"ସେଥିରେ କଅଣ ଅଛି ?"

"ଆଜିକାଲି ଦଶ କି ବାର ଡେଇଁଲେ ପିଲାଙ୍କ ମୁଣ୍ଡ ବିଗିଡ଼ିଯାଏ । କ୍ଲାସ୍‌ରେ ଏବେ ଯାହା ଶିଖଉଚନ୍ତି, ତାକୁ ପୁଣି ଟିଭିରେ ଦେଖଉଚନ୍ତି । ତୁମେ କେତେ ଜଗିବ ? ମୁଁ ତାକୁ ମନା କରିଚି । କହିଚି, ତୁ ଆମ ଘରେ କାମ କରୁଚୁ, ତୋ ଝିଅ ନୁହେଁ । ସେ ତ ଆମ ଝିଅ ପରି । ତାକୁ ତୁ ଆମ ଘରକୁ ପଠେଇବୁନି ।"

ମୁଁ ହାଁ କରି ତାଙ୍କ ମୁହଁକୁ ଅନେଇଲି । ସତରେ ଗୌରୀକୁ ନେଇ ଗର୍ବ କରିବାର କଥା । ଏତେ ମହାନୁଭବତା ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କଅଣ ତାଙ୍କୁ କହିବି ବୁଝିପାରୁ ନଥିଲି । ଜଣେ ନାରୀ ତାର ସ୍ୱାମୀକୁ ଯେମିତି ଗୋଡ଼େ ଗୋଡ଼େ ଜଗିଚି ଅନ୍ୟ ଦିଗରେ ତା'ର ଯୌବନକୁ ଛୁଉଁଥିବା ପୁଅକୁ ମଧ୍ୟ ସେମିତି ଜଗୁଛି । ଆଉ ଝିଅ ? ଏବେ ୧୩ ଛୁଇଁଲାଣି । ତାକୁ ବି କଅଣ ସେ ଜଗୁଥିବ ? କେମିତି ? ସେମାନେ ସ୍କୁଲକୁ ଗଲେ ?

କୋଉ ହଜାର ହଜାର ବର୍ଷ ତଳେ ଥିବା ପୁରାଣର ବାଣାସୁର କଥା ମୋର ମନେ ପଡ଼ିଲା । ଅପୂର୍ବ ସୁନ୍ଦରୀ ବାଣାର କନ୍ୟା ଉଷା । ଝିଅର ରୂପ ଦେଖି ବାଣା ପ୍ରମାଦ ଗଣିଲେ । ପର୍ବତର ଶିଖର ଦେଶରେ ଅମୁହାଁ ଦେଉଳଟିଏ ତିଆରି କରି ଚିତ୍ରଲେଖା ସାଥିରେ ରଖିଦେଲେ । ନିଶ୍ଚିନ୍ତ ହେଲେ ବୀର ବାଣାସୁର । ବିବାହ ସ୍ଥିର ହେଲେ ଝିଅ ସେଠୁ ଆସିବ । ତା' ପୂର୍ବରୁ ନୁହେଁ । କିନ୍ତୁ ହେଲା କଅଣ ? ପ୍ରେମର ଗନ୍ଧ ଦୁଇ ହଜାର ଯୋଜନରେ ଥିବା ଅନିରୁଦ୍ଧଙ୍କ ନାକରେ ବାଜିଲା । ଉଷା ଉଭାନ ହୋଇଗଲେ ଲକ୍ଷେ ସୈନ୍ୟସାମନ୍ତ ଜଗୁଥିବା ଅମୁହାଁ ଦେଉଳରୁ । 'ଉଷାକୋଠି' ଏବେବି ଆସାମରେ କିମ୍ବଦନ୍ତୀ ହୋଇ ରହିଛି ।

ଆଉ ମୋର ଏ ଝିଅଟି ? ଫୁଟି ଆସୁଥିବା ଫୁଲଟିଏ । ତା'ପାଇଁ ପାତ୍ରଟିଏ ଗୌରୀ ଖୋଜିବେ ନା ସେ ନିଜେ ଖୋଜିବ ? ସେ ସମୟର ଚିତ୍ରଲେଖା ଭୂମିକାରେ ଏବେ ଅଭିନୟ କରୁଚି ମୋବାଇଲ୍ । ହବ ? ଅଟକେଇ ହବ ସମୟକୁ ନା ମୋବାଇଲର ଅଦୃଶ୍ୟ ଶବ୍ଦ ତରଙ୍ଗକୁ ? ସମୟ ଆଜି ପୃଥିବୀର ସବୁ ଭୌଗଳିକ ଓ ସାମାଜିକ ସୀମାରେଖାକୁ ଅବଜ୍ଞା କରିବାକୁ ଶପଥ ନେଇଥିବାବେଳେ ଆମେ ତାକୁ ବାନ୍ଧି ରଖିପାରିବା ଆମର ପ୍ରାଗୈତିହାସିକ ଚିନ୍ତା ଓ ଚେତନା ନେଇ ? କିଏ ରୋକି ପାରିବ ସେ ଅପ୍ରତିହତ ଧାରାକୁ ? 'ପ୍ରି ମେରିଟାଲ ସେକ୍ସ' ନୂଆ ରାକ୍ଷସ ପରି ମାଡ଼ି ଆସୁଥିବାବେଳେ ତାକୁ କିଏ ରୋକିବ ? ଏ ଅବସ୍ଥାରେ ମୋର ଝିଅ ଓ ମୋର ପୁଅ ?

ପ୍ରେମର ପ୍ରଥମ ପତ୍ରଟିଏ ମନ ଭିତରେ କଅଁଳିଲା ମାତ୍ରେ ସେମାନଙ୍କ ପିଠିରେ

ପରଟିଏ ନ ଲାଗିଥିଲେ ମଧ୍ୟ ସେମାନେ ଉଡ଼ି ବୁଲନ୍ତି । ସେତେବେଳେ ମୁଁ ମୁଁ ନୁହେଁ କି ଗୌରୀ ମଧ୍ୟ ଗୌରୀ ନୁହଁନ୍ତି । ଟସର ବାହାଧେ ଯାଇଥିବା ଖୋସାଟିଏ ମାତ୍ର ।

ମୁଁ ଗୌରୀଙ୍କ ମୁହଁକୁ ଚାହିଁ ହସିଦେଲି ।

''ତୁମେ ହସୁଛ ?''

'ମୁଁ ହସୁଛି ତୁମ ଦକ୍ଷତା ଦେଖି । ତୁମେ ଯେ ଏତେ କାମ କରିପାରୁଛ ଏସବୁ ମୋର ଚିନ୍ତାର ବାହାରେ ଥିଲା ।''

''ମୁଁ ଜଗୁ ନଥିଲେ ତୁମ ପୁଅ ଯେମିତି ସେ ନିଆଁକୁ ଦେଖି ତରଳି ଯାଏ, ସେଥିରେ ଏତେବେଳକୁ କଅଣ ନାଇଁ କଅଣ ହେଇ ସାରନ୍ତାଣି । ମାଆ ଯେମିତି ଝିଅ ବି ସେମିତି ହବ ନାହିଁ ? ବିଛୁଆତି ଗଛରୁ ତୁଳସୀ ପତ୍ର କଅଁଳିବ ?''

''ପୁଅର ଦୋଷ ନ ଥିବ ବୋଲି ତୁମେ କହୁଛ ?''

''ମୋ ପୁଅକୁ ମୁଁ ଚିହ୍ନିନି ? ଆଉଟା ସୁନା । ସେ ଝିଅ କିନ୍ତୁ ଖଣ୍ଡେ । ମୁଁ ତାର ହାବଭାବ ଦେଖି ଜାଣିଯାଇଛି ।''

ମୁଁ ଆଉ ଅଧିକ କିଛି ସେଲିନା କି ତା ଝିଅ ଲିଜା ବିଷୟରେ ଶୁଣିବାକୁ ଚାହୁଁ ନଥିଲି । ନାରୀ ପ୍ରତି ନାରୀର ମାନସିକତା କଥା ସମସ୍ତେ ଜାଣନ୍ତି । ସେ ନାରୀ ଯଦି ଉପର ଓ ତଳ ପାହାଚରେ ହୋଇଥାଏ, ଉପର ଓ ତଳ ବର୍ଗର ହେଇଥାଏ, ତେବେ ତାର ଭାଷା ମଧ୍ୟ ଆମକୁ ଜଣାଅଛି । ମୁଁ ତେଣୁ ତାଙ୍କ କଥାରେ ମୋଡ଼ ବଦଳେଇବା ପାଇଁ କହିଲି, ''ତୁମେ ମୋତେ ଏବେ କଅଣ କହିବାକୁ କହୁଛ ?''

''ଦେଖ, ଏଯାଏ ସବୁ କାମ ପଡ଼ିଛି । ମୁଁ ମୋଟେ କରିପାରିବିନି । ତମେ ଯଦି ତାକୁ ନ ପାଇବ ତେବେ ମୁଁ ବାଧ୍ୟ ହୋଇ ଆଉ କାହାକୁ ଠିକ୍ କରିବି । କିନ୍ତୁ ସେତକ ମଧ୍ୟ ହଠାତ ସମ୍ଭବ ନୁହେଁ । ତା'ଛଡ଼ା ସେଲିନା ଉପରେ ଆମର ଆଡ୍‌ଭାନ୍ସ ଟଙ୍କା ପାଞ୍ଚଶହ ନାହିଁ କି ? ସେ ନ ଆସିଲେ ସେତକ ବି ବୁଡ଼ିଯିବ ।''

ସେ ହଳଖିଆ ପ୍ଲେଟଟି ଆଣି ଟେବୁଲ ଉପରେ ଥୋଇଦେଲେ ଏବଂ ମୋ ପାଖକୁ ଲାଗି ବସିପଡ଼ିଲେ ।

''ତୁମେ ପୁଣି ଥରେ ମୋତେ ଜଳଖିଆରେ ଅଣ୍ଡା ଦେଲ ?'' ମୁଁ କହିଲି ।

''ଓ ହୋଏ ଭେରି ସରି । ମୋର ସେକଥା ମନେ ନଥିଲା । କିନ୍ତୁ ସେଥିରୁ ହଳଦିଆ ଅଂଶଟା ବାଦ ଦେବାକୁ ମୋର ସମୟ କାହିଁ କହିଲ ? ତୁମେ ଚଳେଇ ନିଅ ।''

''ଚଳେଇ ନେବାରେ ମୋର ଆପତ୍ତି ନାହିଁ । କିନ୍ତୁ ମୁଁ ନିଜେ ହିଁ ମୋର କ୍ଷତି କରିବି ନାହିଁ ?'' ମୁଁ ପ୍ଲେଟଟିକୁ ନିକଟକୁ ଟାଣିନେଇ ଖାଇବାକୁ ଆରମ୍ଭ କଲାବେଳକୁ ଗୌରୀ ସେଇଟାକୁ ଉଠାଇ ନେଇ ଢମାଢମ ହୋଇ ରୋଷେଇ ଘର ଆଡ଼କୁ ଚାଲିଗଲେ । ଗଲାବେଳେ ମଧ୍ୟ ଶୁଣେଇ କହିଗଲେ- ''ମୁଁ ଏତେ ଫରମାସ ମୋଟେ ତୁଲାଇ ପାରିବିନି । ପୁଅର

ଗୋଟେ କଥା । ଝିଅର ଗୋଟେ କଥା । ଅର୍ଡ଼ର ମୁତାବକ ନହେଲେ ଟିଫିନ ବାକ୍ସ ସେମିତି ଫେରି ଆସିବ । ଏଣେ ତୁମେ ବି ଦାଉ ସାଧୁଚ ।''

ଶେଷ ବାକ୍ୟଟା ଯେ ତାଙ୍କର ଘାଗଡ଼ା ଗଳାର ସ୍ୱର ଏକଥା ମୁଁ ବେଶ୍ ବୁଝି ପାରିଥିଲି । କିନ୍ତୁ ମୋର ବା ଉପାୟ କଅଣ ଅଛି ? ଯୋଉ ଏରିଆରେ ମୋତେ କେବେବି ପଶିବାକୁ ଦିଆଯାଇନି ସେଥିରେ ମୋର ନିରବ ଅକ୍ଷମତା ପ୍ରକାଶ କରିବା ଛଡ଼ା ଆଉ କଅଣ କରିବାର ଅଛି ? ଅସହାୟ ଦୀର୍ଘଶ୍ୱାସଟିଏ ବାହାରି ଆସିଲା ।

ଗୌରୀ ଆସିଲେ ଏବଂ ଆଉ ଗୋଟିଏ ପ୍ଲେଟ ମୋ ଆଗରେ ଥୋଇ ଦେଇ ଚାଲିଗଲେ ।

ମୁଁ ତାଙ୍କୁ ଦେଖିଲି । ହଠାତ୍ ମୋର ଯେମିତି ମନେହେଲା ଏବେ ଗୌରୀ କେଜାଣି କେମିତି ଖୁବ୍ ସୁନ୍ଦର ଦେଖାଯାଉଛନ୍ତି । କିଛିଟା ସେଲିନାର ସୌନ୍ଦର୍ଯ୍ୟ । କର୍ମ ତତ୍ପରତାର ସୌନ୍ଦର୍ଯ୍ୟ, ଅଳସ ହାଇର ନୁହେଁ । ମୁଁ ତାଙ୍କୁ ପଛରୁ ଦେଖିଲି । ଗୌରୀ ଏବେ ଏବେ ଚାଳିଶ ଅତିକ୍ରମ କରିଛନ୍ତି । ଏଇ ଦୁଇମାସ ତଳେ ଆମେ ତାଙ୍କର ଜନ୍ମଦିନ ପାଳନ କରିଥିଲୁଁ ସମ୍ପୂର୍ଣ୍ଣ ନିର୍ଜନତା ମଧ୍ୟରେ । ଏପରିକି ଆମର ପିଲାମାନଙ୍କୁ ମଧ୍ୟ ଆମେ ଏଥିରେ ସାମିଲ୍ କରେଇ ନଥିଲୁଁ । କହିଥିଲୁଁ, ସକାଳର ସୂର୍ଯ୍ୟ ଉଠିବା ସଙ୍ଗେ ସଙ୍ଗେ ତମେ ଦୁହେଁ ଦୁଇଟା ଫୁଲ ହିଁ କେବଳ ଦେବ ।

ଆମେ ଧାରା ଓ ପାରମ୍ପରିକତା ବଦଳାଇବାକୁ ଚାହିଁଥିଲୁ ।

ଉତ୍ତର ଚାଳିଶର ସୌନ୍ଦର୍ଯ୍ୟ ନାରୀଠାରେ ଆଉ ଏକ ରଙ୍ଗ ଧାରଣ କରେ ବୋଲି ଯୋଉ କଥାଟି ଅଛି ତାହା ଯେ 'ମାଇଥ୍' ନୁହେଁ ଏକଥା ମୁଁ ମାନିନେଲି ସେଦିନ ।

ଏକଥା ଭାବିବା ସଙ୍ଗେ ସଙ୍ଗେ ମୋ ଭିତରେ ଗୋଟାଏ ସମ୍ବେଦନାର ସଫେଦ ମେଘ ଅଚାନକ ଉଠି ଆସିଲା । ଜଳଖିଆଟା ଭଲ ଭାବରେ ମୁଁ ଆଉ ଉପଭୋଗ କରି ପାରିଲିନି ।

ସେଦିନ ଅଫିସରୁ ଫେରିବା ବାଟରେ ମୁଁ ଗଲି ସେ ବସ୍ତିକୁ । ମୋତେ ମୋଟେ ପରିଶ୍ରମ କରିବାକୁ ପଡ଼ିଲାନି । ଛକ ମୁଣ୍ଡରେ ସ୍ତ୍ରୀଟିଏ ବାହାରି ଆସି ତା ଝୁମ୍ପୁଡ଼ିରେ ମୋତେ ଦେଖି ସ୍ୱାଭାବିକ ଭାବରେ ପୁଣି ମୋ ଆଡ଼କୁ ପଛକରି ଛାତିରେ ଯତ୍ନକରି ଫଟା ଲୁଗାଟା ଢାଙ୍କିବାକୁ ଚେଷ୍ଟା କଲା । ସେ ସେଇ ଅବସ୍ଥାରେ ମୋତେ ପଚାରିଲା, ''କାହାକୁ ଖୋଜୁଚ ?''

ମୁଁ ମୁହଁ ବୁଲେଇ କହିଲି ''ଆମ ଘରେ କାମ କରୁଥିଲା-ପତଳା ଓ ଶ୍ୟାମଳୀ, ବେଶ୍ ଲମ୍ବା ତାର ଗୋଟେ ବଡ଼ ଝିଅ ଅଛି.....''

''ସେଲିନା ? ସେ ଏ ବସ୍ତିରେ ରୁହେନି । ରୁହେ ଆର ବସ୍ତିରେ- ନାଳ ସେ ପାଖରେ । ଯାଅ ନାଳ ସେ ପାଖରେ ପଚାରିବ । ସମସ୍ତେ କହିଦେବେ । କାଲି ତ ସେ ଆସିଥିଲା । 'ବିଧବା ଓ ବୁଢ଼ା ଭତ୍ତା' ପାଇଁ ଦରଖାସ୍ତ ଧରି । ଦସ୍ତଖତ କରେଇ ନେଇଗଲା ।''

ମୁଁ ଆଶ୍ଚର୍ଯ୍ୟ ହେଇଗଲି । ସେଲିନା ତେବେ ଏସବୁ କାମ ବି କରି ପାରୁଚି ? ଯିଏ

ଏ କାମ କରୁଚି ସେ ବା କାହା ଘରେ କାହିଁକି କାମ କରିବ ? ମୁଁ ମନେମନେ ପ୍ରମାଦ ଗଣିଲି । ତେବେ ଆମ ଘରେ କିଏ କାମ କରିବ ? ସେଲିନା ଛଡ଼ା ଆଉ କିଏ ପାରିବ ? ଗୋଟାଏ ମର୍ଯ୍ୟାଦାବନ୍ତ ସ୍କୁଲରେ ପଢୁଥିବା ପିଲାଙ୍କ ପାଇଁ କିଏ ଜଳଖିଆ ସକାଳ ଛଅଟା ବେଳକୁ ପ୍ରସ୍ତୁତ କରି ଦେଇପାରିବ ? ଗୌରୀ ତ ସେତେବେଳକୁ ବିଛଣା ଛାଡ଼ି ନଥିବେ । ଅଳସରେ ବଢ଼ିଥିବା ନାରୀମାନଙ୍କର ଡେରିରେ ବିଛଣା ଛାଡ଼ିବାର ଏକ ସମ୍ଭ୍ରାନ୍ତ ସଂସ୍କୃତି । ସେ ସଂସ୍କୃତିକୁ ଅପସଂସ୍କୃତି ବୋଲି କହି କିଏ ତାଙ୍କୁ ବୁଝେଇବ ? ଏଇ କେତେଦିନ ହେଲା ଗୌରୀ ସପ୍ତାହରେ ତିନିଥର ଗୋଟାଏ ଯୋଗ କେନ୍ଦ୍ରକୁ ଯାଉଛନ୍ତି । କେହି ଜଣେ ତାଙ୍କୁ କହିଛି ଯୋଗରେ 'ଓମ୍' ଉଚ୍ଚାରଣରେ ପେଟ ତଳର ଚମଡ଼ା ପତଳା ହେବା ସହିତ ଆଖି ତଳ କଳା ଦାଗ ମଧ୍ୟ ଉଡ଼ିଯାଏ । ଗୌରୀ ତେଣୁ ଦୁଇ କିଲୋମିଟର ଦୂରରେ ଥିବା 'ଆଚାର୍ଯ୍ୟ ରବିଶଙ୍କରଙ୍କର ଆନ୍ତର୍ଜାତିକ ଯୋଗ କେନ୍ଦ୍ର'କୁ ଯାଆନ୍ତି ନିଜ ଟାଟା ଇଣ୍ଡିକା ଡ୍ରାଇଭ୍ କରି । ହେଇତ ସେଦିନ ସେ ସାଢ଼େ ତିନିହଜାର ଖର୍ଚ୍ଚ କରି, ଅବଶ୍ୟ କ୍ରେଡ଼ିଟ୍ କାର୍ଡ଼ରେ, କିଣି ଆଣିଛନ୍ତି ଯୋଗର ପୋଷାକ ପତ୍ର ଓ ଅନ୍ୟାନ୍ୟ ସାଜ ସରଞ୍ଜାମ ।

ଆଉ ସେଲିନା ? କାହିଁ ତା ଆଖି ତଳେ ନା ଦାଗ ଅଛି ନା ପେଟ ତଳେ ସାମାନ୍ୟ ମେଦର ଚିହ୍ନ ଅଛି । କୋଉଠି ବି ତା' ଦେହରେ ଅନାବଶ୍ୟକ ଭାବେ ଏତେ ଟିକିଏ ଅଧିକ ମାଂସ ଲାଗିନି । ସେ କଅଣ ବା ଖାଉଥିବ ? ତାକୁ ଦେଖ, ତା ଝିଅକୁ ଦେଖ । ଆମ ଗୌରୀକୁ ଦେଖ ଓ ତାଙ୍କ ପୁଅଝିଅଙ୍କୁ ଦେଖ ।

ସ୍କୁଟରଟା ଗୋଟାଏ ଚାକୁଣ୍ଡା ଗଛତଳେ ରଖିଦେଇ ମୁଁ ଆଗେଇ ଗଲାବେଳକୁ ଦେଖିଲି ନାଳରେ ଅଧା ପାଣିରେ ଅଛନ୍ତି ଦଳେ ସ୍ତ୍ରୀଲୋକ । ମୋତେ ଦେଖି ସେମାନେ କେହିକେହି ପଛ କଲେ । ଆଉ କେହି ପାଣିରେ ବେକଯାଏ ବୁଡ଼ିଗଲେ । ମୁଁ ସେମାନଙ୍କ ଭିତରୁ କେତେଜଣଙ୍କୁ ଆମ ଅଞ୍ଚଳରେ ଦେଖିଛି ବୋଲି ମନେ ହେଲା । ସେମାନେ କାମସାରି ଆସି ଗାଧୋଉଛନ୍ତି ବୋଧେ । କାମ କରୁଥିବା ଘରୁ ସବୁ ମଇଳା ସେମାନେ ଏଇଠି ଅଜାଡ଼ି ଦେଉଥିବେ ।

ମୁଁ ତୁରନ୍ତ ସେଠୁ ଆଖି ଫେରେଇ ଆଣି ଆଗକୁ ଗଲି । ବେଶୀ ଦୂରକୁ ଯିବାକୁ ପଡ଼ିଲାନି । ମୁଣ୍ଡ ନୁଆଇଁ ଠିଆ ହୋଇଥିବା ଗୋଟିଏ ଘର ସାମ୍ନାରେ ଠିଆ ହୋଇଥିଲା ସେଲିନା । ମୋତେ ଦେଖି ହାତଯୋଡ଼ି ନମସ୍କାର କଲା ଏବଂ ପଚାରିଲା ''ଆପଣ କେମିତି ଏ ବସ୍ତିକୁ ଆସିଗଲେ ? ଘର ପାଇବାକୁ କଷ୍ଟ ହେଇଥିବ ନା ?''

ମୁଁ ତାର କୋଉ ପ୍ରଶ୍ନର ଉତ୍ତର ଦେବି ପ୍ରଥମେ ବୁଝିପାରୁ ନ ଥିଲି । କିନ୍ତୁ ମୋ ଉତ୍ତରକୁ ଅପେକ୍ଷା ନ କରି ସେ କହିଲା, ''ଆସନ୍ତୁ ଭିତରକୁ ଆସନ୍ତୁ । ଜାଗା ବି କାହିଁ ଯେ ବସିବାକୁ ଦେବି ?'' ସେ ମୁଣ୍ଡ ନୁଆଁଇ ଭିତରକୁ ଗଲା । ମୁଁ ତା ପଛେପଛେ ।

ମୁଁ ଗୋଟାଏ କଥା ଲକ୍ଷ୍ୟ କଲି । ସେଲିନା ଯେମିତି ଆଜି ମୋ ସହିତ ହୃଦୟ ଖୋଲି

କଥା କହୁଛି, ଆଜିଯାଏ କେବେ ମୋ ସହିତ ସେମିତି କଥା ହୋଇଥିଲା ? ସେଲିନା ଯେମିତି ଆଜି ମୋତେ ମୁହଁ ଟେକି ଦେଖୁଛି, ସେମିତି କେବେ ଦେଖିଥିଲା କି ? ମୁଁ ଭାବିଲି ସେଲିନା ମୋ ଘରର ଚାକରାଣୀ ନୁହେଁ । ସେ ତାର ଢେର ଉପରେ ଅନେକ କିଛି । ମୋର ତାକୁ ସମ୍ମାନ ଦେବାକୁ ଇଚ୍ଛା ହେଉଥିଲା । କେମିତି ତାକୁ ମୁଁ ସମ୍ବୋଧନ କରିବି ?

ଗୋଟାଏ କାଠର ଡାବଲ ଉପରେ ବସିପଡ଼ି ମୁଁ ଘରଟାକୁ ଦେଖିନେଲି । ଗୋଟିଏ କୋଠରୀ, କିନ୍ତୁ ବେଶ୍ ପ୍ରଶସ୍ତ । ଖପର ଘରର ଅଧେ କୁଟାରେ ତିଆରି । ଚାଳ କେତେ ଜାଗାରେ ବୋଧେ ପଚି ଗଲାଣି । ଘର ଭିତରେ ଗୋଟାଏ ଜାଗାରେ ଯୋଡ଼େ ପାରା । ସେମାନେ ବସି ବୋଧେ ନିଜ ଘର ତିଆରି ପାଇଁ ଯୋଜନା ପ୍ରସ୍ତୁତ କରୁଛନ୍ତି । ଯୋଉ ଘରେ ସେମାନେ ବିନା ନିମନ୍ତ୍ରଣରେ ପ୍ରବେଶ କରି ନିଜ ଘର ପାଇଁ ସର୍ଭେ କରୁଛନ୍ତି ସେ ଘରେ କିନ୍ତୁ ନିଃସଙ୍ଗ ଚଢ଼େଇଟିଏ । କେତେ ଏକୁଟିଆ ସେ ? କି ଅଭିଶପ୍ତ ଜୀବନ ସେ ବିତାଉଚି ସତେ ? କେମିତି ଅତିକ୍ରମ କରିବ ସେ ଏ ଦୀର୍ଘପଥ ? ରାସ୍ତା ତ କମ୍ ଦୂର ନୁହେଁ, ଆହା ବିଚାରୀ ?

''ଅଫିସରୁ ଫେରିଛନ୍ତି, ଚା'ଟିକେ ଆମ ଘରେ ଖାଇବେନି ?''

ମୁଁ ବିହ୍ୱଳିତ ହେଇ ପଡ଼ିଲି । ମୋର ମନେ ହେଲା ସେଲିନା ମୋତେ ଚା' ଦେବନାହିଁ; ଦେବ ତାର ସମସ୍ତ ଶ୍ରଦ୍ଧା ଓ ସମ୍ମାନରୁ ଗୋଟାଏ କପ୍ । ଅଜାଡ଼ି ଦେବ ଅତି ନିଜର ଲୋକଟି ପାଖରେ । ଏହାଠାରୁ ବେଶି ଦେବାର ନ ଥାଏ କି ପାଇବାର ନଥାଏ । ମୋ ଉତ୍ତରକୁ ଅପେକ୍ଷା ନକରି ସେ ପାଣି ବସେଇ ଦେଲା ହିଟରରେ ।

ମୋ ପାଖରୁ ମାତ୍ର ପାଞ୍ଚଫୁଟ ଦୂରରେ ଠିଆ ହେଇଚି ସେଲିନା । ଘରର ମଝି ଖୁଣ୍ଟି ପାଖରେ । ଖୁଣ୍ଟ ପରି ସିଧା । ଘରଟା ଅତି ସାଧାରଣ । ଖଣ୍ଡେ ଦୂରରେ ଅନେକ ପୁରୁଣା ପଟା ଖଟଟାଏ । ତାରି ଉପରେ ବିଛଣା ଓ ଲୁଗାପଟା ଚଉଡା ହେଇ ଥୁଆ ହେଇଚି । ଖଟ ତଳେ କିଛି ପାଛିଆ, ଟିଣ ବାକ୍ସ । ମୁଢ଼ି ଟିଣଟିଏ.... ଏମିତି କିଛି । ତା ସେ ପାଖକୁ ଖଣ୍ଡେ ଦଉଡ଼ିରେ ଶାଢ଼ି, ବ୍ଲାଉଜ ଓ ତା ଝିଅର ସେଲୁଆର କମିଜ । ସେ ଚା' ନେଇ ଆସିଲା ଗୋଟାଏ ଛୋଟ କାଚ ଗ୍ଲାସରେ । ''ଧରିବାକୁ ଅସୁବିଧା ହେବ ?'' ମୋତେ କହିଲା ।

''ନା । ଏମିତି ଆମେ ବାହାରେ ଚା' ପିଉଁ ।''

''କିନ୍ତୁ ତୁମେ କାହିଁକି ଯାଉନ ?'' ମୁଁ ପଚାରିଲି ।

ସେ ହସିଲା । ମୁଁ ବୁଝିପାରିଲି, ମୁଁ 'ତୁ'ରୁ ତାକୁ 'ତମେ' ସମ୍ବୋଧନ କଲିଣି ।

''ସତ କହିବି ? ଆପଣଙ୍କୁ ସତ କହିଲେ ବିପଦ ନାହିଁ ।'' ସେ ହସିହସି କହିଲା ।

ମୁଁ ତା' ମୁହଁକୁ ଖାଲି ଅନାଇ ରହିଲି । ସେ ମୋ ସାମ୍ନାରେ ପିଢ଼ା ଖଣ୍ଡକରେ ବସି ପଡ଼ିଲା ଏବଂ କହିଲା- ''ମୋତେ ସେଦିନ ଟିକିଏ ବାଧିଲା ।'' ସେ ତଳକୁ ମୁହଁ ପୋତିଲା ।

ପୁଣି ମୁହଁ ଉଠେଇ କହିଲା, ''ମୁଁ ଚାରିଟାବେଳେ ଯେତେବେଳେ ଗଲି, ଦେଖିଲି ବାଥରୁମ୍ ଭିତରେ ଅଛି ମଶାରୀ, ପରଦା, ଗୋଟାଏ କମ୍ବଳ ଆଉ କିଛି ଅନେକ ପୁରୁଣା ଛିଣ୍ଡା ଶାଢ଼ି । ୱାସିଂ ମେସିନ୍‌ଟା ତ ମାସେ ହେଲା ଖରାପ । ସେଦିନ ବୋଧେ ଆପଣଙ୍କ ପେଣ୍ଟସାର୍ଟ, ପିଲାଙ୍କ ଲୁଗାପଟା ସଫା କରିବାକୁ କିଛି ନ ଥିଲା । ମୋତେ ଦୈନିକ କିଛି କାଟିବାକୁ ହେବ । କଥା ହେଇଚି ।''

ସେ ଚୁପ୍ ହେଇଗଲା ।

ମୁଁ ସ୍ତମ୍ଭୀଭୂତ ହେଇଗଲି । ଚା' ଗ୍ଲାସଟା ମୋ ହାତରେ ଅଟକି ଗଲା ।

''ମୁଁ ଗାଧୁଆ ଘର କବାଟ ଆଉଜାଇ ଆଣି ସେମିତି ବାହାରି ଆସିଲି । ଆପଣ ନ ଥିଲେ । ମାଆ ସେମିତି ଶୋଇଥିଲେ ।'' ମୁହଁ ତଳକୁ ପୋତି ସେ ପୁଣି କହିଲା, ''ମୋର ଦୋଷ ଥିଲେ କ୍ଷମା କରନ୍ତୁ ।'' ସେ ମୁହଁରେ ଶାଢ଼ି କାନି ଥାପିଦେଲା ।

ମୋତେ ଯେମିତି ଚାରିଆଡ଼ ଅନ୍ଧାର ଦେଖାଗଲା । ମୋର ମାନ ସମ୍ମାନ, ମୋର ଆତ୍ମ ଅହଙ୍କାର, ମୋର ଗର୍ବ ଓ ଗୌରବ ସବୁ ଯେମିତି ମୋଠୁ ଛାଟିପିଟି ହେଇ ପଳାଉଥିଲେ ଏବଂ କିଛି ଦୂରରେ ଠିଆ ହେଇ ମୋତେ ଦାନ୍ତ ନିକୁଟୁଥିଲେ । ସେମାନେ ଯେମିତି ମୋତେ କହୁଥିଲେ, ''ତୁ'ଟା କି ମଣିଷ କିରେ ? ଅଛି ତୋ ଭିତରେ ମଣିଷପଣିଆ ? କାହିଁ କୋଉଠି ଦେଖେଇଲୁ ?'' ଆଉ ସେତେବେଳେ ମୁଁ ଦେଖୁଥିଲି ମୋ ଭିତରଟା ଅସହାୟତାରେ କୁଙ୍କୁଡ଼ି କାଙ୍କୁଡ଼ି ହେଇ ଯାଉଥିଲା ।

ମୁଁ କିଛି ନ କହି ଠିଆ ହେବାର ଦେଖି ସେ ବି ଠିଆ ହେଲା ଏବଂ କହିଲା, ''ମୋ ଦୋଷ ଘେନା କରିବେନି । ମୁଁ କାଲିଠାରୁ ପୁଣି ଆସିବି । ମୁଁ ତ ଆପଣଙ୍କଠାରେ ଋଣୀ ।''

ମୁଁ ଆଉ କିଛି କହିପାରି ନ ଥିଲି । ଦୁଆରମୁହଁ ଡେଇଁ ବାହାରକୁ ଆସିଲାମାତ୍ରେ ସେ ପଚାରିଲା, ''ଏବେ ଯାଇ ଘରେ କଅଣ କହିବେ ?'' ସେ ହସୁଥିଲା ।

''ତାକୁ ଜର ହେଇଥିଲା, ମ୍ୟାଲେରିଆ ।'' ଟିକିଏ ରହି କହିଲି ଏବଂ ଆଗକୁ ପାଦ ବଢ଼ାଇଲି । ବାହାରେ ସୂର୍ଯ୍ୟାସ୍ତ ପରର ରଙ୍ଗଟା ମୋଟା ଓ ବହଳିଆ ହେଇ ଆସୁଥିଲା ।

(ତାରତରଙ୍ଗ, ୨୦୦୬)

# ହାତ ପାପୁଲିରେ ସୂର୍ଯ୍ୟୋଦୟ

''ତୁମେ ଇଂରାଜୀ ବୁଝ ?'' ପ୍ରଶ୍ନଟି ଥିଲା ଖୁବ୍ ସିଧା ଏବଂ ସେଥିରେ ଟିକିଏ ବୋଲି କପଟତା କିମ୍ୱା ମୋତେ ପରୀକ୍ଷା କରିବାର ଉଦ୍ଦେଶ୍ୟ ତାର ମୋଟେ ନଥିଲା ।

''ବୁଝେଁ'', ମୁଁ କହିଲି ସଙ୍ଗେସଙ୍ଗେ । ତା'ପରେ ତା ମୁହଁକୁ ମୁଁ ଅନେଇ ରହିଲି ପରବର୍ତ୍ତୀ ପ୍ରଶ୍ନ ଆଶାରେ । ପରବର୍ତ୍ତୀ ପ୍ରଶ୍ନ ଯେ କଅଣ ହୋଇପାରେ ସେକଥା ଥିଲା ମୋ ଚିନ୍ତାର ବାହାରେ । କାରଣ ମୁଁ ତାକୁ ଜାଣେଁ । ଗୋଟିଏ ପ୍ରଶ୍ନରେ ସେ କେବେ ଚୁପ୍ ହୋଇ ଯାଏନା । ଅନ୍ୟ ଗୋଟିଏ ପ୍ରଶ୍ନକୁ ଲମ୍ଫ ପ୍ରଦାନ କରିବା, ଆବଶ୍ୟକତା ଥାଉ କି ନଥାଉ, ତା'ର ଏକ ସ୍ୱାଭାବିକ ଚରିତ୍ର । ମୁଁ ଏକଥା ମଧ୍ୟ ଦେଖିଚି, ସେ ଗୋଟାଏ ଯୋଡ଼ାଏ ପ୍ରଶ୍ନରେ ସନ୍ତୁଷ୍ଟ ହୋଇଯାଏନା । ସନ୍ତୁଷ୍ଟ ହେବା ତା ଜାତକରେ ନଥାଏ । ତା ପ୍ରଶ୍ନଗୁଡ଼ାକ ଗୋଟିକ ପରେ ଗୋଟିଏ ବାହାରି ଆସନ୍ତି ଠିକ୍ ରାମାୟଣ ସିରିଏଲ୍‌ରେ ରାମ ତାଙ୍କ ତୂଣୀରରୁ ରାବଣ ଉପରକୁ ଶର ନିକ୍ଷେପ କଲାପରି । ସମୟର ବ୍ୟବଧାନ ମଧ୍ୟ ସେତିକି ଯେତିକି ରାମ ନିଅନ୍ତି ତାଙ୍କ ଶରକୁ ମନ୍ତୁରିତ କରି ମୁଣ୍ଡରେ ଛୁଇଁବା ପରେ ନିକ୍ଷେପ କରିବା ପର୍ଯ୍ୟନ୍ତ । କେବଳ ଫରକ ଏତିକି ଥାଏ, ସେ ରାମର ଭୂମିକାରେ ଥାଇ ଶର ନିକ୍ଷେପବେଳେ ମୁରୁକି ମୁରୁକି ହସୁଥାଏ । ମାନେ ମନେମନେ ହୁଏତ ଭାବୁଥାଏ । ଭାବୁଥାଏ ତାର ସେ ହସ ଯେମିତି ସେତେବେଳେ ତା'ର ନିଜ ନିୟନ୍ତ୍ରଣର ବାହାରକୁ ନ ଯାଏ । ଆଉ ସେତେବେଳେ ମୁଁ ଅସହାୟ ଭାବେ ହାରିବାର ଛଳନା କରୁଥିବା ରାବଣ ଭୂମିକାରେ ଆତ୍ମରକ୍ଷା ପାଇଁ ତାକୁ ଦେଖୁଥାଏଁ । ପରବର୍ତ୍ତୀ ଶର ମୋତେ ଭୂଶାୟୀ କରିବ ନାହିଁ ତ ?

ତା'ର ଗୋଟିଏ ଅଦ୍ଭୁତ ମାନସିକତା ମୁଁ ଲକ୍ଷ୍ୟ କରେଁ । ସେ କେବେ ହାରିବାକୁ ଚାହେଁନା । ମୁଁ ଏକଥା ମଧ୍ୟ ଦେଖିଚି କୌଣସି ଖେଳରେ, ଦୁଇଜଣିଆ ଲୁଡୁ ହେଉ ବା ତାସ୍ ହେଉ, ଦୈବାତ୍ ସେ ହାରିଗଲେ ମଧ୍ୟ ସ୍ୱୀକାର କରେନା । ଲୁଡୁ ପଟାଟାକୁ ହଠାତ୍ ଓଲଟାଇ ଦେଇ ସେ ଦଉଡ଼ି ପଳାଏ ଏବଂ ଘରଯାକ ପାଟି କରିକହେ, ହାରିଗଲେ, ଏଥର

ମଧ୍ୟ ହାରିଗଲେ । ତା'ର ମତକୁ ଆହୁରି ଦୃଢ଼ କରିବାକୁ ଏବଂ ଅନ୍ୟମାନଙ୍କର ବିଶ୍ୱାସଯୋଗ୍ୟ ହେବାକୁ ଅନ୍ୟମାନଙ୍କ କାନ ପାଖକୁ ମୁହଁ ନେଇ ସେ କହେ- 'ତାଙ୍କୁ ଖେଳ ଆସେନି । ମୋ'ଠୁ ଥରେ ବୋଲି ସେ ଜିତିପାରି ନାହାନ୍ତି । ତାଙ୍କୁ ପଚାରୁନ !'

ଏଥର ସେ ପଚାରିଲା- ''ଆଚ୍ଛା 'ଗଡ୍' ମାନେ କଅଣ କହିଲ ?''

ମୁଁ ଟିକିଏ ରହିଗଲି ଯେମିତି ମନେ ପକେଇବାକୁ ଚେଷ୍ଟା କରୁଚି । ତା'ପରେ କହିଲି, ''ନା, ଜାଣେନି ।''

-''ହେଁ, ମିଛକାହିଁକି କହିଲ ? ଇଂରାଜୀ ଜାଣ ବୋଲି କହୁଥିଲ ପରା ?''

-''ଆରେ ସେ ତୋତେ ସେମିତି କହିଲେ ନା । ସେ କଅଣ ସତରେ ଇଂରାଜୀ ବୁଝନ୍ତିନି ? ସେ ପରା ଇଂରାଜୀରେ କଥାବାର୍ତ୍ତା କରନ୍ତି । ଇଂରାଜୀ ଖବରକାଗଜ ପଢ଼ନ୍ତି । ତୁ କଅଣ କେବେ ଦେଖିନୁ ?'' ଷ୍ଟାଣ୍ଡାର୍ଡ଼ ଥ୍ରୀରେ ପଢୁଥିବା ତା'ର ବଡ଼ଭଉଣୀ ଲିଜା ତାକୁ ଚେତାଇ ଦେଲା ।

ସେ ଏଥର ମୋତେ ଅନେଇଲା । ଗୋଟାଏ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ସେ ମୋତେ ଦେଖିଲା । ତା'ପରେ ତାଚ୍ଛଲ୍ୟ କରି କହିଲା, ''ହୁଁ, ଗଡ୍‌ମାନେ ଜାଣି ନାହାନ୍ତି, ଇଂରାଜୀରେ ପରା କଥାବାର୍ତ୍ତା କରନ୍ତି । କାହିଁ ମୋ ସହିତ କେବେ ଇଂରାଜୀରେ କଥାହୋଇ ନାହାନ୍ତି !'' ତା'ପରେ ସେ ତା'ର ଡାହାଣ ହାତ ବିଶି ଆଙ୍ଗୁଳି ମୋତେ ଦେଖେଇ କହିଲା, ''ନା ନା ତୁମେ ମିଛ କହିଚ, ମିଛ କହିବା ଭଲ ନୁହେଁ, ବୁଝିଲ ।'' ତା'ପରେ କିଛି ସମୟ ପାଇଁ ମୋ ମୁହଁକୁ ଅନେଇ ରହିଲା ଏବଂ କହିଲା, ''ଆଚ୍ଛା ଠିକ୍ ଅଛି, ତୁମେ 'ସରି' କହିଦିଅ । ଇଂରାଜୀ ଜାଣ ବୋଲି ତମେ ମୋତେ ମିଛ କହି ଧରା ପଡ଼ିଯାଇଛ । କୁହ, 'ସରି କହିଦିଅ । କହିଲେ ତୁମକୁ ଗୁଡ୍‌ବୟ କହିବି' ।''

''ସରି, ଭେରି ସରି'', ମୁଁ କହିଲି ସମ୍ପୂର୍ଣ୍ଣ ସମର୍ପଣ ଭଙ୍ଗୀରେ । ଏମିତି ସରି କହିବାରେ ଯୋଉ ଅଫୁରନ୍ତ ଆନନ୍ଦ, ତା'ର ବିରଳ ଅନୁଭବ ସବୁବେଳେ ମିଳି ନଥାଏ । ଓଠ ଫଟେଇ ଉଛୁଟି ଆସୁଥିବା ହସକୁ ମୁଁ ଆଦୌ ଚାପିପାରୁ ନଥିଲି ।

''ଆରେ, ତୁମେ ସରି କହିଲାବେଳେ ହସୁଚ ? ବେଡ୍, ଭେରି ବେଡ୍ । ନାଇଁ, ଆଉ ହସିବନି, ହେଲା ।'' କଥାର ମୋଡ଼ ବଦଳେଇ ସେ ଏଥର କହିଲା, ''ଆଚ୍ଛା ତୁମେ ଗଡ୍ ମାନେ ଜାଣିନ ?'' କାହିଁକି ? ସେ ଓଲଡ଼୍ ମେନ୍ ତୁମକୁ କେବେ ଶିଖେଇ ନଥିଲେ ? ତେବେ ଦୋଷ ତୁମର ନୁହେଁ ।'' ସଙ୍ଗେସଙ୍ଗେ ସିଦ୍ଧାନ୍ତ ନେବାରେ ସେ ଥିଲା ଓସ୍ତାଦ । ସମସ୍ୟା ପଛେପଛେ ସମାଧାନ ମଧ୍ୟ ଗଡ଼ି ଆସୁଥିଲା ।

ସତକୁ ସତ ଏଥର ମୋ ହସଟା ମଉଳି ପଡ଼ିଲା । ତପୁ ଯେତେବେଳେ 'ଓଲଡ଼୍ ମେନ୍' କିମ୍ବା 'ଓଲଡ଼୍ ଲେଡ଼ି' କଥା କହିଥାଏ, ସେତେବେଳେ ସେ କାଚ ଫ୍ରେମ୍‌ରେ ସୁନ୍ଦର ଭାବେ ବନ୍ଧା ହେଇଥିବା ମୋ ବାପା ବୋଉକୁ ହିଁ ଲକ୍ଷ୍ୟକରି କହିଥାଏ । ମୋ ବାପା ଓ

ବୋଉଙ୍କ ଫଟୋକୁ ମୋ ପୁଅ ଲୋହିତ କମ୍ପ୍ୟୁଟରରୁ ବାହାର କରି ଜଣେ ଭଲ ଆର୍ଟିଷ୍ଟଙ୍କୁ ଦେଇ ଅଏଲ୍ ପେଣ୍ଟିଂ କରି ଆଣିଚି । ଦେଢ଼ ଫୁଟରେ ଏକ ଫୁଟ ସାଇଜ୍‌ର ସେ ଅଏଲ୍ ପେଣ୍ଟିଂରେ ମୋ ବାପା ଖଣ୍ଡେ ଧୋତି ଓ ପଞ୍ଜାବୀରେ ବଙ୍କୁଲିବାଡ଼ି ଧରି ଠିଆ ହେଇଚନ୍ତି ଏବଂ ମୋ ବୋଉ ସାମାନ୍ୟ ଓଢ଼ଣାରେ (କ୍ୟାମେରାକୁ ମୁହଁ ଦେଖେଇବା ବାଧ୍ୟ ବାଧ୍ୟକତାରେ) ହାତରେ ମାଳି ଗଡ଼ଉଥିବାର ଦୃଶ୍ୟ ଅଛି ସ୍ପଷ୍ଟ । ପପୁ ସବୁବେଳେ ସେ ଫଟୋକୁ ଦେଖି ମୋତେ ଥଟ୍ଟା କରେ ଏବଂ କହେ, ''ମୋର ସିନା ଦି'ଟା ଦାନ୍ତ ମୁଁ ରାତିରେ ଶୋଇଥିଲାବେଳେ ମୂଷା ନେଇ ପଳାଇଲା, ତୁମ ବୋଉର ସବୁଦାନ୍ତ କେମିତି କିଏ ନେଇ ପଳାଇଲା ? ମୋ ବୋଉ ସେ ମୂଷା ମାରିଦେଇଚି । ଆଉ ତମ ବୋଉ ସେତେବେଳେ କଅଣ କରୁଥିଲେ ?''

ପ୍ରଶ୍ନଟି ମୋ ପକ୍ଷେ ଥିଲା ଖୁବ୍ ଜଟିଳ । ଏ ପ୍ରଶ୍ନର ଉତ୍ତର ମୁଁ ଦେଇପାରି ନଥିଲି । କିନ୍ତୁ ମୋ ବାପା ଯେ ଗଡ଼୍ ମାନେ ଜାଣି ନଥିଲେ ଏକଥା ହୁଏତ ପପୁ ଜାଣି ନଥିବ । ସେ ଈଶ୍ୱରଙ୍କୁ ଈଶ୍ୱର ହିସାବରେ ଜାଣିଥିଲେ । ସେ ତାଙ୍କର କ୍ଷମତା ଓ ଏ ପୃଥିବୀକୁ ଚଳେଇ ନେବାର ଦକ୍ଷତା ବିଷୟରେ ମଧ୍ୟ ଜାଣିଥିଲେ । ସେ ଯେ ମଣିଷକୁ ପ୍ରତ୍ୟେକ କଥାରେ ବାଟ କଢ଼ାନ୍ତି ଏକଥା ମଧ୍ୟ ଜାଣିଥିଲେ ଏବଂ ଅନ୍ୟକୁ ଶିଖାଉଥିଲେ । ସେତେବେଳେ ଯଦି ତାଙ୍କୁ କେହି ପଚାରି ଥାଆନ୍ତେ 'ଗଡ଼୍'ଙ୍କ ସମ୍ପର୍କରେ, ସେ ସିଧା ମନା କରିଦେଇ ଥାଆନ୍ତେ । କହିଥାଆନ୍ତେ, ସେ କିଏ ?

ମୁଁ ସେତେବେଳେ ମନେ ପକେଇବାକୁ ଆରମ୍ଭ କଲି । 'ଗଡ୍' ଏ ଭାରତବର୍ଷକୁ କେବେ ଆସିଲେ ? ନିଶ୍ଚୟ ଇଂରେଜମାନଙ୍କ ସହିତ ସେ ଆସିଚନ୍ତି । ତା ପୂର୍ବରୁ ଏ ଦେଶରେ ଈଶ୍ୱର ହିଁ ରାଜତ୍ୱ କରୁଥିଲେ । ହଜାର ହଜାର ବର୍ଷର ରତ୍ନସିଂହାସନରୁ ତଡ଼ି ଗଡ୍ ଈଶ୍ୱରଙ୍କ ସ୍ଥାନ ଅଧିକାର କଲେ ଏବଂ ମାତ୍ର ପଚାଶ ଷାଠିଏ ବର୍ଷ ଭିତରେ ସମଗ୍ର ଭାରତବର୍ଷର ସବୁ ମଣିଷଙ୍କ ହୃଦୟକୁ ଆୟତ୍ତ କରିନେଲେ । ଈଶ୍ୱର ଏବେ ସମ୍ପୂର୍ଣ୍ଣ ଅସହାୟ ହେଇ ରାସ୍ତାରେ ଘୂରି ବୁଲୁଛନ୍ତି । ହୁଏତ କହୁଛନ୍ତି ମୋତେ ଟିକିଏ ମୁଣ୍ଡ ଗୁଞ୍ଜିବାକୁ ଜାଗା ଦେବ ?

ଭାରତର ମଣିଷଟି ସେତେବେଳେ ହୁଏତ କହୁଚି, 'ଓ ଗଡ୍! ଏମିତି ସାହସ ତୁମେ କରି ପାରୁଚ କେମିତି ? ତୁମପାଇଁ ଜାଗା କାହିଁ ? ସବୁତ ଦଖଲ ହେଇ ସାରିଚି ।'ଏକଦା ସର୍ବ ଶକ୍ତିମାନ ଈଶ୍ୱର ଏବେ ରାଜରାସ୍ତାକୁ ଓହ୍ଲାଇ ଆସିଛନ୍ତି । ସେ ସାଧାରଣ ଜନତାରେ ପରିଣତ ହେଇଗଲା ପରେ ଏବେ ସେ ତାଙ୍କ ନିଜ ପରିଚୟ ମଧ୍ୟ ହଜେଇ ସାରିଲେଣି । ଏବେ ତାଙ୍କୁ ଆଉ କେହି ଚିହ୍ନି ନାହାନ୍ତି । ପରିବର୍ତ୍ତିତ ପୃଥିବୀରେ ସେ ତାଙ୍କର ସ୍ଥିତି କେବଳ ବଞ୍ଚାୟ ରଖିବାକୁ ପ୍ରାଣମୂର୍ଚ୍ଛା ଲାଗି ପଡ଼ିଛନ୍ତି । ସେ ପାରିବେ ତ ?

ପପୁର ଧୀଶକ୍ତି ଅସାଧାରଣ । ମୁଁ ସ୍ୱୀକାର କରେଁ, ଏବେ ଶିଶୁମାନେ ଆଗକାଳର ଶିଶୁମାନଙ୍କ ଅପେକ୍ଷା ଯଥେଷ୍ଟ ଅଧିକ ବୁଦ୍ଧିମାନ ଓ ପ୍ରଚଣ୍ଡ ଜ୍ଞାନ ପିପାସୁ । ଏବର ବିଶ୍ୱ ଯେପରି ପିଲାମାନଙ୍କ ଆଗରେ କ୍ଷୁଦ୍ର ଓ ସୀମିତ । ଆଗ କାଳରେ ଶିଶୁମାନେ ଯେତେକଥା

ଶିଖିବାକୁ ସୁଯୋଗ ପାଉଥିଲେ ଏବେ ଶିଶୁମାନେ ତା ଅପେକ୍ଷା ଢେର୍ ବେଶି ଶିଖି ପାରୁଛନ୍ତି । ତେଣୁ ହୁଏତ ପପୁର ଜ୍ଞାନର ପରିସୀମା ଥିଲା ଯଥେଷ୍ଟ ବେଶୀ । ତା'ର ସ୍କୁଲ ବେଗ୍‌ଟିକୁ ମୁଁ ସହଜରେ ଉଠାଇ ପାରୁ ନ ଥିଲାବେଳେ ସେ ତାକୁ ଅତି ଅନାୟାସରେ ଉପରକୁ ଟେକି ଦୁଇହାତକୁ ପଛପଟ ଦେଇ ଭର୍ତ୍ତିକରି ପିଠିରେ ଝୁଲାଇ ପାରୁଥିଲା । ମୁଁ ଯେତେବେଳେ ତାକୁ କହେଁ, ବେଗ୍ ଓ ପାଣି ବୋତାଲ ମୁଁ ଧରି ବସ୍ ଷ୍ଟାଣ୍ଡଯାଏ ଯିବି, ସେ ସିଧା ମନାକରେ ଏବଂ କହେ, ତୁମକୁ ବସ୍‌ଷ୍ଟାଣ୍ଡଯାଏ ମଧ୍ୟ ଯିବାକୁ ହେବନାହିଁ, ତୁମେ ଘରେ ଥାଅ । ମୁଁ ଏକା ବସ୍ ପାଖକୁ ଯାଇପାରିବି ।'

ପପୁ ଏଇ ମାତ୍ର ପାଞ୍ଚ ଅତିକ୍ରମ କରିଚି । ତା'ର ଜନ୍ମଦିନରେ ମୁଁ ତାକୁ କି ଉପହାର ଦେବି ବୋଲି ତା ଆଗଦିନ ସନ୍ଧ୍ୟାବେଳେ ଯେତେବେଳେ ତାକୁ ପଚାରିଲି, ସେ ଟିକିଏ ରହିଗଲା । ମୁଁ ସେତେବେଳେ ସେ ପିସ୍ତଲ କି ଉଡ଼ାଜାହାଜ କିମ୍ବା ଭଲ ଡ୍ରେସ୍ କିମ୍ବା କିଛି ନ ହେଲେ ସେ ମୋଠୁ କାଡ଼ବେରୀ ଚକୋଲେଟ୍ ଡବାଟିଏ ପାଇବାକୁ ଆଶା କରୁଥିବ ବୋଲି ଭାବୁଥିଲି । ସେ କିନ୍ତୁ ମୋତେ ଆଶ୍ଚର୍ଯ୍ୟ କରିଦେଇ କହିଲା ମୋତେ ଖଣ୍ଡେ ଭଲ ଗପ ବହି ଦେଇପାରିବ ? ସେଥିରେ ତୁମେ ତୁମ ନିଜ ହାତରେ ମୋ ନାଁ ଲେଖିବ ଏବଂ ତୁମେ ଉପହାର ଦେଲ ବୋଲି ଲେଖି ତା' ତଳେ ତାରିଖ ମଧ୍ୟ ଲେଖିବ ।

ଗପ ବହି ? ମୁଁ ଆଶ୍ଚର୍ଯ୍ୟ ହେଇଗଲି । ଏତେ ଟିକିଏ ପିଲା । ମାପିଦେଲେ ଚାରିପାଞ୍ଚ ଚାଖଣ୍ଡରୁ ବେଶି ହେବନାହିଁ । ଇଂରାଜୀ ସାହିତ୍ୟର କେତେ ଶବ୍ଦ ବା ସେ ଆୟତ୍ତ କରିପାରିଚି ? କେତେ ବା ସେ ଭାଷାକୁ ବୁଝିଚି ? ସେ ମାଗୁଛି ଗପ ବହି ? ମୋର ସୌଭାଗ୍ୟ ଯେ ସେ ମୋତେ ଓଡ଼ିଆରେ ଗପବହି ମାଗିନାହିଁ । ତା'ପାଇଁ କେତେ ଓଡ଼ିଆ ଗପବହି ମୁଁ ପାଇଥାଆନ୍ତି ? କେତେ ବା ଗଳ୍ପ ଲେଖକ ଅଛନ୍ତି ? ପିଲାଙ୍କ ମନକୁ ଆକର୍ଷଣ କଲାଭଳି କେତେ ଗପବହି ଆମର ଛପା ହୁଏ ? ଲଜ୍ଜାରେ ମୁଁ ଝାଉଁଳି ପଡ଼ିଥାଆନ୍ତି । ତାକୁ ସନ୍ତୁଷ୍ଟ କଲାଭଳି ବହି କାହିଁ ଓଡ଼ିଆରେ ?

ସେ କିନ୍ତୁ ଇଂରାଜୀ ବହି ମାଗୁଚି । ସୁନ୍ଦର ଛପା, ସୁନ୍ଦର ଚିତ୍ର ସମ୍ବଳିତ ଗପ ବହି ଅଛି ଦୋକାନରେ । ପିଲାମାନେ ତାକୁ ପଢ଼ିଲେ ନିଜ ଗୋଡ଼ରେ ଠିଆହେବାର ଭରସା ପାଇବେ । ଆତ୍ମବିଶ୍ୱାସ ପାଇବେ । 'ମୁଁ କିଛି ନୁହେଁ, ସବୁ ଈଶ୍ୱର କରିଦେବେ', ଏପରି ବିଶ୍ୱାସ ତା ମନରେ ଆସିବ ନାହିଁ ।

ମୁଁ କହିଲି, ''ଆଜି ସନ୍ଧ୍ୟାରେ ତୁ ମୋ ସହିତ ବଜାର ଯିବୁ ? ତୁ ଯୋଉ ବହି ବାଛିବୁ ଓ ଯେତେ ବହି ନେବାକୁ ଚାହିଁବୁ ମୁଁ ତୋତେ କିଣିଦେବି । ସବୁ ବହିରେ ମୁଁ ତୋତେ ଉପହାର ଦେଲି ବୋଲି ଲେଖି ତା ତଳେ ଦସ୍ତଖତ କରିଦେବି, ହେଲା ?''

ସେ ମୁଣ୍ଡ ହଲାଇ ମନାକଲା, କହିଲା- ''ସରି, ମୋର ପରା କାଲି ଏକ୍‌ଜାମ ଅଛି, ମୁଁ ଯିବି କେତେବେଳେ ? ମାମି ଏଇନେ ଆସି କହିବେ, ତୁ କଅଣ ଏଯାଏ ପଢ଼ା ଟେବୁଲରେ

ବସିନୁ । ଇଉ ଲେଜି ବୟ ।''

ସେ ତା'ର ଆଖି ଦୁଇଟାକୁ ବଡ଼ବଡ଼ କରି ମାମି ଯେମିତି କରନ୍ତି ସେମିତି ଅଭିନୟ କଲା ଏବଂ ହୋହୋ ହସି ଉଠିଲା । ପର ମୁହୂର୍ତ୍ତରେ ସେ ସତର୍କ ହେଇଯାଇ କାଳେ ମାମି ଆସୁଥିବେ ଭାବି ନିଜ ଓଠରେ ଆଙ୍ଗୁଳି ଚାପି ପଛକୁ ଅନାଇଲା ଓ ପୁଣି ମୋତେ ଦେଖେଇଲା ।

ଆମେ ଦୁହେଁ ଚୁପ୍ ହେଇଗଲୁ ବେଶ୍ କିଛି ସମୟ ପାଇଁ ।

କିନ୍ତୁ ସବୁ ନିରବତା ସବୁ ସମସ୍ୟାର ସମାଧାନ କରେ ନାହିଁ । ବରଂ ତାହା ଦ୍ୱିଗୁଣିତ କରାଏ । ବହି ଦୋକାନକୁ ଯାଇ ନିଜେ ବହି ଦେଖି କିଣିବା ଏବଂ ଜଣେ ଅନ୍ୟ ଜଣକ ପାଇଁ କିଣିବା ଏ ଦୁଇଟି ଭିତରେ ସୀମାହୀନ ପାର୍ଥକ୍ୟ ଥାଏ । ସେ ପରୀକ୍ଷା ପାଇଁ ତା'ର ଅସହାୟତା ପ୍ରକାଶ କଲା ବେଳକୁ ତା ପସନ୍ଦର ସୀମାହୀନ ରାଜ୍ୟରେ ମୁଁ ପଶି ତାକୁ ଖୋଜିବା ଆଉ ଏକ ଦୁରୂହ ବ୍ୟାପାର ହେଇପଡ଼ିଲା ମୋ ପକ୍ଷେ । ମୋ ଭିତରେ ମୁଁ ନିଜକୁ ଖୋଜି ପାଇପାରେଁ । କିନ୍ତୁ ମୋ ଭିତରେ ମୁଁ ତାକୁ ଖୋଜି ପାଇବା କଅଣ ସହଜ କଥା ହେଇଚି ? ସମୟ ଏକ ବିରାଟ ବ୍ୟବଧାନ ହେଇ ଛିଡ଼ା ହେଲା । ମୋ ସମୟର ଶୈଶବ ଓ ତା ସମୟର ଶୈଶବ- ଏମାନେ କେହି କାହାକୁ ଚିହ୍ନି ପାରୁନଥିଲେ ।

ଲଙ୍ଗଳା ହେଇ ଠିଆ ହେଲା ମୋ ବାଲ୍ୟକାଳ । ତା ଅଣ୍ଟାରେ ଦଉଡ଼ିଟିଏ ବନ୍ଧା ହେଇଚି । ସେଥିରେ ଗୋଟାଏ ରୁଦ୍ରାକ୍ଷକୁ କଣା କରି ବନ୍ଧା ହେଇଚି । ତା ପାଖକୁ ଅଛି ଗୋଟାଏ ଦୁଇ ଫାଙ୍କୁଡ଼ା ଥିବା ଶିଙ୍ଗ ଏବଂ ଆଉ ଗୋଟାଏ ତଉଁରିଆ । ସେ କଅଣ ଓ କାହିଁକି, ଏସବୁ ମୁଁ କି ମୋ ବୋଉର ପ୍ରଶ୍ନର ବାହାରେ । ଦାଣ୍ଡପିଣ୍ଡାଠାରୁ ଗାଁ ଗୋହିରି ଯାଏ ସେ ଶୈଶବ ସେମିତି ବୁଲୁଥାଏ । ଦଉଡୁଥାଏ । ନାକରୁ ବାହାରୁ ଥାଏ ଅନର୍ଗଳ ପାଣି । ହାତପାପୁଲିରେ ପୋଛା ହୋଇ ରଖାଯାଏ ପିଚାରେ । ତା'ଠୁ ଅଧିକ କିଏ ଦେଖିଚି ?

ଆଉ ପପୁର ଶୈଶବ ରୂପା ଚାମଚରୁ ଆରମ୍ଭ କହିଲେ ଯଥେଷ୍ଟ ହେବ ବୋଧେ । ଆଖି ଫିଟି ନଥିବା ବେଳୁ ଆରମ୍ଭ ହୋଇଯାଏ ସେ ଚାମଚର କରାମତି । ସେ ସବୁକୁ ଆଉ ଐଶ୍ୱର୍ଯ୍ୟ ବୋଲି କହିହେଉ ନାହିଁ । ସେସବୁ ଆବଶ୍ୟକତା ଓ ଐଶ୍ୱର୍ଯ୍ୟର ଫେଣ୍ଟାଫେଣ୍ଟି ସମୟର ଅନ୍ୟ ନାମ ଏଯାଏ ତିଆରି ହୋଇନାହିଁ ।

''ତୁ କଅଣ କରୁଚୁ ପପୁ ? କାଲି ପରା ତୋର ପରୀକ୍ଷା ? ଏଯାଏଁ ଟେବୁଲ୍ ପାଖକୁ ବି ଯାଇନୁ ? କଅଣ ଅଛି କାଲି ? ମେଥ୍ ନା ?'' ଶୀଳା ପଚାରିଲା ।

ପପୁ ମୋତେ ଅନେଇଲା ।

ମୁଁ ଶୀଳାକୁ ।

''ତା'ର ପରା କାଲି ଜନ୍ମଦିନ ?'' ମୁଁ ଶୀଳାକୁ କହିଲି ।

''ଜନ୍ମଦିନ ସିନା କାଲି । ଆଜିଠୁ କଅଣ ମଉଜ କରିବ କି ? ତେବେ ପରୀକ୍ଷା ପାଇଁ କଅଣ କରିବ ? ସେ ଦାୟିତ୍ୱ ତା'ର ନା ମୋର ?'' ଶୀଳା ତାକୁ କୋଳକୁ ନେଇ କହିଲା ।

ପପୁ ବୋଧେ ଦ୍ୱନ୍ଦ୍ୱରେ ପଡ଼ି ଯାଇଥିଲା । ସେ ମାଆ କୋଳରେ ଥିଲେ ମଧ୍ୟ ମୋ ଆଡ଼କୁ ସାହାଯ୍ୟ ଆଶାରେ ଅନାଉଥିଲା । ତା ଆଖିରୁ ଅନ୍ତତଃ ସେତକ ବୁଝା ପଡୁଥିଲା ।

''କାଲି ପାଇଁ ମେଥ୍ ତ ତା'ର ହେଇ ସାରିଚି । ନୁହେଁ ପପୁ ?'' କହିଲି ମୁଁ ।

ପପୁ ମୋ ମୁହଁକୁ ଚାହିଁ ହସିଦେଲା ।

''ଯାହା ପଚାରିଲେ ସବୁ କହିଦେବୁ ?'' ଶୀଳା ପଚାରିଲା ।

''ଏବେ ପଚାର'', ବଡ଼ ଦମ୍ଭର ସହିତ ସେ କହିଲା ।

ମୁଁ ଦେଖିଲି ଶୀଳା ଶଙ୍କିଗଲା । ପୁଅକୁ ସେ କୋଉ ପ୍ରଶ୍ନ ପଚାରିବ ? ମାଆ କଅଣ ପୁଅର ବଳ ଜାଣେ ନାହିଁ କି ? ତଥାପି ସେ ତାକୁ ତାର ବହି ଆଣିବାକୁ କହିଲା ।

ସେ ଚାଲିଗଲା ପରେ ମୁଁ କହିଲି, ''ସେ ତା'ର ପାଠ ବିଷୟରେ କେତେ ଦମ୍ଭର ସହିତ କହୁଚି ଦେଖୁଚ ତ ?''

-ମୁଁ ଜାଣେଁ ସେ ଖାଲି ତା ପାଠ ନୁହେଁ, ତା ଅପାର ପାଠ ମଧ୍ୟ କେତେକ ସ୍ଥାନରେ କହି ଦଉଚି । ସାଧାରଣ ଭାବେ ତା'ର ଯୋଉ ଗଣିତ ଦରକାର ତା'ଠୁ ଢେର ବେଶି ତାକୁ ଜଣା । ଅସମ୍ଭବ ସ୍ମୃତିଶକ୍ତିତା'ର । ଥରେ ଗୋଟାଏ କଥା ମନେ ରଖିଲେ ଆଉ ଭୁଲେନା । ତା କ୍ଲାସରେ ଏବେ ଦୁଇ ସଂଖ୍ୟାର ଗୁଣନ ଚାଲିଚି । କିନ୍ତୁ ସେ ଚାରି ସଂଖ୍ୟା ସହ ଦୁଇ ସଂଖ୍ୟାର ଗଣନ ମନେମନେ କହି ଦେଉଚି ।

ପପୁ ସେଆଡୁ ତା'ର ବହି ବେଗ୍‌ଟିର ଫିତାକୁ ଗୋଟିଏ ଆଙ୍ଗୁଳିରେ ଧରି ଘୋଷାରି ଘୋଷାରି ଆଣୁଥିଲା ।

ତାକୁ ଦେଖି ଶୀଳା ବିରକ୍ତ ହେଉଥିଲେ ମଧ୍ୟ ମୁଁ ଏ କଥାଟାର ଗୋଟିଏ କାବ୍ୟିକ ଅର୍ଥ ବାହାର କରୁଥିଲି । ଏତେଗୁଡ଼ାଏ ପାଠକୁ ସେ ମାତ୍ର ଗୋଟାଏ ଆଙ୍ଗୁଳିରେ ଅର୍ଥାତ୍ ଅତି ସହଜରେ ଆୟ☐ କରିଛି ବୋଲି କହୁଚି ବୋଧେ ।

ଶୀଳା କହିଲା, ''ତୋ ପାଠ ତୁ ଜେଜେଙ୍କୁ ଦେଖା । ସେ ଯଦି କହିବେ ତୁ ଆସନ୍ତା କାଲିର ପରୀକ୍ଷା ପାଇଁ ଏକଦମ୍ ପ୍ରସ୍ତୁତ ତେବେ ମୋର କିଛି କହିବାର ନାହିଁ।''

''ସେ ତ ଏବେବି କହିଦେବେ'', ପପୁ ପାଟିକରି କହିଲା । ଶୀଳା ଫେରିପଡ଼ି ମୋତେ ଦେଖିଲା ବେଳକୁ ମୁଁ ଆତ୍ମରକ୍ଷା ଉଦ୍ଦେଶ୍ୟରେ କହିଲି, ''ନା ନା ମୁଁ ତୋତେ ସେମିତିକା ସାର୍ଟିଫିକେଟ କେବେ ଦେଇ ନାହିଁ କି ଦେବିନି ମଧ୍ୟ ।''

''ନିଅ, କୋଉ ବହି ଧରୁଚ ଧର'' ସେ ଗୋଟିଏ ପରେ ଗୋଟିଏ ବହି ବେଗ୍‌ରୁ ଖୋଲି ବାହାର କଲା ଏବଂ ଟେବୁଲ୍ ଉପରେ ରଖିଲା । ''ଖାଲି ଆସନ୍ତାକାଲିର ପରୀକ୍ଷା କଥା ନୁହେଁ ଶେଷ ଦିନର ପାଠ ମଧ୍ୟ ପଚାର । କିନ୍ତୁ ଗୋଟିଏ କଥା । ମୁଁ ଯଦି ସବୁ ଠିକ୍ ଭାବେ କହିଦିଏ, ତୁମେ କଅଣ ଦେବ ?''

-ତୁ କଅଣ ନେବୁ କହ ।

ସେ ଟିକିଏ ରହିଗଲା, ତା'ପରେ କହିଲା, ''ନା, ଆଉ ନବା ଦବା କଥା ନାହିଁ । ମୁଁ ସବୁ ଠିକ୍ ଠିକ୍ କହି ସାରିଲା ପରେ, ତୁମେ ଅନୁମତି ଦେଲେ ମୁଁ ତୁମକୁ ପ୍ରଶ୍ନ ପଚାରିବି । ଏଥିରେ ରାଜି ?''

ଏଥିରେ ମୋର ରାଜି ହେବା ଛଡ଼ା ଉପାୟ ନ ଥିଲା । କିନ୍ତୁ ମୋ ମନ ଭିତରେ ଗୋଟାଏ ଭୟ ମୋତେ ସବୁବେଳେ ଡରାଉଥିଲା । ସେ ମୋତେ ଅଜବ ପ୍ରଶ୍ନ ପଚାରି ମୋ ମୁଣ୍ଡ ତଳକୁ କରିଦେବ ନାହିଁ ତ ?

ଥରେ ସେ ପଚାରିଥିଲା, ''ଆମ ସମସ୍ତଙ୍କର ନାଁ ପଛରେ ଗୋଟାଏ ସରନେମ୍ ଅଛି । ଗଡ୍‌ଙ୍କ ସରନେମ୍ କଅଣ କୁହ ?'' ଗଡ୍‌ଙ୍କ ମମି ବ୍ଲାଉଜ୍ ପିନ୍ଧନ୍ତି, ତମ ମମି କାହିଁକି ବ୍ଲାଉଜ୍ ପିନ୍ଧି ନାହାନ୍ତି । ଗଡ୍ ସାରା ପୃଥିବୀର ସମସ୍ତଙ୍କ ବାପା କେମିତି ହେଲେ ? ମୋ ବାପା ଯିଏ ତମ ବାପା ତ ସିଏ ନୁହନ୍ତି ?''

ମୁଁ ତା'ର ଅନେକ ପ୍ରଶ୍ନର ଉତ୍ତର ଦେଇ ପାରେନା । କେତେକ ପ୍ରଶ୍ନର ଉତ୍ତର ଇଚ୍ଛା କରି ମଧ୍ୟ ଦିଏନା । ଉତ୍ତର ଦେଇ ନ ପାରିବାରେ ବି ଯେ ଆନନ୍ଦ ଥାଏ ଏକଥା ମୁଁ ସେତିକିବେଳେ ଅନୁଭବ କରେଁ । ହାରିବାରେ ଯୋଉ ପ୍ରସନ୍ନତା ମିଳେ ତାକୁ ମୁଁ ମର୍ମେ ମର୍ମେ ଅନୁଭବ କରେଁ । ଠିକ୍ ସେତିକିବେଳେ ମଧ୍ୟ ମୁଁ ଦେଖେ ଜିତିବାରେ ତା ମନରେ କି ଅପୂର୍ବ ଉତ୍‌ଫୁଲ୍ଲତା । ସେ ଯେମିତି ଗଡ଼ ଜିଣି ସାରିଚି, ଜଣେ ଦିଗ୍‌ବିଜୟୀ ବୀର ପରି ।

ସେଦିନ ମୁଁ ତାକୁ ବହି ଦୋକାନରେ ଛାଡ଼ିଦେଲି ଏବଂ କହିଲି ''ଖାଲି ଗପ ବହି ନୁହେଁ, ତୁ ଯେକୌଣସି ବହି ବାଛିପାରୁ- ଯେକୌଣସି ବିଷୟର । ମୋଟ ଉପରେ ତୁ ଯାହା ନେଉଚୁ ନେ । ସବୁ ବାଛି ସାରିଲେ ମୋତେ କହିବୁ । ମୁଁ ଏଇ ଆଗରେ ବସିଛି ।'' ଦୋକାନର ମେନେଜର ମୋର ପରିଚିତ । ସାରା ସହରରେ କେବଳ ପିଲାଙ୍କ ବହି ପାଇଁ ଗଣାଗୁଣା ବହି ଦୋକାନ । ତାଙ୍କ ଦୋକାନର ବିଶେଷତ୍ୱ ହେଲା ସେ ଦୋକାନକୁ ଲାଗି ପିଲାଙ୍କ ପାଇଁ ଗୋଟାଏ ପଢ଼ାଘର ମଧ୍ୟ ରଖିଛନ୍ତି, ଶୀତତାପ ନିୟନ୍ତିତ । ଦୋକାନରେ ଯେମିତି ଓଡ଼ିଆ ଇଂରାଜୀ ଓ ହିନ୍ଦୀର ବହି ମିଳେ, ପ୍ରକୋଷ୍ଠରେ ମଧ୍ୟ ସେମିତି ଏଇ ତିନିଟି ଭାଷାର ପତ୍ରିକା ମିଳେ । ବହୁ ପତ୍ରିକା ଥାଏ । ତେଣୁ ପିଲାଙ୍କ ପାଇଁ ସର୍ବୋତ୍କୃଷ୍ଟ ସ୍ଥାନ । ସବୁବେଳେ ଦଶ ପଚାଶ ପିଲା ସେଠି ବସି ପଢୁଥାଆନ୍ତି ।

ପପୁ ଦୋକାନ ଭିତରେ ପଶି ବହି ଦେଖୁଥିବାବେଳେ ପରିଚାଳକ ମୋତେ କହିଲେ, ''ମୁଁ ତା'ର ଆଗ୍ରହ ଦେଖି ଆଶ୍ଚର୍ଯ୍ୟ ହେଉଚି । ଆମର ଏଠାକୁ ଏତେ ଛୋଟପିଲା କେବେ ଆସନ୍ତି ନାହିଁ । ମୁଁ ଭାବୁଚି ଏଣିକି ଆହୁରି ଛୋଟଛୋଟ ପିଲାଙ୍କୁ ଆକୃଷ୍ଟ କରିବା ପାଇଁ କିଛି କରାଯାଇପାରେ ।''

-ଆଉ କଅଣ କରାଯାଇ ପାରେ ବୋଲି ଆପଣ ଭାବୁଛନ୍ତି ?

ସେ କହିଲେ, ''ସେମାନଙ୍କ ପାଇଁ ଗୋଟେ ମନ୍ତବ୍ୟ ପୁସ୍ତିକା ରଖାଯାଇ ପାରିବ ।

କେବଳ ଦଶ ବର୍ଷ ତଳେ ଥିବା ପିଲାଙ୍କ ପାଇଁ । ସେମାନେ ତାଙ୍କ ନିଜ ହାତରେ ତାଙ୍କ ମନ୍ତବ୍ୟ ଲେଖିବେ ଏବଂ ଶେଷରେ ସର୍ବୋତ୍କୃଷ୍ଟ ମନ୍ତବ୍ୟ ଦେଇଥିବା ପିଲାଙ୍କୁ ବା ପିଲାମାନଙ୍କୁ କିଛି ବହି ଉପହାର ସ୍ୱରୂପ.....।''

-ବାଃ ଖୁବ୍ ଭଲ, ମୁଁ କହିଲି ।

ପପୁ ଆସିଲା । ତା ହାତରେ ମାତ୍ର ତିନି ଚାରିଖଣ୍ଡ ବହି । କିନ୍ତୁ ମୋର ମନେ ହେଲା. ଏଇ ସମୟ ଭିତରେ ସେ ବୋଧେ ସବୁ ବିଭାଗର ବହି ଦେଖିପାରି ନଥିବ ।

''ଏତେ ଜଲଦି କେମିତି ସରିଗଲା ? ତୁ ସବୁ ବିଭାଗକୁ ଯାଇନୁ ବୋଧେ ?'' ମୁଁ ଭାବିଲି ସେ ବୋଧେ ଏଠୁ ଘରକୁ ଯାଇ ଆଉଥରେ ଗଣିତ ଉପରେ ଆଖି ବୁଲାଇ ନେଇ ଆସନ୍ତା ପରୀକ୍ଷା ପାଇଁ ଅନ୍ତତଃ ଶେଷ ସ୍ପର୍ଶ ଦେଇଦେବ । ଯଦି ସେମିତି କିଛି ଇଚ୍ଛା ତା'ର ଥାଏ, ତେବେ ତାକୁ ଆଉ ବେଶି ଅଟକାଇବା ମୋର ଉଚିତ ହେବ ନାହିଁ ।

''ତୁମେ ଯଦି ନିୟମିତ ଆମର ଏଠାକୁ ଆସି ଆମ ଲାଇବ୍ରେରୀରେ ପଢ଼ାପଢ଼ି କରିବ ତେବେ ତୁମ ପାଇଁ ଆମେ ଚକୋଲେଟ୍‌ର ବ୍ୟବସ୍ଥା କରିଦେବା,'' ପରିଚାଳକ ବାବୁ ପପୁକୁ କହିଲେ ତା ପିଠିରେ ହାତ ବୁଲାଉ ବୁଲାଉ ।

ସେ ଚଟ୍‌କରି କହିଲା, ''ଅଙ୍କଲ୍ ଏଇ ଚକୋଲେଟ୍ ଖାଇ ମୁଁ ଦୁଇଟା ଆଗ ଦାନ୍ତ ହରାଇଚି । ଅପା ଏଥିପାଇଁ ମୋତେ ଚିଡ଼ାଏ । ମୋର ସବୁ ଦାନ୍ତ ଯଦି ଚାଲିଯାଏ ?''

''ଓଃ, ନା, ମୋଟେ ନୁହେଁ, ତୁମର ସବୁ ଦାନ୍ତ ଯେ ତୁମେ ଖୁବ୍ ଶୀଘ୍ର ଫେରିପାଇବ ଏକଥା ଜାଣତ ?''

ଆମେ ସମସ୍ତେ ହୋ ହୋ ହସି ଉଠିଲୁ ।

''ହଉକି କି ବହି ସବୁ ଆଣିଚୁ ଦେଖିବା'' ମୁଁ ହାତ ବଢ଼ାଇଲି । ସେ ମୋ ହାତକୁ ତିନିଖଣ୍ଡ ବହି ବଢ଼ାଇଦେଲା ।

''ଆରେ ଇଏ କଅଣ ? ଏଗୁଡିକ ତ ଗପ ବହି ନୁହେଁ । କମ୍ପ୍ୟୁଟର ବହି । ଏଗୁଡ଼ିକ ତୁ କଅଣ କରିବୁ ? ଏସବୁ ତ ତୋର ଆସନ୍ତା ବର୍ଷ କି ତା ପରେ ଦରକାର ହେବ ବୋଧେ ?''

''ମୁଁ ଜାଣେ'' ତା'ର ଉତ୍ତର ଥିଲା ଅତି ସଂକ୍ଷିପ୍ତ । ତା'ପରେ ସେ କହିଲା, ''ଚାଲ ଯିବା, ଡେରି ହେଉଚି ।''

ପପୁ ତା ବାପାର କମ୍ପ୍ୟୁଟର ପାଖରେ ବସି କମ୍ପ୍ୟୁଟର ଚାଳନା କରୁଥିବାର ମୁଁ କେତେଥର ଦେଖିଚି । ସେ ତା'ର ଅପାଠାରୁ ଏ କାମ ଶିଖିଥିବ ବୋଲି ମୁଁ ଅନୁମାନ କରୁଥିଲି । କମ୍ପ୍ୟୁଟରରେ ଖେଳ ବା ଟିଭିରେ ଭିଡ଼ିଓ ଗେମ୍ ପ୍ରତି ତା'ର ସେତେ ଆଗ୍ରହ ନାହିଁ । ସେ ତାଠାରୁ ଅନେକ ଆଗୁଆ । ସେ ଜଣେ ବଡ଼ ମଣିଷଙ୍କ ପରି କମ୍ପ୍ୟୁଟର କେମିତି ବ୍ୟବହାର କରିବ ସେଥିରେ ତାର ଆଗ୍ରହ ବେଶୀ । ତା ଅପା ଯେତେବେଳେ କମ୍ପ୍ୟୁଟରର

ବ୍ୟବହାର ପ୍ରଣାଳୀ ବହି ଦେଖି ପ୍ରାକ୍ଟିସ୍ ଆରମ୍ଭ କରେ ସେତେବେଳେ ସେ ତା ପାଖରେ ବସି ଦେଖୁଥାଏ ।

''ତୁ ଏସବୁ ବହି ନେଇ କଅଣ କରିବୁ ପପୁ ?'' ମୁଁ ଆସିଲାବେଳେ ପଚାରିଲି ।

କାର୍‌ରେ ବସି ସେ ସେତେବେଳେ ବହିଗୁଡ଼ିକ ମନଯୋଗ ସହକାରେ ଦେଖୁଥିଲା ।

''କମ୍ପ୍ୟୁଟରକୁ ହରେଇ ହେବ ?'' ମୁଁ ଥମ୍ ହେଇଗଲି । ପପୁ କମ୍ପ୍ୟୁଟରକୁ ହରେଇବାକୁ ଚାହୁଁଛି ? ସେ ଯେ ଖାଲି ପ୍ରଶ୍ନ ପରେ ପ୍ରଶ୍ନ ପଚାରି ମୋତେ ହରେଇବାକୁ ଚାହୁଁଚି ତା ନୁହେଁ, ସେ ଏବେ କମ୍ପ୍ୟୁଟରକୁ ମଧ୍ୟ ହରେଇବାକୁ ଚାହୁଁଚି । କାରଣ ସେ କେବେ ହାରିବାକୁ ଚାହେଁନା । ମୁଁ ଆଶ୍ଚର୍ଯ୍ୟ ହେଲି ତା'ର ଏ ପ୍ରଶ୍ନ ଶୁଣି ।

ହାରିବାକୁ ଚାହୁଁ ନଥିଲେ ନେପୋଲିଅନ ବୋନାପାର୍ଟ । ହାରିବାକୁ ଚାହୁଁ ନଥିଲେ ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର । ମୃତ୍ୟୁ ଅପେକ୍ଷା ପରାଜୟକୁ ସେ ଅଧିକ ଅପମାନଜନକ ଓ ଯନ୍ତ୍ରଣାଦାୟକ ମନେ କରୁଥିଲେ । ତାଙ୍କ ପାଇଁ ସମୟଟା ଅନେକ ଛୋଟ ଥିଲା । ଦିଗ୍‌ବିଜୟୀ ବୀରମାନେ ସବୁବେଳେ ଚାହାନ୍ତି ସମୟଟା ଖୁବ୍ ଲମ୍ବା ହେଇଥାଆନ୍ତା କି ?

ଏକବିଂଶ ଶତାବ୍ଦୀର ସବୁଠାରୁ ଶକ୍ତିଶାଳୀ ମାଧ୍ୟମ ହେଲା କମ୍ପ୍ୟୁଟର । ସମଗ୍ର ପୃଥିବୀକୁ ସେ ତା ହାତମୁଠାରେ ରଖିଚି । ସେ ମଣିଷକୁ ଅତିକ୍ରମ କରିଯାଇଚି । ଦେବତା ତା'ର ଅନେକ ପଛରେ । ଖାଲି ପୃଥିବୀ ନୁହେଁ, ସମଗ୍ର ସୌର ମଣ୍ଡଳ ତା ଭିତରେ । ଆଜି ପପୁ ସେଇ ମହାନ୍ ଦିଗ୍‌ବିଜୟୀ କମ୍ପ୍ୟୁଟରକୁ ନିଜ ହାତମୁଠାରେ ରଖିବାକୁ ଚାହୁଁଚି । ସେ ତାକୁ ଅତିକ୍ରମ କରିବାକୁ ଚାହୁଁଚି ।

ଗୋଟାଏ ଅନନୁଭୂତ ଆନନ୍ଦର ଆତିଶଯ୍ୟରେ ମୁଁ ତାକୁ ମୋ କୋଳକୁ ଆଉଜେଇ ନେଲି । ମୋ ଆଖି ଦୁଇଟି ଲୁହରେ ଭିଜି ଯାଇଥିଲା ।

(ଆରୋହଣ, ପୂଜା ୨୦୦୫)

# ସିଧାବାଟ

ଭଗବାନ ଦାସଙ୍କୁ ସେଦିନ ସକାଳ ନଅଟାବେଳେ ଅଫିସ ଗେଟ ଖୋଲି ଭିତରକୁ ପଶିବାର ଦେଖି ରଘୁନାଥ ଆଖି ତରାଟି ଦେଖିଲା । ସେ ତା ଆଖିକୁ ବିଶ୍ୱାସ କରି ପାରୁଲାନି । ବଡ଼ବାବୁ କେମିତି ଆଜି ସକାଳୁ ଅଫିସକୁ ଆସିଗଲେ ? କାହିଁକି ? ପ୍ରତିଦିନ ତ ସେ ଆସନ୍ତି ଏଗାରଟାରେ । ତା ପୂର୍ବରୁ ରଘୁନାଥ ତାଙ୍କୁ କେବେ ଅଫିସ ଗେଟ୍ ଖୋଲିବାର ଦେଖିନାହିଁ । ଅନ୍ତତଃ ତାର କୋଡ଼ିଏ ବର୍ଷ ଚାକିରି ଭିତରେ ନୁହେଁ । କୌଣସି ବଡ଼ବାବୁ ଏଗାରଟା ପୂର୍ବରୁ ଅଫିସ ଆସନ୍ତି ନାହିଁ । ତାର କୋଡ଼ିଏ ବର୍ଷ ଚାକିରି ଭିତରେ ସେ ଦୁଇଜଣ ବଡ଼ବାବୁଙ୍କୁ ଦେଖି ସାରିଲାଣି । ତାର ତ ଅନେକ ଦିନ ଯାଏ ଧାରଣା ଥିଲା ଯେ ବଡ଼ବାବୁଙ୍କର ଅଫିସ ଏଗାରଟାରେ ଆରମ୍ଭ ହୁଏ । ତାଙ୍କ ତଳ ବାବୁମାନଙ୍କ ଅଫିସ ହୁଏତ ସେଇ ତାର ଟିକିଏ ଆଗରୁ ଆରମ୍ଭ ହେଉଥିବ କି କଅଣ ? କାହାର କେତେବେଳେ ଅଫିସ ସେକଥା ଜାଣିବା କଅଣ ଦରକାର ? ସେ କେବଳ ତା ନିଜ କାମ କଥା ଜାଣେଁ । ସେ ଜାଣେ ତା କାମ ଆରମ୍ଭ ହୁଏ ସୂର୍ଯ୍ୟୋଦୟ ପୂର୍ବରୁ ଏବଂ କାମ ସରେ ଚନ୍ଦ୍ରାସ୍ତ ପରେ । ମମସ୍ତେ ଯିବେ । ବଡ଼ବାବୁ ଯିବେ । ଗେଟ୍‌ରେ ତାଲା ପଡ଼ିବ । ସବୁ କୋଠରୀର ତାଲା ପଡ଼ିବ । ଏତେବଡ଼ ଅଫିସ ପଛପଟେ ଥିବା ଗୋଟିଏ କୋଣରୁ ପାଚେରୀକୁ ଲାଗି ଯୋଡ଼ି ହୋଇଥିବା ତାର ବଖୁରିଆ ଘରକୁ ଫେରେ, ସେତେବେଳେ ତାକୁ ଜଣାପଡ଼େ ନାହିଁ ଏଇଟା କୃଷ୍ଣପକ୍ଷ ନା ଶୁକ୍ଳପକ୍ଷ ।

ଘର କୋଣରେ ସେତେବେଳକୁ ସୁମତୀ ବସି ଢୁଳଉଥାଏ । କିନ୍ତୁ ସେ ହୁଏତ ବୁଝିପାରେ ଯେ ଉପର ମହଲରୁ ଲାଇଟ ଲିଭିଲା ମାନେ, ଏଇ ଆଉ ଟିକେନାକୁ ପରେ ରଘୁନାଥ ବିରାଟ ଚାବିପେନ୍ଥାଟା ଧରି ଆସି ପହଞ୍ଚିବ । ତା'ସଙ୍ଗେ ଆସୁଆସୁ ଅଧଘଣ୍ଟାଏ । ସୁମତୀକୁ ନିଦ ମାଡ଼େ । ପିଲାମାନେ ଖାଇପିଇ ଶୋଇ ପଡ଼ନ୍ତି । ଖାଲି ଆଖି ମେଲି ସତର୍କ ଦୃଷ୍ଟିରେ ଚାହିଁଥାଏ ସରକାରଙ୍କର 'କୁଟୀର ଜ୍ୟୋତି ଯୋଜନା'ର ଶହେ ବି ନୁହେଁ, ଷାଠିଏ ପାୱାରର ଏକମାତ୍ର ବିଜୁଳି ବଲବକୁ । ବଡ଼ ବିଶ୍ୱସ୍ତ ଏକା । ମୋଟେ ଧୋକା ଦିଏନି । ପାୱାର ପ୍ରାୟ ଯାଏନା ।

ରଘୁନାଥ ବଡ଼ବାବୁଙ୍କୁ ଗେଟ୍ ପାଖରେ ଦେଖି ତାଙ୍କ ପାଖକୁ ଦୌଡ଼ିଗଲା ଏବଂ କୁଞ୍ଚି ଝାଡୁଟାକୁ କାଖରେ ଜାକି ଦେଇ ଦୁଇହାତ ଯୋଡ଼ି ଅଣ୍ଟାଠାରୁ ତଳକୁ କାଣ୍ଡପରି ବଙ୍କେଇ ଜୁହାର ହେଲା । ତା'ପରେ ସିଧା ହେଇ ଠିଆ ହେଲାପରେ ପଚାରିଲା- ହଜୁର, ଆଜି କେମିତି ? ସେ ସେଇଠି ଅଟକିଗଲା । ଅଧିକ କିଛି କହି ପାରିଲାନି । ତା'ପରେ ଆଉ ଅଧିକ କି କି ଶବ୍ଦ ଲାଗିବ ସେତକ ତାକୁ ଆସିଲାନି । ସେ ତ କେବେ କାହାକୁ କିଛି ପଚାରେନି । କଅଣ ବା ପଚାରନ୍ତା ? ସେ ଭାବିଲା ସେଇ ସେତକରେ ବଡ଼ବାବୁ ସବୁ କଥା ବୁଝିଯିବେ ।

ସତକୁ ସତ ବଡ଼ବାବୁ ବୁଝିଗଲେ । ଗେଟ୍ ପାଖରୁ ଅଫିସ ଯାଏ ଯେତିକି ଦୂର, ସେତିକି ଅତିକ୍ରମ କରିବାକୁ ଯୋଉ ବଙ୍କା ପିଚୁ ରାସ୍ତା ତିଆରି ହେଇଚି ସେତକ ଅତିକ୍ରମ କରିବାକୁ ଯଥେଷ୍ଟ ସମୟ ଲାଗୁଥିବାରୁ ଭଗବାନ ବାବୁ ସିଧା ଲନ୍ ଉପର ଦେଇ ଚାଲିବାକୁ ଆରମ୍ଭ କରନ୍ତେ ରଘୁନାଥ ଚଟ୍‌କରି କହି ପକେଇଲା- ହଜୁର ଜୋତା ଖରାପ ହେଇଯିବ ବୋଧେ । ସକାଳୁ ସକାଳୁ ପାଣି ମଡ଼େଇ ଦେଇଥିଲି ।

ଓହୋ ଟିକିଏ ଆଗରୁ କହିଲୁନି । ବଡ଼ବାବୁ କହିଲେ ଏବଂ ପୁଣି ଜୋତାକୁ ଦେଖି ଦେଖି ଚାଲିବାକୁ ଆରମ୍ଭ କଲେ ।

ହଁ, ତୁ କଅଣ କହୁଥିଲୁ ? ଏତେ ଆଗରୁ କାହିଁକି ?

ରଘୁ ମୁଣ୍ଡ କୁଣ୍ଡେଇଲା । ଏମିତିକା କଥାଟିଏ ସେ ବଡ଼ବାବୁଙ୍କୁ ପଚାରି ପାରେ କି ? ପଚାରିବା ଉଚିତ ହେଲା ନାହିଁ ବୋଧେ । ସେ ଥତମତ ହେଲା ।

ବଡ଼ବାବୁ ବାରଣ୍ଡାକୁ ଉଠିବା ପୂର୍ବରୁ ବୁଲିପଡ଼ି ଥରେ ଲନ୍‌କୁ ଦେଖିଲେ ଏବଂ ଆଉଥରେ ବୁଲାଣି ପିଚୁ ରାସ୍ତାଟିକୁ ଦେଖିଲେ । ଏତେ ଲମ୍ବା ରାସ୍ତାଟି ଅଫିସକୁ ଆସିବାକୁ ସରକାର କାହିଁକି କରିଚନ୍ତି ବୁଝିପାରୁ ନ ଥିଲେ । ଲମ୍ବା ଓ ବଙ୍କା ରାସ୍ତାଟା ଶକ୍ତ ଓ କର୍କଶ ଅଥଚ ସିଧା ଲନ୍ ଉପର ଦେଇ ଆସିବାରୁ ତାଙ୍କୁ ବେଶ୍ ନରମ ଜଣା ପଡ଼ିଲା । କେତେ କମ୍ ସମୟରେ ପହଞ୍ଚି ଗଲେ ସେ ।

ରଘୁ ! ମୁଁ ଅନେକ କମ୍ ସମୟରେ ଏଠି ପହଞ୍ଚିଗଲି ତ ?

ହଜୁର, ଆପଣ ବରାବର ଏମିତି ଆସି ଯାଉ ନାହାନ୍ତି ? ରଘୁ କହିଲା ।

ବଡ଼ବାବୁ ରଘୁକୁ ଅନେଇଲେ । ତା'ପରେ କଅଣ ଭାବିଲେ କେଜାଣି କିଛି ନକହି ପାହାଚ ଦୁଇଟା ଚଢ଼ି ପଡ଼ିଥିବା ପା'ପୋଛରେ ବାରମ୍ବାର ଗୋଡ଼କୁ ପୋଛି ଟିକିଏ ଠିଆ ହେଲେ ଏବଂ ଭାବିଲେ ମୁଁ ସିନା ଆସିଯିବି ସିଧା ରାସ୍ତା ବୋଲି, ସମସ୍ତେ ଯଦି ଏଇ ରାସ୍ତାରେ ଆସନ୍ତି ? ନା ଉଚିତ୍ ନୁହେଁ । ଲନ୍‌ର ସୌନ୍ଦର୍ଯ୍ୟ ଖରାପ ହେଇଯିବ । ହଜାର ହଜାର ଟଙ୍କା ସରକାର ମାସକୁ ଖର୍ଚ୍ଚ କରୁଛନ୍ତି ଏଇ ଘାସକୁ ବଢ଼େଇବା ପାଇଁ । ତାକୁ ଦେଖିବା ପାଇଁ, ତାର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ, ଅଫିସର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ । ତା ଉପରେ ଚାଲିବା ପାଇଁ ନୁହେଁ । କିନ୍ତୁ ଯଦି ଜରୁରୀ ଆବଶ୍ୟକ ପଡ଼େ ତେବେ ସେ ସିଧା ରାସ୍ତାଟିକୁ କେତେବେଳେ ଯଦି ବ୍ୟବହାର କରନ୍ତି

ତେବେ କ୍ଷତି କଅଣ ?

ଭଗବାନ ବାବୁ ଅଫିସ ଭିତରକୁ ଯାଇ ତାଙ୍କ ଚେଆର ସାମ୍ନାରେ କାନ୍ଥରେ ଥିବା ଅନେକଗୁଡ଼ିଏ ଫଟୋକୁ ଜୁହାର ହେଲେ ଏବଂ ତା'ପରେ ଚେଆର ପାଖକୁ ଯାଇ ହଠାତ୍ ତାଙ୍କର ପଛ ପାଖ କାନ୍ଥରେ ନଜର ପଡ଼ିବାରୁ ସେ ପାଟି କଲେ- ରଘୁ । ଏ ରଘୁ ।

ରଘୁ ଭିତରକୁ ପଶି ଆସିଥିଲା, ତା'ପରେ ମନେ ପଡ଼ିଯିବାରୁ ଫେରିଯାଇ ଝାଡ଼ୁଟାକୁ ଫୋପାଡ଼ି ଦେଇ ଆସି ଠିଆ ହେଲା । ବଡ଼ବାବୁ ସେତେବେଳକୁ ଅତ୍ୟନ୍ତ ଚିନ୍ତାମଗ୍ନ । ରଘୁ ମଧ୍ୟ ଚିନ୍ତିତ ହୋଇପଡ଼ିଲା । ଏପରି କଅଣ କାରଣ ଥାଇପାରେ ଯୋଉଥି ପାଇଁ ବଡ଼ବାବୁ ଏତେ ଚିନ୍ତାମଗ୍ନ ହୋଇ ପଡ଼ିଲେ ?

ଏଠି ଯେ ଫଟୋ ଥିଲା ତାକୁ କିଏ ନେଲା ?

ହଜୁର ଠାକୁର ଫଟୋ କିଏ କାହିଁକି ନେବ ? ତା ହାତ.....

ଧେତ୍, ଠାକୁର ନୁହେଁ, 'ମହାତ୍ମା ଗାନ୍ଧୀ' ।

ହଜୁର ଏକା କଥା । ତାଙ୍କୁ ବି ତ ଆମେ ପୂଜା କରୁଁ ।

ଭଗବାନ ବାବୁଙ୍କ ଭିତରେ ସେତେବେଳେକୁ ଗୋଟାଏ ଅସମ୍ଭାଳ ଅବସ୍ଥା । ସେ ତାଙ୍କ ଅଫିସକୁ ଲାଗି ମେନ୍ ଅଫିସ ହଲ୍ ଭିତରକୁ ପଶିଯାଇ ସବୁ କାନ୍ଥକୁ ଦେଖିଲେ । କୌଣସି ଗୋଟିଏ ବୋଲି ଫଟୋ ତାଙ୍କ ନଜରକୁ ଆସିଲା ନାହିଁ । ସେ ବ୍ୟସ୍ତ ହୋଇ ପଡ଼ିଲେ । ଆଜି ଦିନରେ ଯଦି ସେ ଫଟୋଗୁଡ଼ିକ ନ ଥାଏ ତେବେ କଅଣ ହେବ ? ତାଙ୍କର ମନେ ପଡ଼ିଲା ଦୁଇବର୍ଷ ତଳେ ସେଥିରୁ ଗୋଟିଏ ଫଟୋ ତଳେ ଖସିପଡ଼ି ଭାଙ୍ଗିଯିବାରୁ ଅନ୍ୟସବୁ ଫଟୋ ଖୋଲି ଜୁନିଅର କ୍ଲର୍କ ସଦାନନ୍ଦ ଯିଏ କି ସେତେବେଳେ ଷ୍ଟେସନାରୀ ଓ ଷ୍ଟୋର୍ ଦାୟିତ୍ୱରେ ଥିଲେ ତାଙ୍କୁ ଦିଆଯାଇଥିଲା ନୂଆକରି ବନ୍ଧେଇକରି ଆଣିବାକୁ । ଏଥିପାଇଁ ମଧ୍ୟ ତାଙ୍କର ମନେ ପଡ଼ିଲା ସେତେବେଳେ ୫୭୦ ଟଙ୍କା ମଞ୍ଜୁର କରାଯାଇଥିଲା । ୫୭୦ ଟଙ୍କା ଆଡ଼ଭାନ୍ସ ମଧ୍ୟ ଦିଆଯାଇଥିଲା । ତାଙ୍କର ଏକଥା ମଧ୍ୟ ମନେ ପଡ଼ିଲା ସେଇ ଟଙ୍କାରେ ତାଙ୍କ ନିଜ ଘର ଡ୍ରଇଂରୁମ୍‌ରେ ଥିବା ଶ୍ରୀଗୁରୁ ଓ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଦୁଇବାହୁ ଟେକି ସମ୍ପୂର୍ଣ୍ଣ ସମର୍ପଣରେ ଲାଇଫ୍‌ସାଇଜ୍ ଫଟୋ କୋ-ଅପରେଟିଭ୍ ମାର୍କେଟରୁ ବନ୍ଧେଇ କରି ଅଣାଯାଇଥିଲା । ସେଗୁଡ଼ିକ ଘରେ ବରାବର ପୂଜା ପାଉଛନ୍ତି । ତେବେ ଏ ଫଟୋସବୁ ଗଲା କୁଆଡ଼େ ? ସଦାନନ୍ଦ କଅଣ ଆଣି ନାହିଁ ଏ ଯାଏ ? ଏବେ ସେ ଷ୍ଟୋର୍ ଦାୟିତ୍ୱରୁ ଯାଇ ଉପର ମହଲାରେ ଜେନେରାଲ ସେକ୍ସନରେ ଅଛି । ସେ ଯଦି ଆଣି ନଥାଏ ତେବେ ସେ କଅଣ ଏବେ ଧରାଛୁଆଁ ଦେବ ? ଲୋକଟାର କଥାବାର୍ତ୍ତା ମୋଟେ ଭଲ ନୁହେଁ । ଏବେ ତ ବାଟରେ ଦେଖିଲେ ମଧ୍ୟ ଦେଖୁନାହିଁ । କଅଣ ହେବ ଏବେ ? ସେ ମନେ ପକେଇବାକୁ ଚେଷ୍ଟା କଲେ, ସଦାନନ୍ଦ କଅଣ ସେ ଆଡ଼ଭାନ୍ସର ଫାଇନାଲ ବିଲ୍ ଦେଇ ଆଡ୍‌ଜଷ୍ଟ କରି ସାରିଚି ? ଏବେ ତାକୁ ପଚାରିଲେ ସେ ଯଦି ତାଙ୍କ ନାତୁଣୀର ଫଟୋ କଥା କହିଦିଏ ? ସେଇଟା ବି ତ ସେଇ ପଇସାରେ ହୋଇଥିଲା ।

ଫେନ୍‌ଟା ଫୁଲ୍ ସ୍ପିଡ୍‌ରେ ବୁଲୁଥିଲେ ମଧ୍ୟ ଭଗବାନ ବାବୁଙ୍କ ଦେହରୁ ଗମଗମ ଝାଳ ବହି ଯାଉଥିଲା । ସେ ଡ୍ରରୁ କନାଟିଏ ବାହାର କରି ମୁହଁ ପୋଛିବାକୁ ଯାଉଥିଲାବେଳେ ରଘୁ କହିଲା- ହଜୁର, ସେଇଟାରେ ଟେବୁଲ ପୋଛାଯାଏ । ପୋଛା ଯାଇଥିବା ଟେବୁଲକୁ ସେ ଆଉଥରେ ପୋଛିଲେ ନିଜର ଭୁଲ୍‌କୁ ଲୁଚାଇବା ପାଇଁ ଏବଂ କହିଲେ- ''ଦେଖିଲୁ ଷ୍ଟୋର କ୍ଲର୍କ ଅନନ୍ତବାବୁ ଆସିଲେଣି କି ନାହିଁ ।''

ରଘୁ ଫେରି ଆସିଲା ଏବଂ କହିଲା- ''ସେ ଘରେ ଏଯାଏ କେହି ଆସି ନାହାନ୍ତି ।'' ''କେହି ଆସି ନାହାନ୍ତି ?'' ସେ ଭାବିଲେ ଅଫିସ ଖୋଲିବା ସମୟ ଦିନ ନଅଟା, କିନ୍ତୁ ଆସିବା ସମୟ ତ ସାଢ଼େ ଦଶ- ଅବଶ୍ୟ ଯଦି ଟ୍ରେନ୍ ଓ ବସ୍‌ଗୁଡ଼ିକ ଠିକ୍ ସମୟରେ ଆସୁଥାଏ । କିଏ କହିବ ସେମାନେ କେତେବେଳେ ଆସିବେ ? କିନ୍ତୁ ଆଜି ? କଅଣ ହେବ ଯଦି....

''ସାର୍ ! ଆପଣ ଆଜି ଏତେ ଆଗରୁ ? ଏବେ ତ ମାତ୍ର ସାଢ଼େ ଦଶଟା ବାଜିଚି ।'' ଏଇ ଛ'ମାସ ହେଲା ଷ୍ଟେନୋ ଟାଇପିଷ୍ଟ ହିସାବରେ ଜଏନ୍ କରିଥିବା ସଂଯୁକ୍ତା ମହାନ୍ତି ଭିତରକୁ ପଶିଆସି ହାତଘଡ଼ିକୁ ଅନାଇ ପଚାରିଲା ।

''ଆଜିର ପ୍ରୋଗ୍ରାମ୍ ବିଷୟରେ ତୁମେମାନେ ନ ଜାଣିଥିଲା ଭଳିଆ ପଚାରୁଚ ଯେ ? ସବୁକଥା ଜାଣିଲା ପରେ ଯଦି ଏତେବେଳେ ଆସିବ ତେବେ ଆଉ କଅଣ କରିବା ?'' ସେ ତଳକୁ ମୁହଁ ପୋତି କହିଲେ ।

ସଂଯୁକ୍ତା ତାଙ୍କ କଥା ଶୁଣିଲା କି ନାହିଁ କେଜାଣି । ସେ ଆଉ ଗୋଟାଏ ଟେବୁଲ ଉପରେ ଥୁଆ ହେଇଥିବା ଉପସ୍ଥାନ ରେଜିଷ୍ଟର ଆଣି ଦସ୍ତଖତ କରି ବେଗ୍‌ଟାକୁ କାନ୍ଧରେ ସଜାଡ଼ି ଧରି ଚାଲିଗଲା ।

''ତୁମେ ଯାଉଚ ସଂଯୁକ୍ତା ? ଅନନ୍ତ ଆସିଥିଲେ ତାକୁ ଟିକେ ଡାକିଦେବ ? କହିବ ଜରୁରୀ କାମ ଅଛି ।''

''ମୁଁ ତ ଏବେ କେଣ୍ଟିନ୍ ଯାଉଚି । ଆଜି ଜଲ୍‌ଦି ଆସିବାକୁ ଥିବାରୁ ଜଳଖିଆ ଆଉ ଖାଇପାରିଲି କୋଉଠି ? ତେବେ ମୁଁ ଶୀଘ୍ର ଫେରିଆସିବି ।''

ଭଗବାନବାବୁ ଜାଣନ୍ତି ସଂଯୁକ୍ତା ବରାବର କେଣ୍ଟିନରେ ହିଁ ଚା' ଜଳଖିଆ ଖାଇଥାଏ । କୋ-ଅପରେଟିଭ୍ କେଣ୍ଟିନ୍‌ରେ ଭଲ ଜଳଖିଆ, ଚା', କଫି ଓ କୋଲ୍ଡ ଡ୍ରିଙ୍କ୍ ମିଳେ । ତା'ଛଡ଼ା ସେଠି ମଧ୍ୟ ଆରମ୍ଭ ହୋଇଥାଏ ଭଲ ଆଲୋଚନା, ରାଜନୀତିଠାରୁ କ୍ରିକେଟ ଯାଏ କିମ୍ବା ଟିଭି ସିରିଏଲ୍‌ଠାରୁ ଦେଶର ହାଲଚାଲ ଯାଏ । ସଂଯୁକ୍ତା ଷ୍ଟେନୋ ଟାଇପିଷ୍ଟ । ତାକୁ ଅନ୍ୟ କାମ ଦେଇହେବ ନାହିଁ ଜାଣି ସେ କେଣ୍ଟିନ୍‌ରୁ ଫେରେ ଏଗାରଟା ପରେ ।

ଭଗବାନବାବୁ ବଡ଼ ଅସ୍ୱସ୍ତି ବୋଧ କରୁଥିଲେ । ଯା' ଭିତରେ ଅବଶ୍ୟ ସବୁ ଅଫିସ ଷ୍ଟାଫ୍ ଆସିଗଲେଣି । କାମ ମଧ୍ୟ ଆରମ୍ଭ ହେଇଗଲାଣି । ତେଣୁ ସେ ଦିଗରୁ ବଡ଼ବାବୁ ଏକ ପ୍ରକାର ନିଶ୍ଚିତ ଥିଲେ ମଧ୍ୟ ଫଟୋ କଥାଟିରେ ତାଙ୍କ ମନ ମୋଟେ ଥୟ ଧରୁ ନଥିଲା । ଏକ

ପ୍ରକାର ମାନସିକ ଅସ୍ଥିରତା ତାଙ୍କୁ ବ୍ୟସ୍ତ କରି ପକାଉଥାଏ ।

ସେ ବେଲ୍ ଚିପିଲେ ।

ଚପରାଶୀ ପହଲି ଆସି ଛିଡ଼ା ହେଲା ।

''ଦେଖିଲ ଅନନ୍ତ ବାବୁ ଆସିଲେଣି କି ନା । ଯଦି ଆସିଥାଆନ୍ତି ତାଙ୍କୁ ଡାକି ଆଣିବ ।''

ଅନନ୍ତବାବୁ ଆସିଲେ ।

''ମୁଁ ତୁମକୁ ଘଣ୍ଟାଏ ହେଲା ଖୋଜୁଚି । ବସ ଏଇଠି । ଏଇ ପାଖରେ ।'' ତା'ପରେ ସେ ତାଙ୍କ କାନ ପାଖକୁ ମୁହଁ ନେଇ କହିଲେ ଫଟୋ କଥା ।

''ମ । ଏଇ କଥାକୁ ଆପଣ ଏତେ ବ୍ୟସ୍ତ ।'' ଅନନ୍ତ କହିଲେ ।

''ହଇହୋ ଆଜି ପରା ବଡ଼ ହାକିମ ଜଏନ କରିବେ ? ତୁମେ ଜାଣିନ ଏକଥା ? ତାଙ୍କର ଆଗ ଡିପାର୍ଟମେଣ୍ଟରେ କେତେ ସୁନାମ ଥିଲା । ତୁମେ ତ ଜାଣିଥିବ । ଚାର୍ଜ ରିପୋର୍ଟରେ ଦସ୍ତଖତ କଲାପରେ ସେ ଯେତେବେଳେ ଅଫିସ ବୁଲି ଆସିବେ, ନଜର ପଡ଼ିବ ନାହିଁ ସେତେବେଳେ ଫଟୋ ଉପରେ ? ସେତେବେଳେ ?''

''ବୁଝିଲି ସେ କଥା । ଫଟୋଗୁଡ଼ାକ ଅବଶ୍ୟ ଷ୍ଟୋର ଭିତରେ ଅନେକ ଦିନ ହେଲା ପଡ଼ିଥିଲା । ରଖିବାକୁ ଜାଗା କାହିଁ ? ଏବର୍ଷ ଜାନୁଆରୀ ମାସରେ ଯୋଉ ଡିପାର୍ଟମେଣ୍ଟାଲ ଡ୍ରାମା ହେଇଥିଲା, ସେତେବେଳେ ମହାତ୍ମାଙ୍କ ଫଟୋଟା ସେମାନେ ନେଇଥିଲେ । ତା'ପରେ ମୋର ଆଉ ମନେ ନାହିଁ ।''

''ଆଚ୍ଛା ବନ୍ଧେଇ ହେଇଚି କି ନାହିଁ କହିଲ ?''

''ତାକୁ ବନ୍ଧେଇ କରିବାର ଥିଲା କି ? କାହିଁ ମୋତେ ତ ଏକଥା କେହି କହିନାହିଁ । ମୁଁ ଆସିବା ଦିନୁଁ ସେଗୁଡ଼ିକ ସେଠି ପଡ଼ିଥିବାର ଦେଖୁଚି । ରୁହନ୍ତୁ ମୁଁ ଦେଖି ଆସୁଚି ।'' ସେ ଉଠିପଡ଼ିଲେ ।

''ଏ ବାବୁ ! ଶୁଣ ମୁଁ କହୁଚି । ବନ୍ଧେଇ ହେଇଥାଉ କି ନଥାଉ ଏବେ ତାକୁ ଟିକିଏ ପୋଛାପୋଛି କରି ଟଙ୍ଗେଇ ଦେଲ । ବାକି କଥା ପରେ ବୁଝିବା । ଆଉ ଶୁଣ, ଗାନ୍ଧୀ ବୁଢ଼ା ଯଦି ନଥିବ ତା' ଭିତରେ, ତେବେ ଜଲ୍‌ଦି ନୂଆଟିଏ ଆଣି ଏଠି ଝୁଲେଇ ଦିଅ । ଯାହା ପଡୁଚି କେଶ୍ ସେକ୍‌ସନରୁ ନେଇଯାଅ । କିନ୍ତୁ ଜଲ୍‌ଦି ।''

''ଆପଣ ଏଇ କଥା ପାଇଁ ଏତେ ବ୍ୟସ୍ତ ? କାହିଁକି ସେଠି ଆଉ କାହାର ଗୋଟାଏ ଆଣି ଝୁଲାଇ ଦେଲେ ହେବନି ?'' ଅନନ୍ତ କହିଲେ ।

''ଏ ବାବୁ ଅନନ୍ତ ! ତୁମେ କଥାଟା ବୁଝ । ଯେକୌଣସି ଫଟୋ ନେଇ ସେଠି ଝୁଲେଇ ହେବ, ଏକଥା ଠିକ୍ । ସବୁ ଯଦି ସିଧା ଚାଲିଯାଏ ତେବେ ଖୁବ୍ ଭଲ । ଆଉ ଯଦି ନହୁଏ ? ଲୋକଟା ଆସୁଆସୁ ଡିସ୍‌ପ୍ଲେଜରଟାକୁ ନିମନ୍ତ୍ରଣ କରିଆଣି ଘରେ ବସେଇବା ? ତୁମେ ଯାଅ, ମୁଁ ଯାହା କହିଲି ସେଇଟା କର । ଏବେ ଯାଇ ଟିକେ ଦେଖିଲ କି ଅବସ୍ଥାରେ ଅଛି ସେଗୁଡ଼ାକ ।

ତାଙ୍କୁ କାମରେ ଲଗେଇ ହବ କି ନା । ମୋର ଖାଲି ଭୟ କଅଣ ଜାଣ ? ଫଟୋ ଏତେଦିନ ଯାଏ ନଥିଲା । କଅଣ ଭାସି ଯାଉଥିଲା କହିଲ ? କେହି ପଚାରୁଥିଲେ ? କିନ୍ତୁ ଏ ଲୋକଟା ମୋଟେ ଭଲ ନୁହେଁ ।''

ଅନନ୍ତବାବୁ ଫେରି ଆସିଲେ ଦୁଇଘଣ୍ଟା ପରେ । କହିଲେ- ''ଆଜ୍ଞା ଅନେକ ଖୋଜାଖୋଜି ପରେ ଗୋଟାଏ କୋଣରେ ପୁରୁଣା ଖବର କାଗଜ ଗଦା ପାଖରେ ପାଇଲି । ମୋଟ ଆଠଟା, ଆମ ରେକର୍ଡ଼ ଅନୁସାରେ । ସମସ୍ତେ ଅଛନ୍ତି । ଖାଲି ଗାନ୍ଧୀ ମହାତ୍ମା ନାହାନ୍ତି । ମୁଁ କହୁ ନଥିଲି, ତାଙ୍କୁ ସେମାନେ ଡ୍ରାମା କରିବେ ବୋଲି ନେଇଥିଲେ । ଏଯାଏ ଫେରେଇ ନାହାନ୍ତି । ମୁଁ ଲଞ୍ଚ ପରେ ଯାଉଚି । ସେଠୁ ନେଇ ଆସିବି ।''

ବଡ଼ବାବୁ କହିଲେ, ''ହେ ଭଗବାନ! ଆଜି କି ବିପଦ ତୁମେ ମୋ ପାଇଁ ରଖିଚ କେଜାଣି । ସମସ୍ତେ ଅକ୍ଷତ ଅଛନ୍ତି । କେବଳ ମହାତ୍ମା ନାହାନ୍ତି ?''

''ଅକ୍ଷତ ମାନେ ଆଉ କଅଣ ? କାହାର ମୁଣ୍ଡ ଅଛି ତ ହାତଗୋଡ଼ ନାହିଁ । କାହାର ହାତ ଗୋଡ଼ ଅଛି ତ ମୁଣ୍ଡ ନାହିଁ । ଆଉ କାହାର ସେସବୁ ଅଛି ତ ଆଖି କାନ ନାହିଁ । ପୋକ ଖାଇ ଦେଇଚି ।'' କହିଲେ ଅନନ୍ତବାବୁ ।

''ମୁଁ କିନ୍ତୁ ସେଥିପାଇଁ ଚିନ୍ତିତ ନୁହେଁ । ଅନ୍ୟଗୁଡ଼ିକ ପରେ ସଜାଡ଼ି ଦେଲେ ହେବ କିମ୍ବା ବଜାରରୁ, ଆଜିକାଲି କେତେ ଭଲ ଭଲ ମିଳୁଚି, ସେଗୁଡ଼ାକ କିଣି ଆଣିଲେ ହେବ ।'' ସେ କହିଲେ ।

''ବଜାରକୁ ଯିବେ ଏଥିପାଇଁ ?'' ଫୁଟପାଥ୍‌ରେ ଗଦା ହେଇଚି । ଯାହାକୁ ଯେତେ । ସେଇ ଯୋଉ ଛତିଶଗଡ଼ି ମାଇକିନିଆ ଧରି ବସିଥାଆନ୍ତି । ବରଂ ତାଙ୍କ ଜିନିଷ ଭଲ । ପ୍ଲାଷ୍ଟିକ୍ କୋଟେଡ୍ । ଉଇ ଖାଇବନି କି ପାଣି ଲାଗିଲେ କିଛି ହବନି ।''

''କିନ୍ତୁ ତାଙ୍କଠାରୁ ଆମେ କିଣି ପାରିବାନି ।'' ସେ କହିଲେ ।

''କାହିଁକି ?''

''ଭାଉଚର କିଏ ଦେବ ? ଅଡ଼ିଟ ଅବଜେକ୍‌ସନ୍ ହବ ନାହିଁ ?''

''ମୋତେ ଯଦି କହିବେ ମୁଁ ତାଙ୍କଠାରୁ ଆଣି ଅନ୍ୟ ଦୋକାନରୁ ଭାଉଚର ଆଣିବି । ଏଇଟା କୋଉ ବଡ଼ କଥା ?'' ଅନନ୍ତବାବୁ ଖଣ୍ଡେ ପାନ ବଢ଼ାଇଦେଇ କହିଲେ ।

''ହଉ ସେକଥା ଥାଉ । ତୁମେ ଆଗେ ଗଲ ସେ ଗାନ୍ଧୀ ଫଟୋଟା କୋଉଠି ଓ କେମିତି ଅଛି ତାକୁ ଖୋଜି ବାହାର କଲ । ମୋ ପିଣ୍ଡଟା ସେଇଠି ଅଟକି ରହିଚି ।''

ସେଦିନ ଦ୍ୱିତୀୟ ଭାଗରେ ଅଫିସ୍‌ରେ ଆଉ କିଛି କାମ ହେଲାନାହିଁ । ସମସ୍ତଙ୍କ ଭିତରେ ଗୋଟେ ଆଲୋଚନା ଆରମ୍ଭ ହୋଇଗଲା । ଖବର ମିଳିଲା ଯେ ସାହେବ ଆସିଲେ, ପି.ଏ. ସହିତ କଅଣ ଅଧଘଣ୍ଟାଏ କଥା ହେଲେ, ତା'ପରେ ଗଲେ ବଡ଼ବଡ଼ ଅଫିସର ଓ ମନ୍ତ୍ରୀଙ୍କ ସହ ଦେଖା କରିବାକୁ । ସେତିକିବେଳେ ମଧ୍ୟ ସେ ଗୋଟାଏ ମିଟିଂରେ ଯୋଗଦେଇ

'ଏଡ଼ମିନିଷ୍ଟ୍ରେଟିଭ୍ ରିଫମର୍ସ୍' ଉପରେ ଆଲୋଚନା କରି ସନ୍ଧ୍ୟା ଛଅଟାବେଳକୁ ଅଫିସ ଆସିବେ । ପି.ଏ.ଠାରୁ ଏ ଯୋଉ ଖବର ମିଳିଚି ତାହା ଭଗବାନବାବୁ ନିଜେ ପାଇ ନାହାନ୍ତି । ତାହା ଆସିଚି ମୁହଁରୁ ମୁହଁକୁ- ଉଡ଼ି ଉଡ଼ି । ସେ ଚିନ୍ତାରେ ପଡ଼ିଗଲେ । ବର୍ତ୍ତମାନ ତାଙ୍କର କର୍ତ୍ତବ୍ୟ କଅଣ ? ସେ କଅଣ କରିବେ ? ସନ୍ଧ୍ୟା ଛଅଟା ଯାଏ ସେ ତାଙ୍କ ଷ୍ଟାଫ୍‌କୁ ଅଟକାଇ ପାରିବେନି । ସେ ନିଜେ ଅବଶ୍ୟ ଅଟକି ଯାଇ ପାରିବେ । କଅଣ ଆଉ କରିବେ ? ଚାକିରି ଯେତେବେଳେ କରିଚନ୍ତି ସେତେବେଳେ ଆଉ ଉପାୟ କଅଣ ? ମୁଣ୍ଡ ବିକି ସାରିଛନ୍ତି । ଅବସର ନେବାଯାଏ ସେ ସେମିତି ରହିବେ । ମୁଣ୍ଡ ତଳକୁ କରି ।

ଭଗବାନବାବୁଙ୍କ ଦକ୍ଷତା ଅତୁଳନୀୟ । ଜୀବନଯାକ ସେ କେବଳ ଦୁଇଟି କଥା ମନେ ରଖିଛନ୍ତି । 'କର୍ତ୍ତବ୍ୟ ପରାୟଣତା' ଓ 'ଆନୁଗତ୍ୟ' । ରାତି ଦୁଇଟାବେଳେ ଡାକରା ମିଳିଲେ ମଧ୍ୟ ସେ ଦଉଡ଼ି ଆସନ୍ତି । କେତେବେଳେ ମନା ନାହିଁ । ଯୋଉ କାମକୁ ପଠାଇଲେ ସେ ହସିହସି ଆଗେଇ ଯାଆନ୍ତି । ଅଫିସରମାନଙ୍କ ମନ ଜଗି ସେ କାମଟାକୁ ତୁଲେଇ ନିଅନ୍ତି । ଯିଏ ଯୋଉ କାମ ଯେମିତି କରିବାକୁ ଚାହେଁ ଭଗବାନବାବୁ ସେମିତି ନେଇ ଥୋଇ ଦିଅନ୍ତି । ସାହେବ ସନ୍ତୁଷ୍ଟ ହେଲେ ସେ ସନ୍ତୁଷ୍ଟ । ସାହେବ ଅସନ୍ତୁଷ୍ଟ ହେଲେ ସେ ମଧ୍ୟ କାନ୍ଦକାନ୍ଦ ହେଇଯାଆନ୍ତି । ସେ କୁହନ୍ତି, ବାବୁ ଚାକିରି ଯଦି କରୁଚ ତେବେ ସାହେବଙ୍କ ମନ ଜଗି କର । ସେ ଯଦି ରସଗୋଲା ଭଲ ପାଆନ୍ତି ତାଙ୍କୁ ଖୋଜିଆଣି ଦିଅ । ନଚେତ ସେ ଯଦି ଚିଲିକା ଚିଙ୍ଗୁଡ଼ି ଚାହାନ୍ତି, ପଠାଅ ଲୋକ ।

ଠିକ୍ ସାଢ଼େ ଚାରିଟା ବେଳକୁ ଟେଲିଫୋନ୍ ଆସିଲା । ଭଗବାନବାବୁ ଫୋନ୍ ଧରିଲେ । କିନ୍ତୁ ସେଥିରେ ହାଲୋ କହିବା ପୂର୍ବରୁ ପିଅନକୁ ହାତଠାରି ଡାକିଲେ ଏବଂ କହିଲେ ଶୀଘ୍ର ଅନନ୍ତବାବୁଙ୍କୁ ଡାକ ।

''ହାଲୋ ! ଡେପୁଟି ସେକ୍ରେଟାରୀ ଭଗବାନ ଦାସ ହିଅର ।''

ହଠାତ୍ ତାଙ୍କର ମୁଖମଣ୍ଡଳର ରଙ୍ଗ ବଦଳିଗଲା । ସେ ଏକ ପ୍ରକାର ସହାସ୍ୟ ବଦନରେ କହିଲେ, ''ଓହୋ ଆପଣ । ଏକା କଥା । ସାହେବ ଯାହା ତାଙ୍କ ପି.ଏ. ମଧ୍ୟ ସେଇଆ । ହୁକୁମ୍ ହେଉ ।''

ତା'ପରେ ସେ ଯାହା ଶୁଣିଲେ ସେଥିରେ ତାଙ୍କ ମନ ପୁଣି ବିଷଣ୍ଣ ହେଇଉଠିଲା । ସେ ଖାଲି ହଁ ହଁ କଲେ ଓ ତା'ପରେ ଫୋନ୍ ଛାଡ଼ିଦେଲେ । ତା'ପରେ ସେ ମୁହଁ ଉଠେଇ ଦେଖିଲେ ତାଙ୍କ ଚାରିପାଖରେ ଅନ୍ତତଃ ସାତଆଠ ଜଣ ଆସି ଠିଆ ହେଇଚନ୍ତି । ସେମାନେ ଚାହାନ୍ତି ଜାଣିବାକୁ, ସାହେବ କେତେବେଳେ ଆସିବେ । ସମସ୍ତେ ଉଦ୍‌ଗ୍ରୀବ । ଉତ୍କଣ୍ଠାରେ ସମସ୍ତେ ବ୍ୟସ୍ତ ।

ଭଗବାନବାବୁ କହିଲେ, ଆଜି ପାଇଁ ବିପଦ କିଛି ନାହିଁ । ଆସନ୍ତାକାଲି ସାହେବ ଆସିବେ ଠିକ୍ ଏଗାରଟା ବେଳକୁ । ତେଣୁ ଆପଣମାନେ ଆଜି ଯାଆନ୍ତୁ । ଆସନ୍ତା କାଲି ପାଇଁ ଆପଣମାନେ

ଟିକିଏ ଠିକ୍ ସମୟରେ ଆସିଗଲେ, ତା'ପରେ ଦେଖିବା । ସେମାନେ ଚାଲିଗଲେ । ସ୍କୁଲ ଛୁଟି ଘଣ୍ଟା ବାଜିଲେ ପିଲାମାନେ ଯେମିତି ବାହାରି ଯାଆନ୍ତି କ୍ଲାସରୁ ।

ତା'ପରେ ସେ ଡାକିଲେ ''ସଂଯୁକ୍ତା ! ଟିକେ ରୁହ ।''

ସେ ପାଖକୁ ଆସିବାରୁ ତାକୁ କହିଲେ- ''ତୁମେ କାଲି ଦଶଟା ବେଳକୁ ଆସ । ଟିକିଏ ଜରୁରୀ କାମ ଅଛି । ଆସିଲେ କହିବି ।''

''ଦଶଟା ?'' ଚମକି ପଡ଼ିଲା ସଂଯୁକ୍ତା । ''ପୁଅକୁ ଛାଡ଼ିବି ଦଶଟାରେ । ସ୍କୁଲ ଖୋଲେ ଦଶଟାରେ । ସାଢ଼େ ଦଶ ହେଲେ ଚଳିବନି ?''

ଭଗବାନବାବୁ ମୁହଁ ତଳକୁ କଲେ । ତା'ପରେ କହିଲେ, ''ଆଉ ଡେରି ହେବନି ତ ? ଆସିଲେ କିନ୍ତୁ ଏଇଠି ବସିବ ମେସିନ ନେଇ । କେଣ୍ଟିନ୍ ଯିବନି । ବେଶୀ ନୁହେଁ ଅଳ୍ପ କାମ ଅଛି । ମାତ୍ର ଦୁଇ ତିନି ପୃଷ୍ଠାର ଟାଇପ୍ କରିବାକୁ ହେବ ।''

ସେ ଚାଲିଗଲା ।

ଅନନ୍ତ ଆସିଲେ ଏବଂ କହିଲେ- ''ଫଟୋ ପାଇଲି । ଯା'ହେଉ ସେ ତାକୁ ନିଜ ଆଲମାରୀ ଭିତରେ ରଖିଥିଲେ । କିନ୍ତୁ ସେଥିରେ ଆଉ ଅଛି କଅଣ ? ଅଧା ଛିଣ୍ଡି ଯାଇଛି । ମୁଁ ତାକୁ ଆଜି ନେଇ ଯାଉଚି । ତାକୁ ଭଲ ଫଟୋଟିଏ ଦେଇ ବନ୍ଧେଇ ଆଣିବି । ସାହେବ ଆଜି ଆସୁ ନାହାନ୍ତି । ମଲୁ ଖୋଜୁଥିଲା ଯାହା । କାଲି ମୁଁ ଆଗରୁ ଆସି ଫଟୋ କାମ ସବୁ ସାରି ଦେଇଥିବି । ଆପଣ ଦେଖିବେ ନି ? ଆପଣ ବ୍ୟସ୍ତ ହୁଅନ୍ତୁନି ।''

ଭଗବାନ ବାବୁ ସେଦିନ ଘରେ ଯାଇ ପହଞ୍ଚିଲା ବେଳକୁ ରାତି ଆଠ । ତାଙ୍କର ଅଫିସରୁ ଆସିବାର ସମୟ କେବେବି ଠିକ୍ ନଥାଏ । ଏକଥା ଅପର୍ଣ୍ଣା ଭଲ ଭାବରେ ଜାଣନ୍ତି । ଆସିଲେ ବି ଅଫିସ କାମ ଯେ ସରିଥାଏ ସେକଥା ନୁହେଁ । ଅଧିକାଂଶ ଦିନ ଅଫିସ କାମ ଘରେ ହୁଏ ବୋଲି ଡ୍ରଇଂ ରୁମ୍‌ର ଗୋଟିଏ ପାଖକୁ ଗଦାଏ ଫାଇଲ ।

ନାତୁଣୀର ଜନ୍ମଦିନ ଆଉ ଦୁଇଦିନ ବାକିଥାଏ । ଅପର୍ଣ୍ଣା ଭାବିଥିଲେ ସନ୍ଧ୍ୟା ସୁଦ୍ଧା ଯଦି ଭଗବାନ ବାବୁ ଆସିଯାଆନ୍ତି, ତେବେ ଦୁହେଁ ମିଶି ମାର୍କେଟ ଯିବେ ନାତୁଣୀ ପାଇଁ କିଛି କିଣିବାକୁ । ଆସନ୍ତା କାଲି ମାର୍କେଟ ବନ୍ଦ । ଦିନକ ଆଗରୁ କିଣିଲେ ସିନା ତା ପାଖରେ ଠିକ୍ ସମୟରେ ପହଞ୍ଚିବ । ଭଗବାନ ବାବୁଙ୍କର ସେସବୁ ଆଡ଼କୁ ମୋଟେ ଧ୍ୟାନ ନଥାଏ । ସବୁ କାମ କରିବାକୁ ହୁଏ ଅପର୍ଣ୍ଣାଙ୍କୁ ।

ଅପର୍ଣ୍ଣା ତେଣୁ ମୋଟାମୋଟି ପ୍ରସ୍ତୁତ ହେଇ ରହିଥିଲେ । ଭାବିଥିଲେ ସ୍ୱାମୀ ଆସିଲେ ଚା' ଟିକିଏ ଖାଇଲା ପରେ ବାହାରି ଯିବେ । ଏଇ ପାଖରେ ମାର୍କେଟ । ଚାଲିଚାଲି ଯାଇହୁଏ । କିନ୍ତୁ ସେ ଯେତେବେଳେ ଦେଖିଲେ ସାତଟା ପଇଁଚାଳିଶ ହେଲାଣି ତଥାପି ଭଗବାନବାବୁ ଆସୁନାହାନ୍ତି, ସେତେବେଳେ ସେ ବୁଝିଗଲେ ଯେ ଆଜି ଆଉ ସମ୍ଭବ ନୁହେଁ । ସେ ତେଣୁ ଲୁଗାପଟା ବଦଳେଇ ପୁଣି ନିଜ କାମରେ ମନ ଦେଲେ ।

ଭଗବାନବାବୁ ଆସିଲେ ଏବଂ ସିଧା ବେଡ୍‌ରୁମ୍‌ରେ ପଶି ବିଛଣାରେ ଲମ୍ବା ହୋଇ ଶୋଇପଡ଼ିଲେ । ବ୍ରିଫ୍‌କେଶଟା ସେମିତି ଡ୍ରଇଂ ରୁମ୍‌ର ସୋଫା ଉପରେ ଥୁଆ ହେଇଚି ।

ଅପର୍ଣ୍ଣା ସେଇଟାକୁ ଆଣି ବେଡ୍‌ରୁମ୍‌ରେ ରଖିଦେଇ ଗଲେ ଚା' ଆଣିବାକୁ । ଏମିତି ତ ଅନେକ ସମୟରେ ସେ ଅଫିସ୍‌ରୁ ଆସି ଶୁଅନ୍ତି । କ୍ଳାନ୍ତ ହେଇ ପଡ଼ିଥାଆନ୍ତି ବୋଲି । ବୟସ ପଞ୍ଚାବନ । ଏବେ ଟିକିଏ ବି.ପି. ବଢ଼ିଚି ବୋଲି ଡାକ୍ତର କହିଚି । ତେଣୁ ବରାବର ପରି ଚା' ସହିତ ସାମାନ୍ୟ ଜଳଖିଆ ଓ ଔଷଧ ମଧ୍ୟ ନେଇ ଆସିଲେ ।

''ନିଅ ଏଇଟା ଖାଇଦିଅ । କଅଣ ଖରାପ ଲାଗୁଚି ?'' ସେ ତାଙ୍କ ମୁଣ୍ଡରେ ଓ ଛାତିରେ ହାତ ବୁଲେଇଲେ ।

ହଠାତ୍ ଭଗବାନ ବାବୁଙ୍କୁ ଯେମିତି ଜଣାଗଲା ତାଙ୍କ ଦେହରେ ଗୋଟାଏ ଚୁମ୍ବକୀୟ ସ୍ରୋତ ପ୍ରବାହିତ ହୋଇଗଲା । ସେ ଯା' ଭିତରେ ଅନେକଦିନ ହେଲା ସେ ହାତ ସ୍ପର୍ଶ ପାଇ ନଥିଲେ । ସେ ହାତରେ ଏମିତି କଅଣ ଥାଏ କେଜାଣି ସେଇଟା ଯେତେ ପୁରୁଣା ହେଲେ ମଧ୍ୟ ତାର ନୂତନତ୍ୱର କ୍ଷୟ ନଥାଏ । ତାଙ୍କୁ ଯେମିତି ଜଣାଗଲା ତାଙ୍କର ସମସ୍ତ ଦୁଃଖର ଭାର ସେଇ ଗୋଟିଏ ହାତ ସମ୍ଭାଳି ନେଇ ପାରିବ । ସେଇ ନିର୍ଲୋଭ ଓ ସ୍ୱଚ୍ଛ ସ୍ପର୍ଶରେ କେତେ ଯେ ସମ୍ମୋହନ । ସେ ଭାବିଲେ ସତରେ ଆଉ ବା ତାଙ୍କର ଦୁଃଖ କିଏ ଅପହରଣ କରିପାରିବ ? ଜଣେ ଥିଲା ମାଆ, ସେ ତ କେବେଠୁ ଚାଲିଯାଇଚି । ଅପର୍ଣ୍ଣା ସେ ସ୍ଥାନ ଦଖଲ କରି ନେଇଛନ୍ତି ଅଯାଚିତ ଭାବରେ ।

''କଅଣ ହେଲା ? ଅଫିସ୍‌ରେ କିଛି ଅସୁବିଧା ହେଲା ? ନୂଆ କିଏ ଆସିବାର ଥିଲା ପରା ? ଆସିଲେ ?''

ଭଗବାନବାବୁ ଆସ୍ତେଆସ୍ତେ ହାଲୁକା ହେଇ ଆସୁଥିଲେ । ଦୁଃଖର କଥା ପଚାରି ଦେଲେ ଦୁଃଖଟା ଆପେଆପେ ଓହ୍ଲେଇଯାଏ ଓ ବାଣ୍ଟି ହେଇଯାଏ ।

''ହଁ ଆସିଲେ ଏବଂ ସଙ୍ଗେସଙ୍ଗେ ବିପଦର ବାଣୀ ମଧ୍ୟ ଶୁଣେଇ ଦେଲେ । କହିଦେଲେ, ଯୋଉମାନେ ଏଠି ଦଶ ବର୍ଷରୁ ବେଶୀ ରହିଲେଣି ସେ ସମସ୍ତଙ୍କର ବଦଳି ହେବ । ମୋର କଅଣ ହେବ କେଜାଣି ? କାଲି ଦଶ ବର୍ଷରୁ ବେଶି ଥିବା ଲୋକଙ୍କ ଗୋଟେ ତାଲିକା ତାଙ୍କୁ ଦେବାକୁ ହେବ । ସେ ଏକଥା କହିଲେ ଏବଂ ତାଙ୍କ ହାତରେ ପଥରବସା ମୁଦିସବୁ ଗୋଟିଗୋଟି କରି ବାହାର କରି ମୁଣ୍ଡରେ ଛୁଇଁଲେ ଏବଂ ଅପର୍ଣ୍ଣାଙ୍କ ହାତରେ ଦେଇ କହିଲେ, ଏଗୁଡ଼ିକ ଠାକୁରଙ୍କ ବେଦୀ ପାଖରେ ଥୋଇଦିଅ । ଆଠରଙ୍ଗର ଆଠଟା ମୁଦି । ଗୁରୁଙ୍କ ଆଦେଶ, 'ଯେତେବେଳେ ତୁ ଅନୁଭବ କରିବୁ ଯେ କିଛି ଗୋଟାଏ ବିପଦ ଅଛି ଆଗରେ, ଏଗୁଡ଼ିକ ବାହାର କରି ମୋ ବେଦୀରେ ରଖିଦେବୁ । ତା'ପର ଦିନ ପୂଜା ପରେ ପୁଣି ତାକୁ ପିନ୍ଧିବୁ ।'

''ଏଇ କଥାଟାରେ ଏତେ ଭାବିବାର କଅଣ ଅଛି ? ଯାହା ହେବାର ଥିବ, ହେବ । ବଦଳି ହେବ । ଯୋଉଠିକୁ ହେଲେ କଅଣ ହେବ ? ଆମେ ଦୁହେଁ । ଯିବାକୁ ମୋଟେ ସମୟ

ଲାଗିବନି । ତୁମେ ମୋଟେ ବ୍ୟସ୍ତ ହୁଅନି । ମୁଁ ତ ଅଛି ।'' କହିଲେ ଅପର୍ଣ୍ଣା ।

''ତୁମେ ସିନା ସେକଥା ଭାବୁଚ । ଅଫିସରେ କଅଣ କହିବେ ଜାଣ ? ଅନେକ ଦିନୁ ଚେର ମାଡ଼ି ବସିଥିଲେ । ଯେମିତି ଖାଉଥିଲା, ସେମିତି ଖୁଆଉଥିଲା । ଏବେ ଭିଜିଲାନ୍ ଲାଗିବ । ଇଏ ଯେ ନୂଆ ଆସିଚି, ସେ ତ ଭଗବାନଙ୍କୁ ଖାତିର କରେ ନାହିଁ । ଏବେଠୁ କହିବା ଆରମ୍ଭ ହେଇଗଲାଣି ।''

''ତୁମ କାନ ବଡ଼ ପତଳା । ତୁମେ ବାହାର କଥା କାହିଁକି ଶୁଣ ? ସେଇଥିପାଇଁ ତୁମର ବି.ପି. । ଏଇସବୁ ବାଜେ କଥାକୁ ଶୁଣିଲେ ମନ ବେଶି ଖରାପ ହେବନି ? ତୁମେ କଅଣ ନିଜେ ଜାଣିନ ତୁମେ କେତେ ଖାଇଚ ? ଉଠ, ଚାଲ ଖାଇବ ।''

ପରଦିନ ଦଶଟା ବାଜିବା ପୂର୍ବରୁ ଅଫିସ୍‌ଟା ଗହଗହ ହେଇ ଉଠିଥିଲା । ଆଟେଣ୍ଡାନ୍ସ ସେଣ୍ଟ ପରସେଣ୍ଟ । ଗୋଟାଏ ଅଭୁତପୂର୍ବ ଘଟଣା । ଏମିତି କେବେ ହେଇ ଥିବାର କେହି ଦେଖିନି କି ଜାଣିନି । ସମସ୍ତେ ଯେ ଯାହାର ସିଟ୍‌ରେ । କିନ୍ତୁ କାମ ଘରେ ଶୂନ ।

ହେଡ୍ ଆସିଷ୍ଟାଣ୍ଟ ପ୍ରବୀର ସୂତାର ଟିକିଏ ମାମଲତକାର ଭଳିଆ । ତା ମତରେ ସେ ଯାହା ଜାଣିଚି ଆଉ କେହି ସେତକ ଜାଣି ନଥିବ ଏବଂ ତାର ଇନ୍‌ଫରମେସନ୍ ସବୁଠୁ ବେଶି ରିଲାଏବଲ୍ । ସିଟ୍ ପାଖ ଦୁଇଜଣଙ୍କୁ ଡାକି ସେ କହିଲା- ''ସାହେବ ସେମିତି କିଛି ନୁହନ୍ତି । ଯେମିତି ଆମେ ଭାବୁଛୁଁ। ଖୁବ୍ ଭଲ ନଚେତ୍ ଖୁବ୍ ଖରାପ । କିନ୍ତୁ ଗୋଟିଏ ଖରାପ ଗୁଣ କଅଣ ଜାଣିଲ ? ମୋଟେ କାହାକୁ ବିଶ୍ୱାସ କରନ୍ତି ନାହିଁ । ନିଜ ସ୍ତ୍ରୀକି ବି । ବିଛା ରାଶି କିନା ।''

''କେମିତି ଜାଣିଲେ ବିଛା ରାଶି ବୋଲି ?'' ଜଣେ ପଚାରିଲା ।

''ଦେଖ । ଶୁଂଘି ଶୁଂଘି ସୈନ୍ଧବ ଲୁଣ । ହଉ, ମୁଁ ପରା କହୁଚି କାହାକୁ ବିଶ୍ୱାସକୁ ନିଅନ୍ତି ନାହିଁ । ଈଶ୍ୱରଙ୍କୁ ମଧ୍ୟ ନୁହେଁ । ଏ ଗୁଣ ଆଉ କଅଣ ବୃଷ ରାଶିର ଥାଏ ? ଜ୍ୟୋତିଷ ଶାସ୍ତ୍ର ବିଷୟରେ ତମର ସାଧାରଣ ଜ୍ଞାନ ଟିକିଏ ବି ନାହିଁ । ପିଲାଛୁଆଙ୍କୁ ନେଇ ଘର କଲେ ଏସବୁ ଜାଣିବା ଦରକାର । ମୁଁ ମିଛ କହୁଚି ? ତୁମେ ଆସ ଆମ ଘରକୁ । ଗାଦେ ବହି ଥୁଆ ହେଇଚି ।'' କହିଲା ପ୍ରବୀର ।

ଅନ୍ୟମାନେ ଚୁପ୍ ।

ପ୍ରବୀର କଥା ଯୋଡ଼ିଲେ- ''ଦେଖିବ ଆମ ବୁଢ଼ା ଏବେ ଅଡୁଆରେ ପଡ଼ିବ । ସବୁ କଥାରେ ପ୍ରଭୁ ଯାହା କରିବେ ମାନେ କଅଣ ? ଏମିତି ଯୋଉମାନେ କହନ୍ତି ସେମାନଙ୍କୁ ଠିକ୍ ରାସ୍ତାରେ ଚାଲୁଥିବା ଲୋକମାନେ ଦୂରେଇ ଦିଅନ୍ତି । ହଉ ଚା' ଖାଇବା ପୂର୍ବରୁ ଯିଏ କପ୍‌କୁ ମୁଣ୍ଡରେ ଲଗାଏ ତାକୁ ଜାଣିବ ଠକଙ୍କ ଗୁରୁ । ଅଫିସର ହେଇଚନ୍ତି, ଏଇ କଥାଟା ସେମାନେ ବୁଝୁ ନଥିବେ ?''

ପ୍ରବୀର ନାଁକୁ ମାତ୍ର ଫାଇଲଟାକୁ ଏପାଖ ସେପାଖ କରୁଥାଏ ଏବଂ ଗପି ଚାଲିଥାଏ ।

ଖବର ଆସିଲା, ସାହେବ ଆସିବେ । ତାଙ୍କ ସହିତ ତାଙ୍କର ପି.ଏ., ଚିଫ୍ ଆଡ୍‌ମିନିଷ୍ଟ୍ରେଟର, କନଫିଡ଼େନ୍‌ସିଆଲ ସେକ୍ରେଟାରୀ ଓଗେର ଓଗେର । ବସିଯାଅ ସମସ୍ତେ ଯେଝା ସିଟ୍‌ରେ । କାମ କର ନକର । ଫାଇଲ ଖୋଲା ଥାଉ ଓ ମୁହଁ ତଳକୁ ଥାଉ । କଥାବାର୍ତ୍ତା ବନ୍ଦ । ଆଉ ସଂଯୁକ୍ତା ମହାନ୍ତି ? ତା କାମ ତ ଅନେକ ଆଗରୁ ସରି ଯାଇଚି । ସେ ଏବେ ତା ସିଟ୍‌ରେ ବସି କିଛି ଗୋଟାଏ ଠକ୍ ଠକ୍ କରୁଥାଉ ।

ଭଗବାନବାବୁ ଏଥର ନିଜ ସିଠ୍‌ରୁ ଉଠିଲେ । ଲମ୍ବା ହଲଟାରେ ଟିକିଏ ନଜର ପକାଇଲେ । ମନେମନେ ଅନନ୍ତକୁ ଅଶେଷ ଧନ୍ୟବାଦ ଦେଇ ପକେଇଲେ । ଯା'ହେଉ ରାତିକ ଭିତରେ ତା କାମ ସାରି ଦେଇଚି । କେତେବେଳେ ସେସବୁ ଲଗେଇଲା କେଜାଣି । ଠିକ୍ ସମୟରେ କାମ କରି ଦେବାଟା ହିଁ କର୍ମଚାରୀର ବାହାଦୂରୀ । ଅନନ୍ତର ସି.ସି.ଆର୍. ଏଥର 'ଆଉଟଷ୍ଟାଣ୍ଡିଂ' ଦେବା ଉଚିତ ହେବ । ସଂଯୁକ୍ତାକୁ 'ଭେରିଗୁଡ୍' ଦେଲେ ତା ପ୍ରତି ନ୍ୟାୟ ଦେଇହେବ । ଝିଅଟାର ଠାକୁର ବିଶ୍ୱାସ ମୋଟେ ନାହିଁ । ଆଜିକାଲି ଟୋକାଟୋକିଙ୍କର ଏଇଟା ଗୋଟାଏ କି ଅଭ୍ୟାସ ?

କିନ୍ତୁ ଏସବୁ ହେବ ମୁଁ ଏଠି ଥିଲେ ତ ?

ଭଗବାନବାବୁଙ୍କ ଭିତରେ ଗୋଟାଏ ଅଜଣା ଆଶଙ୍କାର ଭୟ ହାଉଳି ଖାଇ ଉଠୁଥିଲା । କୋହର ଗୋଟାଏ ଝାପ୍‌ସା ଛାଇ ତାଙ୍କୁ ଘେରି ସାରିଲାଣି । ବଦଳିର କଥାଟା କେମିତି କୋଉଠୁ ଗଜା ବାହାରିଲା କେଜାଣି ଗତ ଦୁଇଘଣ୍ଟା ଭିତରେ ତିନିଜଣ ତାଙ୍କୁ ପଚାରି ସାରିଲେଣି । ମରିବା ଅପେକ୍ଷା ଘୋଷରା ବେଶି ହେଇଗଲାଣି । ଅନିରୁଦ୍ଧବାବୁ ଏଠାକୁ ଆସିବେ ବୋଲି କୁଆଡ଼େ ଗୋଡ଼ ଟେକି ବସିଲେଣି । କୁହାଯାଉଚି ସେ କୁଆଡ଼େ "ମୋର୍ କମ୍ପିଟେଣ୍ଟ ।"

ଏ ବୟସରେ ଏ ପ୍ରକାର ଗୋଟେ ମନ୍ତବ୍ୟ ହୃଦୟହୀନ ଖାଲି ନୁହେଁ ଅନ୍ୟାୟ ମଧ୍ୟ । କେମିତି ତାକୁ ହଜମ କରିହେବ ? ନା, ସେ ଏଥର ସ୍ୱେଚ୍ଛାରେ ଅବସର ନେଇଯିବେ । ଏବେ ତ ସରକାର ସ୍ୱେଚ୍ଛାରେ ଅବସରଟାକୁ ଉତ୍ସାହିତ କରୁଛନ୍ତି । ଆଃ, ଆଉ କଅଣ ଦରକାର, ଯେତିକି ହେଲା ଯଥେଷ୍ଟ । ଝିଅ ବାହାହୋଇ ସାରିଚି । ପୁଅ ଯାଇ ତାଇ ଚାକିରି କରୁଚି । ଆହୁରି ଭଲ ସେ ଖୋଜୁଚି । ତା କଥା ତା ଶ୍ୱଶୁର ବୁଝୁ । ମୁଁ ତ ଏତେଦିନ ବୁଝିଲି । ସେ ତ ବଡ଼ ଲୋକ । ଗୋଟିଏ ମାତ୍ର ଝିଅ ତାଙ୍କର । ଆମେ ଏଥର ବିଶ୍ରାମ ନେବା । ଆଉ ଏ ମିଛ ମାୟାରେ ଧନ୍ଦି ହେବା କଅଣ ଦରକାର ? ଆଜିହିଁ ସେ ସାହେବଙ୍କୁ ମନ ଖୋଲି କହିଦେବେ । ଅନ୍ତତଃ ସୂଚନା ଦେଇ ଦେବେ ।

"ସାର୍ ! ଆସିଗଲେ । ଏଇ ଆଡ଼କୁ ଆସୁଛନ୍ତି ।" ପିଅନ କହିଲା ଏବଂ ଦୁଆର ମୁହଁ ପାଖରେ ଠିଆହେଇ ନୂଆବୋହୂ ଦାଣ୍ଡରେ କଥା ହେଉଥିବା ଶ୍ୱଶୁର କି ଦେଢ଼ଶୁରଙ୍କୁ ଦେଖିଲା ପରି ଡୁଙ୍ଗୁଥାଏ । ଏଆଡ଼େ ବାଁ ହାତ ଠାରି କହୁଥାଏ, ବସିଯାଅ । ଯିଏ ଯେଉଁଠି ଠିଆ ହେଇଚ ବସିଯାଅ ।

ଅନ୍ୟପଟୁ ହାଇଁପାଇଁ ହେଇ ପଶିଆସିଚନ୍ତି ଅନନ୍ତ । ହାତରେ ତାଙ୍କର ଗୋଟାଏ ହାତୁଡ଼ି ଓ ଦୁଇ ଚାରିଟା ଲୁହା କଣ୍ଟା । ତାଙ୍କ ପଛେ ଲୁଙ୍ଗି ଓ ଗେଞ୍ଜି ପିନ୍ଧିଥିବା ଗୋଟିଏ ଲୋକ । ତା ହାତରେ ଗୋଟାଏ ବିରାଟ ଫଟୋ । ଅନନ୍ତ କହିଲେ, ''ଭୁଲ୍ ହେଇ ଯାଇଚି ସାର୍ । ଏଇଟା ଆପଣଙ୍କର ଏଠି ରଖିବାର କଥା । ଏ ଲୋକଟା ଭୁଲ୍‌ରେ ଅନ୍ୟ ଫଟୋ ଟାଙ୍ଗି ଦେଇଚି । ଉଠନ୍ତୁ, ମୁଁ ଏବେ ବଦଳେଇ ଦଉଚି ।''

ଭଗବାନବାବୁ ପଛକୁ ବୁଲିଲେ ଏଥର । ''ଆରେ ଏଇଟା କଅଣ ? ଏଇଟା କାହା ଫଟୋ ? ସର୍ବନାଶ ।'' ସେ ବୁଝିଲେ ବିପଦ ଯେତେବେଳେ ଆସେ ଏକା ଆସେ ନାହିଁ ।

ପଶି ଆସିଲେ ସାହେବ ଓ ତାଙ୍କ ଦଳ । ଅନନ୍ତ ହତଭମ୍ବ । ଭଗବାନ କିଂକର୍ତ୍ତବ୍ୟବିମୂଢ଼ । ସେ ଯେମିତି ଆସ୍ତେଆସ୍ତେ ସ୍ଥାଣୁ ପାଲଟି ଆସୁଥିଲେ ।

ପି.ଏ. ପରିଚୟ କରାଇଦେଲେ- ''ସାର୍ ହଉଚନ୍ତି ଭଗବାନ ଦାସ । ଡେପୁଟୀ ସେକ୍ରେଟାରୀ । ପୂରା ଆଡ୍‌ମିନିଷ୍ଟ୍ରେସନଟା ତାଙ୍କ ଦାୟିତ୍ୱରେ ।''

''ରିଏଲି ? ଗ୍ଲାଡ୍ ଟୁ ସି ୟୁ ।'' ସେ ଭଗବାନବାବୁଙ୍କ ହାତଟାକୁ ଟାଣିନେଇ କରମର୍ଦ୍ଦନ କଲେ । ସଦା ଗମ୍ଭୀର ମୁହଁରେ ସାମାନ୍ୟ ହସଟିଏ ଉକୁଟି ଉଠିଲା ।

''ଆଉ ସିଏ କିଏ ?'' ସରହେବ ପଚାରିଲେ ।

''ମୁଁ ସାର୍ ଅନନ୍ତ ମିଶ୍ର । ଏଇ ଫଟୋଟା ସେଇଠି ଲାଗିବ । ସେଇଟା ନୁହେଁ ।''

ସାହେବ ଉପରକୁ ଦେଖିଲେ । ବେଶ୍ କିଛି ସମୟ ଦେଖିଲେ । ସମସ୍ତଙ୍କ ଭିତରେ ଗୋଟାଏ ଅସ୍ୱାଭାବିକ ନିରବତା । ଏତେବଡ଼ ହଲଟାରେ ମଧ୍ୟ ଅଖଣ୍ଡ ନିରବତା । କେହିକେହି ଉଙ୍କିମାରି ଦେଖୁଥିଲେ ମଧ୍ୟ ଶବ୍ଦମାନେ ସାହେବଙ୍କ ଭୟରେ ଆତ୍ମଗୋପନ କରି ସାରିଥିଲେ । ଭଗବାନ ନିଜର ଅସ୍ତିତ୍ୱ ହରାଇ ସାରିଲେ ।

ସାହେବ ଏଥର କାନ୍ଥ ଉପରୁ ଆଖି ଖସାଇ ଆଣିଲେ ଏବଂ ଅନନ୍ତକୁ ପଚାରିଲେ, ''ହଁ, କୋଉଠୁ ଆସିଲା ଏ ଫଟୋ ?'' ଉପର ଫଟୋ ଉଦ୍ଦେଶ୍ୟରେ ଥିଲା ତାଙ୍କର ପ୍ରଶ୍ନ । ଅନନ୍ତର ପାଟି ଖନି ମାରି ଯାଇଥିଲା । ଭଗବାନ ନିର୍ବାକ ।

ଆପଣ ବାବାଙ୍କ ଭକ୍ତ କି ?

ସାହେବ ତାଙ୍କ ଉଦ୍ଦେଶ୍ୟରେ ହାତ ଉଠାଇ ନମସ୍କାର କଲେ ଓ କହିଲେ ।

''ଗୁଡ୍, ଗୁଡ୍ !''

ସେ ପୁଣିଥରେ ଭଗବାନବାବୁଙ୍କ ସହିତ କରମର୍ଦ୍ଦନ କରି ହସି ଉଠିଲେ ଏବଂ ବୁଲିପଡ଼ି କହିଲେ- ''ଚାଲ ଯିବା ।'' ସମସ୍ତେ ଚାଲିଗଲେ ।

ଅଫିସ ଭିତରର ବାତାବରଣ ସ୍ୱାଭାବିକ ହେଇ ଆସୁଥିଲେ ମଧ୍ୟ ଭଗବାନବାବୁ ଓ ଅନନ୍ତ ସେଇଠି ସେମିତି ଠିଆ ହେଇ ରହିଥିଲେ ।

(ନବପତ୍ର, ପୂଜା ୨୦୦୪)

# ସେଲିନାର ସମୟ

ସେଲିନାକୁ ଯେତେବେଳେ ମାତ୍ର ଚାରିବର୍ଷ ସେତେବେଳେ ତା ବାପା ମରିଗଲେ । ଚାରିବର୍ଷଟା ଏମିତି ଗୋଟାଏ ସମୟ ନୁହେଁ ଯେତେବେଳେ ମଣିଷ ମୃତ୍ୟୁକୁ ବୁଝିପାରେ । ଟଭାକୁ ବଲ୍ ବୋଲି କହି ତାକୁ ଗଡ଼େଇ ଦେଇ ତା ପଛରେ ଦୌଡୁଥିବା ଶିଶୁ ମୃତ୍ୟୁ ରହସ୍ୟ ଭେଦକରି ପାରେନାହିଁ । ତା' ପାଇଁ ମୃତ୍ୟୁ ଏକ ଅଜଣା ରାଇଜର ଅସ୍ପଷ୍ଟ ଆଭାସଟିଏ ମାତ୍ର, ଯାହା ପବନରେ ବୁଦ୍‌ବୁଦ୍ ପରି ଉଭେଇ ଯାଏ କେହି ଜାଣିବା ପୂର୍ବରୁ ।

ସେଲିନା ପକ୍ଷରେ ଠିକ୍ ତାହାହିଁ ହେଇଥିଲା । ସେ ଦେଖୁଦେଖୁ ମୃତ୍ୟୁ ତା ବାପାକୁ ତା ଅଧୀନ କରି ନେଇଗଲା । ସେ ଖେଳୁ ଖେଳୁ ଏସବୁ ହେଇଗଲା । ସେଲିନାର ବାପାକୁ ମୃତ୍ୟୁ କବଳିତ କରିଥିଲା ରାତିରେ ନୁହେଁ- ଯେତେବେଳେ ସେ ନିଘୋଡ଼ ନିଦରେ ଶୋଇଥାଏ ତା ବାପା ବେକରେ ହାତ ଛନ୍ଦି । ମୃତ୍ୟୁ ଆସିଥିଲା ଦିନରେ । ଦିନ ଦ୍ୱିପହରରେ ଆଜିର ଡାକୁମାନଙ୍କ ପରି । ସେ ସମସ୍ତଙ୍କ ସାମ୍ନାରେ ଆସିଲା, ଡାକି ହକାରି କହିଲା ଏବଂ ତା ବାପାକୁ ନେଇ ଚାଲିଗଲା ।

ମୃତ୍ୟୁର ସତ୍ତା ଓ ସ୍ୱରୂପକୁ ଯେତେବେଳେ ସେଲିନା ଚିହ୍ନିବାର ସମୟ ହେଇ ନଥିଲା ସେତେବେଳେ ସେ ଏମିତି ବାଜା ବଜେଇ ଆସିଥିଲା ଓ ଯାଇଥିଲା ।

ତେବେ କଅଣ ସେଲିନା ଯଦିବଡ଼ ହୋଇ ଯାଇଥାଆନ୍ତା ଏବଂ ତାର ଅନେକ କିଛି ଜାଣିବାର ଓ ବୁଝିବାର ବୟସ ହୋଇଯାଇ ଥାଆନ୍ତା ସେତେବେଳେ ତା ବାପା ମରି ନଥାଆନ୍ତ ?

ସେ ପ୍ରଶ୍ନ ଏବେ ମଧ୍ୟ ସେଲିନାକୁ ଆନ୍ଦୋଳିତ କରେ । ସେ ଭାବେ ବିନା ଯୁଦ୍ଧରେ ସେ କଅଣ ଯୁଦ୍ଧ ଭୂଇଁରୁ ପଳେଇ ଆସି ଥାଆନ୍ତା କି ? ମୃତ୍ୟୁ ତ ଆଉ ମଣିଷର ଅଜେୟ ଶତ୍ରୁ ନୁହେଁ । ମୃତ୍ୟୁ ଏବେ କିଛି ନୁହେଁ । ଏବର ପୃଥିବୀରେ ମୃତ୍ୟୁ ଯେ ତାର ଆଇଡେଣ୍ଟିଟି ଧୀରେଧୀରେ ହରାଉଚି ଏ ବିଷୟରେ ସେଲିନାର ସନ୍ଦେହ ନଥିଲା ।

ଆଉ ସେତେବେଳେ ? ତାର ଚାରିବର୍ଷ ବୟସ ବେଳେ ? ସେ କଅଣ ଜାଣିଥିଲା କି

ମୃତ୍ୟୁ କଅଣ ? ତାର ରୂପ ଓ ରଙ୍ଗ ସେ ଚିହ୍ନି ନଥିଲା । ତା ବାପା ତ ସେ ସମୟରେ ଶୋଇଥିଲେ । ମା କାନ୍ଦି ଉଠିଲା । ଅନ୍ୟମାନେ ବି । ସେ ସମସ୍ତଙ୍କୁ ଦେଖିଲା । ସେ କିନ୍ତୁ ତାର ମାଆର କାନ୍ଦିବା କେବେ ଦେଖି ନଥିଲା । ତେଣୁ ସେ ଆଶ୍ଚର୍ଯ୍ୟ ହେଲା । ଆରେ, କଅଣ ହେଲା ? ହଠାତ୍ ତା ମାଆ କାହିଁକି କାନ୍ଦିଲା ?

ସେଲିନା ନିଜେ କାନ୍ଦେ । ସେ କାନ୍ଦିଲେ ତା ମାଆ ତାକୁ କୋଳକୁ ନିଏ । ଆଖିରୁ ଲୁହ ପୋଛେ । କିଛି ଖାଇବାକୁ ଦିଏ । ନଚେତ ତା ବାବା, ଗଛରୁ ଟଭାଟିଏ ଇଚ୍ଛା ନଥିଲେ ବି ଛିଣ୍ଡେଇ ଆଣେ ଏବଂ ତା ଆଗରେ ଗଡ଼େଇ ଦିଏ । ବାସ୍ ତା'ପରେ କାମ ଶେଷ । ସେଲିନା ଆଖିରୁ ଲୁହ ପୋଛୁ ପୋଛୁ ଟଭା ପଛରେ ଦଉଡ଼େ ।

କିନ୍ତୁ ଆଜି ତା ମାଆ ନିଜେ କାନ୍ଦୁଚି । ସେ କଅଣ କରିବ ? ଗଡ଼ିଗଡ଼ି ଯାଉଥିବା ଟଭାଟିକୁ ସେ ଆଣି ପକେଟରେ ପୂରାଇଲା ଏବଂ ମାଆ କୋଳରେ ଯାଇ ବସିପଡ଼ିଲା । ତା ମାଆର ଲୁହ ପୋଛିବା ପାଇଁ ତା ହାତ ଯଥେଷ୍ଟ ନୁହେଁ, ତା ପାପୁଲିର ଦୁଇପାଖ ଦେଇ ଲୁହ ବହି ଆସୁଛି । ସୁଅ ଅପେକ୍ଷା ବନ୍ଧ ଯଦି ଛୋଟ ହୁଏ ? ସେ କେମିତି ତାକୁ ରୋକି ପାରିବ ?

ବାପାର ଶୋଇବା ସହିତ ମାଆର କାନ୍ଦ ଯେ ସମ୍ପର୍କିତ ଏକଥା ସେଲିନା ମୋଟେ ବୁଝି ନଥିଲା । ଏପ୍ରକାର ପରିସ୍ଥିତି ସହିତ ମଧ୍ୟ ସେ ପରିଚିତ ନଥିଲା । କ୍ରମଶଃ ଲୋକ ଜମିବାର ଦେଖି ସେ ଭାବୁଥିଲା ଏଥିରେ ତା ବାପାର ନିଦ ଭାଙ୍ଗିଯିବନି ? ଲୋକମାନେ କିଛି ବୁଝୁ ନାହାନ୍ତି ବୋଧେ । ହଠାତ୍ ସେ ଦେଖିଲା ତା ବାପାକୁ କେତେଜଣ ବିଛଣାରୁ ଟେକୁଛନ୍ତି । ସେଲିନା ରାଗିଲା । ସେ ତ ଶୋଇଚି । ତାକୁ କାହିଁକି ଉଠଉଚ ? ସେ ରାଗିବ । ଯାଅ ଏଠୁ । ସେ ଜଣକୁ ତାର ସମସ୍ତ ଶକ୍ତି ଖଟେଇ ଠେଲିବାକୁ ଲାଗିଲା ।

ତା'ପରେ ସେ ତା ବାପାକୁ ଆଉ କେବେ ଦେଖି ନାହିଁ ।

ସେଲିନାକୁ ଯେତେବେଳେ ଦଶବର୍ଷ, ସେତେବେଳେ ତା ମାଆ ଦିନେ ବେମାର ପଡ଼ିଲା । ଜର ହେଲା ମେଲେରିଆ ବୋଲି ସେମାନେ କହିଲେ । ଦି'ଚାରି ଦିନ ପରେ ଛାଡ଼ିଯିବ ବୋଲି ମଧ୍ୟ କହିଲେ । ଏ ଜର ଏମିତି ଆସେ ଓ ଛାଡ଼ିଯାଏ । ଖାଲି ଓଦା ପଟି ଦରକାର । ସେଲିନା ଏବେ ବୁଝୁଚି ପାଖରେ ଡାକ୍ତରଖାନା ନଥିଲେ, କି ଔଷଧ ପାଇବାର ସୁବିଧା ନଥିଲେ ସେମାନେ ଆଉ କ'ଣ କହି ଥାଆନ୍ତେ ?

ଜରର ଦ୍ୱିତୀୟ ଦିନ ପାଖ ଘରୁ ତୁଡ଼ୁକାର ମାଆ ଆସି କହିଲେ, ''ସେଲିନାର ମାଆ, ତୁମେ ଯଦି ଯାଇ ନପାର, ସେଲିନା ଯାଉ । ଦିନେ ଦି ଦିନ ସେ କାମ ଚଳେଇ ନେଉ । ମୁଁ ତାକୁ କହି ଦେବି ।''

ସେଲିନା ସେତେବେଳେ ତା ମାଆ ପାଖରେ ବସି ଜଳପଟି ଦେଉଥିଲା । ତା ମାଆ ତା ମୁହଁକୁ ଥରେ ଦେଖିଲେ ଏବଂ ତା ପିଠି ଆଉଁସେଇ ଦେଲେ । ସେ ହୁଏତ ସେତେବେଳେ ଭାବୁଥିଲେ ଏଇମାତ୍ର ଦୁଧଦାନ୍ତ ଛାଡ଼ିଥିବା ବାପଛେଉଣ୍ଡ ଛୁଆ କଅଣ ତାଙ୍କ କାମକରି ପାରବ ?

କୋଳରେ ଆଉ କେତେଦିନ ବସେଇବ ସେଲିନା ମାଆ ।? ଏବେଠୁ ଟିକେ ଟିକେ ନଗଲେ ଆଉ ଶିଖିବ କେବେ ? ତୁଡୁକାର ମାଆ ଦୁଇ ଥାକିଆ ଆଲୁମିନିୟମ ଟିଫିନ କେରିଅରଟିକୁ ତଳେ ରଖି ସେଲିନାର ମାଆ ପାଖରେ ବସି ପଡ଼ିଲେ ଓ ତା କପାଳରେ ହାତ ରଖି କହିଲେ । ''କିରେ ତୁ ଯିବୁ ମୋ ସାଙ୍ଗରେ ?'' ସେ ସେଲିନାକୁ ପଚାରିଲେ ।

''ତୁମ ସାଙ୍ଗରେ ?''

''ପାରିବୁ କିରେ ?'' ତା ମାଆ ତାକୁ ପଚାରିଲେ । ''କାମ ମୋତେ ସାନ, ତୋତେ ବଡ଼ ହେବ ନିଶ୍ଚୟ ।''

''କି କାମ ମାଆ ?'' ସେଲିନା ପଚାରିଲା ।

''ମୁଁ ଯେଉଁ କାମ କରୁଚି । ତୁ ତ ଦେଖିଚୁ ।'' ସେ ପୁଣି ଥରେ ତା ମୁହଁକୁ ଚାହିଁଲେ । ବଡ଼ କଷ୍ଟରେ ସେ ହସିବାକୁ ଚାହିଁଲେ ମଧ୍ୟ ପାରୁ ନଥିଲେ ।

ସେଲିନା କିଛି ନ କହିବାରୁ ସେ କହିଲେ, ''ନା, ତୁ ସେ କାମ କରି ପାରିବୁନି । ଆଉ ଟିକିଏ ବଡ଼ ହ ।''

ସେଲିନା କହିଲା- ''ମୁଁ ପାରିବି ଯେ । କିନ୍ତୁ ଯିବିନି ।''

''ଏ ମା ଏଇଟା କି କଥା ? ତୁ ଯିବୁନି । ଆଜି ନହେଲେ କାଲି ତ ଯିବାକୁ ହେବ । ସେ କାମ ଆଉ କିଏ କରିବ ? ତୋ ମାଆ କରୁଥିଲା, ତା ମାଆ ମଧ୍ୟ ଏ କାମ କରୁଥିଲା, ଆଉ ତା ମାଆ ବି। ତୁ ଜାଣୁ ସେଲିନା ! ତୋ ମାଆ ଯେତେବେଳେ ଏ କାମ ହାତକୁ ନେଲା ସେତେବେଳେ ତାର ବୟସ କେତେ ହୋଇଥିଲା ?''

ସେଲିନା ତାଙ୍କ ମୁହଁକୁ ହାଁ କରି ଅନେଇ ରହିଲା ।

''ଆମେ ତ ଏମିତି ବରାବର କରି ଆସୁଛୁଁ । ସେଇଟା ଆମ କାମ । ତାକୁ ଆଉ କିଏ କରିବ ସେଲିନା ? ତୁଡ଼କାର ମାଆ କହୁକହୁ ଉଠିଲେ । ସେ କହିଲେ ମୋର ଡେରି ହେଇଯାଉଚି ।''

X X X

ସେଲିନା ତା କୋଠରୀର ଝରକାଟା ଖୋଲିଦେଲା । ବାହାରେ ପ୍ରଶସ୍ତ ଲନ୍ । ସବୁଜ ଘାସ । ଘାସ ଚାରିପଟେ ବହୁ ଜାତିର ଫୁଲ । ସୁନ୍ଦର ଓ ମନୋରମ ପରିବେଶ । ଲନ୍ ମଝିରେ ଗୋଟିଏ କୃତ୍ରିମ ପାହାଡ଼ । ତା' ସେପାଖରେ ଗୋଟିଏ ଝରଣା । ପାଣି ସବୁବେଳେ ଉପରକୁ ଉଠି ପୁଣି ଝରଣା ସୃଷ୍ଟି ହେଉଚି । ଅନେକ କୃତ୍ରିମତା ଭିତରେ ପ୍ରାକୃତିକତାର ସୃଷ୍ଟି ।

ଏଇ କେତେ ମାଇଲ ଦୂରରେ ଯୋଉ ଜଙ୍ଗଲ ଦେଖାଯାଉଚି, ଶାଳ ଓ ମହୁଲ ବଣର ଜଙ୍ଗଲ, ତାରି ଭିତରେ ଥିଲା ତାର ଗାଁ । ସେ ଗାଁ ଆଉ ସେଠି ନାହିଁ । ସେ ଜଙ୍ଗଲ ଓ ସେପାଖର ଭୂମିକୁ ଦଖଲ କରି ସୃଷ୍ଟି ହେଇଚି ସେଠି ଆଉ ଗୋଟାଏ ସହର । ବିବର୍ତ୍ତିତ ପୃଥିବୀର ଆଉ ଗୋଟିଏ ରୂପ । ଆଖି ଝଲସେଇ ଦଉଚି ମଣିଷର । ସେଠି ଗଢ଼ି ଉଠିଚି

ସ୍ୱତନ୍ତ୍ର ପୃଥିବୀ । ସହର ସୃଷ୍ଟି ହେଲେ ଗାଁ ଘୁଞ୍ଚିଯାଏ ଦୂରକୁ । ସହରର ନୀତି ନିୟମରେ ଗାଁ ଏକ ଉପଜାତି । ସେ ଘୁଞ୍ଚିବାକୁ ବାଧ୍ୟ । ଆର୍ଯ୍ୟମାନେ ଯେତେବେଳେ ଆସିଲେ, ନୂଆ ଜନପଦ ସୃଷ୍ଟି ହେଲା । ଘୁଞ୍ଚିଗଲେ ଆଦିମ ଅଧିବାସୀ । ସେମାନେ ଘୁଞ୍ଚିଗଲେ ନା ସେମାନଙ୍କୁ ଘୁଞ୍ଚାଇ ଦିଆଗଲା ? ଇତିହାସ କଅଣ କହୁଚି ?

ସେଲିନାର ମୁଣ୍ଡର ଶିରା ପ୍ରଶିରାଗୁଡ଼ିକ ସତେଜ ହୋଇ ଉଠୁଥିଲେ । ତାର ମୁଣ୍ଡର ରକ୍ତପ୍ରବାହୀ ନାଡ଼ିସବୁ ହଠାତ୍ ଚଳପ୍ରଚଳ ହେବାକୁ ଆରମ୍ଭ କରିଦେଲେ । ଇତିହାସ ତେବେ ଏଇଠୁ ଆରମ୍ଭ ? ତୁଡ଼କାର ମାଆ ଏତେ ଦୂରକୁ ଆଖି ପକେଇପାରି ନଥିବେ । ସୀମାବଦ୍ଧ ଦୃଷ୍ଟି ନେଇ ସେ ବା କେତେ ଦୂରକୁ ଯାଇ ପାରିବେ ? ସେଲିନାର ବାପା ମାଆ ବି ତ ଯାଇପାରି ନଥିବେ । ବାପାଙ୍କ ବାପା ? ଖିଅ ଖୋଜି ଖୋଜି କେତେ ଦୂରକୁ ଯାଇ ହେବ ? ଆଖି ପାଉ ନଥିବ । ଅନନ୍ତକାଳରୁ ଆରମ୍ଭ ହେଇଥିବା ଅତ୍ୟାଚାରର ଇତିହାସକୁ କିଏ ବା ସଂଗ୍ରହ କରି ରଖିପାରିଚି ?

ସେଲିନା ଦେଖୁଥିଲା– କୃତ୍ରିମ ପାହାଡ଼ର ଶୀର୍ଷ ଦେଶରୁ ଯୋଉ ପାଣିର ଫୁଆରା ସୃଷ୍ଟି ହେଉଚି ତାର ଶେଷ ନାହିଁ । ଏକ ଅସରନ୍ତି ଉତ୍ସ । ତାକୁ ଏବେ ଖୋଜି ହେବ ନାହିଁ । ତେବେ ଉତ୍ସଟା ଯେ କୋଉଠି ସେ କଥା ଅଜଣା ନାହିଁ। ଉତ୍ସ ନଥାଇ ଝରଣାର ପ୍ରଶ୍ନ କୋଉଠି ଉଠୁଚି ?

ସେଲିନା ଦେଖିଲା ତାର ବାପା ମାଆ, ସେମାନଙ୍କ ବାପା ମାଆ ଏବଂ ତା'ପରେ ଆଗକୁ, ଆହୁରି ଆଗକୁ ଗୋଟାଏ ଅସରନ୍ତି ମଣିଷର ଲମ୍ବା ଧାଡ଼ି। କାହିଁ କେତେ ଦୂରକୁ ଲମ୍ବି ଯାଇଚି । ତାର ଆଖି ପାଉ ନାହିଁ । ସେ ଦେଖୁଚି, ସେମାନେ ସମସ୍ତେ କଷ୍ଟେମଷ୍ଟେ ଉଠିପଡ଼ି ଧାଇଁଛନ୍ତି । ଆହୁରି ଆଗକୁ । ଆଉ ସେମାନଙ୍କ ପଛରେ ଯେମିତି କିଏସବୁ ଗୋଡ଼େଉଛନ୍ତି ରେ ରେ କାର କରି, ଅଟ୍ଟହାସ୍ୟ କରି ।

ସେଲିନା ଝରକା ବନ୍ଦ କଲା । ନା ସେ ଆଉ ସେ ଦୃଶ୍ୟ ଦେଖିବାକୁ ଚାହୁଁନାହିଁ । ଅତୀତର ପୃଷ୍ଠାସବୁ ବଡ଼ ବେଦନା ଦାୟକ। ତାର ମନେ ହେଉଥିଲା ସେ ପୃଷ୍ଠାଗୁଡ଼ିକୁ ସେ ଗୋଟି ଗୋଟି କରି ଚିରି ଆକାଶକୁ ଫୋପାଡ଼ି ଦିଅନ୍ତା । ଉଡ଼େଇ ଦିଅନ୍ତା ପବନରେ । ତାର ସମସ୍ତ ଚିହ୍ନବର୍ଣ୍ଣ ସେ ଲୋପ କରି ଦିଅନ୍ତା । ଯେମିତି ସେସବୁକୁ ଆଉଥରେ କେହି ପଢ଼ିବାର ସୁଯୋଗ ନ ପାଆନ୍ତେ । କଅଣ ଦରକାର ସେ କଳଙ୍କିତ ଇତିହାସକୁ ବାରମ୍ବାର ପଢ଼ିବା ? କଅଣ ଦରକାର ତାକୁ ମନେ ପକେଇବା ? ବିଜେତା ଓ ବିଜିତ ବରାବର ରହି ଆସିଚନ୍ତି ଏ ପୃଥିବୀରେ । ବିଜେତା ପାଇଁ ଏ କଳଙ୍କର ଇତିହାସ ଆନନ୍ଦଦାୟକ ହେଇପାରେ । କିନ୍ତୁ ବିଜିତ ? ତା ପାଇଁ ଏହା ଗର୍ବ ବା ଗୌରବର କଥା ମୋଟେ ହେଇ ନପାରେ ।

ବାହାରେ କିଏ ଜଣେ ନକ୍ କଲା ।

ସେଲିନା ବୋତଲରୁ ଟିକିଏ ପାଣି ପିଇ ଯାଇ କବାଟ ଖୋଲିଲା । ଲୋକଟି ଠିଆ

ହେଇଚି ଚିଠି ଖଣ୍ଡେ ଧରି । ଚିଟିଠି ଆସିଚି ଏସ୍.ଓ.ଏସ୍. ଭିଲେଜ୍‌ରୁ। ସେ ଖୁସି ହେଇଗଲା । ସେଇ ଭିଲେଜଟା ହିଁ ତାର ଘର । ସେଠି ତାର ବାପା ମାଆ ଭାଇ ଭଉଣୀ ସମସ୍ତେ ଅଛନ୍ତି । ସେ ଚିଠି ଖୋଲିଲା । ତାର ନୂତନ ନିଯୁକ୍ତିରେ ଖୁସି ହେଇ ସେମାନେ ସମ୍ବର୍ଦ୍ଧନା ଦେବେ ସେଲିନାକୁ ।

ଯୋଉଦିନ ବାପାଙ୍କ ପରି ମାଆ ଚାଲିଗଲେ ସେଲିନାକୁ ଏକୁଟିଆ ଛାଡ଼ି, ସେଦିନ ସେ ବୁଝିଲା ଏତେବଡ଼ ପୃଥିବୀରେ ସେ ଏବେ ଏକଦମ ଏକୁଟିଆ । ଯୋଉମାନେ ତାକୁ ତାର ବାପା ମାଆ ଥିଲାବେଳେ ବେଢ଼ିଥିଲେ, ନିଜର ବୋଲି କହି ଆଗେଇ ଆସୁଥିଲେ, ମୁଣ୍ଡରେ ହାତ ରଖି ଆଉଁସି ଦେଉଥିଲେ ସେମାନେ ଆଜି ତାକୁ ଦେଖି ମୁହଁ ବୁଲେଇ ନେଉଚନ୍ତି । କେତେଶୀଘ୍ର ବଦଳି ଯାଆନ୍ତି ମଣିଷମାନେ ? କେବଳ ମଣିଷମାନେ ଏମିତି ବଦଳି ପାରନ୍ତି ନା ଆଉ କେହି ?

ଯୋଉ ପବନ ମଣିଷର ନାକ ଭିତର ଦେଇ ପେଟକୁ ଯାଏ ତାର ନାମ ନିଃଶ୍ୱାସ । ସେଇ ନିଃଶ୍ୱାସ ଯେତେବେଳେ ବାହାରି ଆସେ ତାର ନାମ ବଦଳି, ହେଇଯାଏ ପ୍ରଶ୍ୱାସ । ଯୋଉ ପବନ ଭିତରକୁ ଯାଏ ତାର ନାମ ଅମ୍ଳଯାନ ଓ ସେଇ ପବନ ଯେତେବେଳେ ବାହାରକୁ ଆସେ, ତାର ନାମ ହୁଏ ଅଙ୍ଗାରକାମ୍ଳ । ଗୋଟାଏ ଜୀବନ ଦିଏ, ଆଉ ଗୋଟାଏ ଜୀବନ ନିଏ । ଗୋଟାଏ ସେକେଣ୍ଡରୁ କମ୍ ସମୟ ଭିତରେ ମଣିଷ ନିଜ ପେଟ ଭିତରେ ଅମୃତକୁ ବିଷରେ ପରିଣତ କରିଦିଏ । ଇଏ ସେଇ ମଣିଷ । ପରମ ମିତ୍ର ହେଇଯାଏ ପରମ ଶତ୍ରୁ ।

ସବୁ ମୁହୂର୍ତ୍ତରେ ବଦଳୁ ଥିବା ଚରିତ୍ରର ଅନ୍ୟ ନାମ ମଣିଷ ?

ସେଦିନ ଏସ୍.ଓ.ଏସ୍. ଭିଲେଜର ମୋଟେ ଚିହ୍ନି ନଥିବା ମଣିଷଟି ଯଦି ତାକୁ କୋଳେଇ ନେଇ ନ ଥାଆନ୍ତେ ? କଅଣ ହେଇ ଥାଆନ୍ତା ସେଲିନାର ?

ସେ ହୁଏତ ତା ମାଆର ରାସ୍ତାକୁ ଅନୁସରଣ କରୁଥାଆନ୍ତା । କିମ୍ୱା ସେ ହୁଏତ ତା ପିଲାକାଳର ସାଥି ବିନିକା ପରି ସକାଳୁ ଉଠି ଠିକାଦାର ରମେଶ ଶର୍ମାର ହାତକୁ ଚାହିଁ ବସିଥାଆନ୍ତା । ତାର କଥା ଅନୁସାରେ ଆଠଖଣ୍ଡ ନୁହେଁ ଦଶଖଣ୍ଡ ଇଟା ମୁଣ୍ଡରେ ବହୁଥାଆନ୍ତା । ଗୋଡ଼ରେ ମଟର ଟାୟାରର ତିଆରି ଚପଲ ପିନ୍ଧି ତରଳା ପିଚ୍‌କୁ ନେଇ ରାସ୍ତାରେ ଢାଳୁ ଥାଆନ୍ତା । କିମ୍ୱା ପଥର ଖଣିରେ ବିରାଟ ୧୫ କେଜିର ହାତୁଡ଼ି ନେଇ ପଥର ଭାଙ୍ଗୁଥାଆନ୍ତା । ''ଛୋଟଛୋଟ କରିବାକୁ ପଡ଼ିବ । ଏକ ଇଞ୍ଚ । ଦେଢ଼ ଇଞ୍ଚ କଲେ ଦରମା ବନ୍ଦ ।'' ଆଉ ଯଦି ସେସବୁଥିରୁ ଫେଲ୍ ମାରିଥାଆନ୍ତା, ତେବେ ହୁଏତ ସେ ଲମ୍ପଟ ମଣିଷଙ୍କ ହାଟରେ ବିକ୍ରି କରୁଥାନ୍ତା ସଉଦା-ଦେହର ସଉଦା । ଏ ହାଟ ତାର ଇପ୍‌ସିତ ନୁହେଁ । ତାକୁ ସେଇ ବିଜେତା ଗୋଷ୍ଠି ହିଁ ଠେଲି ଦେଇ ଥାଆନ୍ତେ । ସବୁରି ମୂଳରେ ସେମାନେ । ସେଲିନା ଆଉ ଆଗକୁ ଭାବିପାରୁ ନଥିଲା ।

ବିଜେତାମାନଙ୍କୁ ଜୟ କରାଯାଇ ପାରେନା ? ଏମିତି କିଛି ଅସ୍ତ୍ର ନାହିଁ ଯାହା ବଳରେ

ସେମାନଙ୍କୁ ପରାହତ କରିହେବ ? ସୃଷ୍ଟିର ଆରମ୍ଭରୁ ଏମିତି କିଛି ତିଆରି ହେଇ ନାହିଁ ଯାହା ବଳରେ ପୃଥିବୀର ତଳେ ଥିବା ଅଂଶକୁ ଉପରକୁ କରିଦେଇ ହେବ ? ସବୁବେଳେ ଉପରଟା ଉପରେ ଥିବ, ଏମିତି ଗୋଟିଏ ନିୟମ କିଏ କରିଚି ?

ସେଲିନା ଚାହୁଁଥିଲା ସେ ସୃଷ୍ଟିର ନିୟମଗୁଡ଼ାକୁ ବଦଳାଇ ଦିଅନ୍ତା । ଯୋଉ ଚାବୁକ ଅନେକ ଦିନ ଧରି ଗୋଟାଏ ହାତରେ ଅଛି ତାହା ଏଥର ଅନ୍ୟ ହାତକୁ ଆସନ୍ତା । ସବୁଦିନ ଗୋଟାଏ ହାତରେ କାହିଁକି ରହିବ ?

ସୁଅ ତଳୁ ସେଲିନା ଉପରକୁ ଉଠିବାକୁ ଚାହୁଁଥିଲା । ଏମିତି ଗୋଟାଏ ଦିନ ତା ଜୀବନରେ କେବେ ଆସିବନି ? ଗୋଟାଏ ମୁହୂର୍ତ୍ତ ମଧ୍ୟ ନୁହେଁ ? ତାର ଜୀବନ କାଳ ଭିତରେ ସମ୍ଭବ ନୁହେଁ ।

ସେଲିନା ବୁଝି ପାରିଥିଲା ଯେ ସେ ଇଞ୍ଜିନିୟରିଂ କଲେଜରେ ଜଣେ ଅଧ୍ୟାପିକା ଭାବେ ଯୋଗଦେବା ଦିନଠାରୁ ସେଠାର ବାୟୁମଣ୍ଡଳ ଉଷ୍ମ ହେଇ ଉଠିଚି । ବହୁ ନାୟିକା ସେମାନଙ୍କର ଶିରାପ୍ରଶିରା ନେଇ ରଙ୍ଗ ବଦଳେଇ ସାରିଚନ୍ତି । ଚାପା ଗୁଞ୍ଜରଣ ସୃଷ୍ଟି ହେଇଚି ତାର ଅଲକ୍ଷରେ ।

ସେଲିନା କିନ୍ତୁ ଜାଣେ ସେ କାହାରି ଦୟାରେ ସେଠାକୁ ଆସିନାହିଁ । ଏପରିକି ସରକାରଙ୍କ ଦୟାରେ ମଧ୍ୟ ନୁହେଁ । ତାର ନିଜ ମେରିଟ ତାକୁ ସେଠାକୁ ନେଇ ଆସିଚି । ତେଣୁ ସେ ଚିନ୍ତା କରିବ କାହିଁକି ? ଭୟ କରିବ କାହାକୁ ?

ସେଲିନା ଯାହାକୁ ତା ଜୀବନରେ ସବୁଠୁ ବେଶି ଭୟ କରେ ତାହା ହେଲା ମିଥ୍ୟା ବା ଛଳନା । ଏସ୍.ଓ.ଏସ୍. ଭିଲେଜରେ ତାର 'ବାପା' ତାକୁ କହିଥିଲେ ଈଶ୍ୱରଙ୍କୁ ଭୟ କରିବୁନି ସେଲିନା । ଭୟ କରିବୁ ମିଥ୍ୟାକୁ । ମିଥ୍ୟା ମଣିଷର ଭୟଙ୍କର ଶତ୍ରୁ । ଛଳନା ମଣିଷର ପ୍ରଧାନ ପ୍ରତିଦ୍ୱନ୍ଦ୍ୱୀ । ସେ ତାକୁ ଉଠିବାକୁ ଦିଏନା ।

ସେଲିନାର ମନେ ହେଲା ତା ପାଦତଳର ମାଟିକୁ ଯେମିତି କିଏ ଟାଣି ନେବାକୁ ଚେଷ୍ଟା କରୁଚି । ତେବେ ସେ କଅଣ ପଡ଼ିଯିବ ? ନା ଠିଆ ହେବା ପାଇଁ ଅନ୍ୟ କାହାରି ସାହାଯ୍ୟ ଦରକାର ? କିନ୍ତୁ କିଏ ତାକୁ ସାହାଯ୍ୟ କରିବ ? ନିଜ ଗୋଡ଼ରେ ଠିଆ ହୋଇପାରୁ ନଥିବା ଲୋକଟିକୁ କିଏ କାହିଁକି ସାହାଯ୍ୟ କରିବ ? ସେଲିନାର ମନେ ପଡ଼ିଗଲା ସେ ଆଗର ଛବି । କେମିତି କେଜାଣି ସେଦିନ ସେ ଛବିଟି ତା ମୁଣ୍ଡକୁ ଆସିଥିଲା । 'ସେମାନେ ଆଗକୁ ଚାଲିଛନ୍ତି ।' କିଏ କହିଥିଲେ ତାକୁ ଏକଥା ? ତାର ମନେ ପଡ଼ିଲା- ଗର୍କୀ କହିଥିଲେ କୋଉ ସୃଷ୍ଟିର ଆବହମାନ କାଳରୁ ମଣିଷ ଚାଲିଚି । ଏବଂ ଅସରନ୍ତି ସୁଅ ଭିତରେ ତାର ବାପା ମାଆ ବନ୍ଧୁ ବାନ୍ଧବ ସମସ୍ତେ ଅଛନ୍ତି । ସେମାନେ ବି ଚାଲିଛନ୍ତି । କାହିଁ ସେମାନଙ୍କୁ ତ କେହି କେବେ ସାହାଯ୍ୟ କରିବା କଥା ଶୁଣାଯାଇ ନାହିଁ । ତେବେ ସେ କାହିଁକି କାହାକୁ ଅପେକ୍ଷା କରିବ ? ତା ଗୋଡ଼ କଅଣ ଦୁର୍ବଳ କି ? ସେ ଠିକ୍ ଠିଆ ହୋଇ ପାରିବ । ପାଦତଳୁ ମାଟି ଖସି ଗଲେ ମଧ୍ୟ ସେ ସଳଖି ଠିଆ ହେବ ।

ସେଦିନ ସେଲିନାର ସେ କଲେଜରେ ପ୍ରଥମ କରି କ୍ଲାସ ନେବାର ଥାଏ । ଜୀବନର ପ୍ରଥମ ଚାକିରିର ପ୍ରଥମ କାମ । ପ୍ରିନ୍ସିପାଲ ତାକୁ ସାଥିରେ ନେଇ ଚତୁର୍ଥ ବର୍ଷର ଗୋଟିଏ କ୍ଲାସକୁ ନେଇଗଲେ । ସେ ତାଙ୍କ ପ୍ରାରମ୍ଭିକ ଭାଷଣରେ ପିଲାମାନଙ୍କୁ ସେଲିନା ସହିତ ପରିଚୟ କରାଇଦେଲେ । ସେଲିନାର ଏକାଡେମୀକ୍ ରେକର୍ଡ଼ ସମ୍ବନ୍ଧରେ ମଧ୍ୟ କହିଲେ । କିନ୍ତୁ ସେଲିନା ଲକ୍ଷ୍ୟ କଲା ପ୍ରିନ୍ସିପାଲ ଯେତେବେଳେ ତା ନାମକୁ ଉଚ୍ଚାରଣ କରି ସେ ଏସ୍.ଓ.ଏସ୍. ଭିଲେଜରେ ବଢ଼ିଛନ୍ତି ବୋଲି କହିଲେ ପିଲାମାନେ ତାଙ୍କର ମାନସିକତାକୁ ଯେମିତି ଭାବରେ ଲୁଚେଇଲେ କିମ୍ୱା ସେମାନଙ୍କ ଭିତରୁ କେହି ଯେମିତି ନିଜକୁ ପ୍ରକାଶ କଲେ ତାହା ଲୁଚି ରହି ନାହିଁ ।

ସେଲିନା ଭିତରେ ସେତେବେଳେ ଗୋଟାଏ ଅହେତୁକ ଉଦ୍‌ଗୀରଣ ହେବାକୁ ଯାଉଥିଲା । କିନ୍ତୁ ତାକୁ ସେ ଜୋର କରି ନିଜ ଭିତରେ ଅଟକେଇ ନେଲା । ଅଧ୍ୟକ୍ଷ ମହୋଦୟ କ୍ଲାସରୁ ବିଦାୟ ନେଲା ପରେ ସେଲିନା ତା ନିଜ ଏସ୍.ଓ.ଏସ୍. ଭିଲେଜ ବିଷୟରେ ଅଧିକ ଭଲ ଭାବରେ କହିଲା ଏବଂ ତା'ପରେ ସେ ପିଲାମାନଙ୍କୁ ନିଜ ନିଜର ପରିଚୟ ଦେବାକୁ କହିଲା । ପରିଚୟ ପ୍ରଦାନ ପର୍ବ ଶେଷ ହେଲା ପରେ ସେଲିନା ବୁଝିଲା ଯେ ସେ କ୍ଲାସରେ ଯୋଉମାନେ ଅଛନ୍ତି ସେମାନେ କେହି ତା ସ୍ତରରୁ ଆସି ନାହାନ୍ତି । ସେମାନେ ସମସ୍ତେ ଅନେକ ଉପରେ ଥିଲେ ଓ ଅଛନ୍ତି । ସେ ସ୍ତରର ସୀମା କେଉଁଠି ତାକୁ ସେ ଖୋଜିବାକୁ ଚେଷ୍ଟା କରୁ ନଥିଲା । ହଜାର ହଜାର ବର୍ଷତଳୁ ଯୋଉ ବିଭାଜନ ରେଖା ସୃଷ୍ଟି ହେଇଚି ତାକୁ ସଂକୀର୍ଣ୍ଣ କରିବ କିଏ ?

ତା'ପରେ ସେ ତାର ଭାଷଣ ଆରମ୍ଭ କଲା । ଗୋଟାଏ ଜେନେରାଲ କ୍ଲାସ ନେବା ଉଦ୍ଦେଶ୍ୟରେ ସେ ତାର ଭାଷଣ  ଆରମ୍ଭ କଲା । ସେ ପିଲାମାନଙ୍କୁ ବିଜ୍ଞାନ କିପରି ଏକବିଂଶ ଶତାବ୍ଦୀରେ ନୂଆ ରୂପ ଗ୍ରହଣ କରିଚି ତା'ରି ଉପରେ କହିଲା । ବିଜ୍ଞାନ ମଣିଷକୁ ଧୀରେଧୀରେ କିପରି ଏକତ୍ର କରି ଦେଉଚି ସେକଥା ବୁଝାଇଲା ।

ପ୍ରାୟ ଘଣ୍ଟାଏ କାଳ ସେ ବିଜ୍ଞାନର ଜଟିଳ ତତ୍ତ୍ୱର ଉଦାହରଣ ଦେଇ କହୁଥିବାବେଳେ ସେ ଦେଖିଲା ପିଲାମାନେ ତା କଥାକୁ ମନପ୍ରାଣ ଦେଇ ଶୁଣୁଚନ୍ତି । ଏଇ ଟିକେ ଆଗରୁ ଯୋଉମାନେ ନିଜର ଉଚ୍ଛୃଙ୍ଖଳ ଆଚରଣ ପାଇଁ କ୍ଲାସରେ ବାରିହେଇ ପଡୁଥିଲେ ସେମାନେ ସବୁ ନିର୍ବାକ୍ ନିସ୍ତବ୍ଧ ହେଇ ଯାଇଚନ୍ତି । ସେ ନିଜର ଆତ୍ମସନ୍ତୋଷରେ ଅଧୀର ହେଇ ଉଠୁଥିଲା । ତାର ମନେ ହେଉଥିଲା ଇତିହାସର ସେ ବିଜେତାମାନେ ଯେମିତି ଆଜି ଗୋଟାଏ ଅର୍ଥଶୂନ୍ୟ ଆଖିରେ ତା ଆଡ଼କୁ ଅନେଇ ରହିଛନ୍ତି । ସେ ହୁଏତ ଭାବୁଥିଲା ଏଇଟା ତାର ଦୁର୍ବଳତା ନୁହେଁ, ବିଜୟର ଭାବ ବିହ୍ୱଳତା ।

(ଇସ୍ତାହାର, ୨୦୦୪)

# ମୋଡ଼ା

ସୁବୋଧ ସେଦିନ କଲେଜରୁ ଫେରିଲା ଏବଂ ଲମ୍ବ ହୋଇ ବିଛଣାରେ ପଡ଼ିଗଲା । ସେ ଜୋତା ମଧ୍ୟ ଖୋଲି ନଥିଲା ବୋଲି ଗୋଡ଼ ଦି'ଟାକୁ ସାମାନ୍ୟ ଖଟ ବାହାରକୁ ରଖିଥିଲା । ତା ହାତରେ ଥିବା ଇତିହାସର ମୋଟା ବହିଖଣ୍ଡକ ମଧ୍ୟ ବହି ଥାକ ପର୍ଯ୍ୟନ୍ତ ଯାଇ ନପାରି ବିଛଣାରେ ଗୋଟିଏ ପାଖରେ ପଡ଼ିଥିଲା । ସୁମିତ୍ରା ଅନେକ ସମୟ ହେଲା ସୁବୋଧକୁ ଘରୁ ନ ବାହାରିବାର ଦେଖି ରୋଷଇ ଘରୁ ଉଠି ଆସିଲା । ପ୍ରକୃତରେ ସେଇଟା ରୋଷେଇ ଘର ନଥିଲା । ଥିଲା ରୋଷେଇ ପାଇଁ ଗୋଟାଏ ଓପନ୍ ସ୍ପେସ୍, ଯାହାର ଦୁଇ ପାଖରେ ଅସ୍ଥାୟୀ ପ୍ଲାଇଉଡ୍‌ର ବିଭାଜିକା କାନ୍ଥ କରାଯାଇଥିଲା । ତା'ରି ଭିତରେ ଗ୍ୟାସ୍ ଓ କିରାସିନି ଷ୍ଟୋଭ୍‌ରେ ସେ ରୋଷଇ କରୁଥିଲା । ଷ୍ଟୋଭ୍ ଶବ୍ଦରେ ପ୍ରଥମେ ସୁମିତ୍ରା ଜାଣିପାରି ନଥିଲା ସୁବୋଧର ଆସିବାର ଶବ୍ଦ । ପରେ ବେଡ୍‌ରୁମ୍‌କୁ ପଶିଲା ବେଳକୁ ହିଁ ଜାଣିପାରିଲା ।

ସୁବୋଧ ଆସିଲା ମାତ୍ରେ ପ୍ରଥମେ ଜୋତା ଖୋଲି ଦୁଆର ମୁହଁ ପାଖ ଷ୍ଟାଣ୍ଡରେ ରଖେ । ତା'ପରେ ବେଡ୍‌ରୁମ୍ ଭିତରକୁ ଯାଇ ଲୁଗାପଟା ବଦଳାଇଲା ବେଳକୁ ସୁମିତ୍ରା ଯାଇ ଆବଶ୍ୟକ ନଥିଲେ ମଧ୍ୟ ତା ହାତକୁ ତଉଲିଆ ବଢ଼େଇ ଦିଏ ଓ ସାର୍ଟ ପ୍ୟାଣ୍ଟ ନେଇ ସଜାଡ଼ି ରଖିଦିଏ । ତା'ପରେ ସେ ଚା' ତିଆରି କରିବାକୁ ଚାଲିଯାଏ । କିନ୍ତୁ ଆଜି ସେ ଷ୍ଟୋଭକୁ ଲିଭେଇ ଦେଇ ଉଠିଆସିଲା ଏବଂ ସୁବୋଧକୁ ଏଇ ଅବସ୍ଥାରେ ଶୋଇଥିବାର ଦେଖି କହିଲା, ସରି, ମୋର ଡେରି ହୋଇଗଲା । ଉଠ, ମୁଁ ସାର୍ଟଖୋଲିଦଉଚି । ହେଇ ଜୋତା ବି ଖୋଲୁଚି ।''

କେଇଟା ମାସର ବୈବାହିକ ସୁଖର ସାନ୍ନିଧ୍ୟ ପାଇବାକୁ ଦୀର୍ଘ ଚାରିବର୍ଷ ଅପେକ୍ଷା କରିବାକୁ ପଡ଼ିଥିଲା । ସେମାନଙ୍କ ସମ୍ପର୍କ ଆରମ୍ଭ ହୋଇଥିଲା ଏମ୍.ଏ. ପଢ଼ିଲାବେଳକୁ । ଜଣେ ଇତିହାସରେ ଓ ଆଉ ଜଣେ ଇଂରାଜୀରେ । ଗୋଟିଏ ୟୁନିଭରସିଟିରେ । ସୁବୋଧ ଇତିହାସରେ ପ୍ରଥମ ଶ୍ରେଣୀରେ ପ୍ରଥମ ହେଲା ବେଳକୁ ସୁମିତ୍ର ମଧ୍ୟ ଇଂରାଜୀରେ ପ୍ରଥମ ଶ୍ରେଣୀ ପାଇଲା ।

''ଏବେ ତୁମେ କ'ଣ ଯୋଜନା କରୁଛ ? କେମିତି ରକ୍ଷା କରିହେବ ଏ ସମ୍ପର୍କ ?'' ପରୀକ୍ଷା ଫଳ ପ୍ରକାଶପାଇବାର ପରଦିନ ହିଁ ସେମାନେ ଭେଟିଥିଲେ ଗୋଟାଏ ରେଷ୍ଟୁରାଣ୍ଟରେ ଏବଂ କଫି କପ୍‌ରେ ପ୍ରଥମ ଓଠ ଲଗାଇବାବେଳକୁ ପଚାରିଥିଲା ସୁମିତ୍ରା ।

ସୁବୋଧ ହସିଦେଲା ଏବଂ କହିଲା- ''ସମ୍ପର୍କ ହେଲାଣି କୋଉଠି ସୁମିତ୍ରା ? ଭାବଗତ ରାଜ୍ୟରେ ଆମ ଭିତରେ ଗତ ଦୁଇବର୍ଷ ହେଲା ଯୋଉ ସମ୍ପର୍କ ଗଢ଼ି ଉଠିଛି ତାକୁ ଆମେ ଯଦି ପ୍ରେମ ବୋଲି କହିବା ତେବେ ତା'ର ପବିତ୍ରତା ପୃଥିବୀରେ ଶ୍ରେଷ୍ଠତମ ସ୍ଥାନ ଅଧିକାର କରିବ । ଏଇ ସମୟ ଭିତରେ ତମେ ମୋତେ ଯାହା କହିବାକୁ ଚାହୁଁଥିବ ତାକୁ ପ୍ରକାଶ ନ କରି ତା'ର ପବିତ୍ରତାର ସ୍ଥାନକୁ ଆହୁରି ଉପରକୁ ନେଇ ଯାଇଚ । ଅନେକ ସମୟରେ ମୋ ଭିତରେ ମଧ୍ୟ ସେଇ ଉଦ୍‌ବେଳନର ଛୋଟ ଛୋଟ ଢେଉ ଯେ ସୃଷ୍ଟି ହେଉନାହିଁ ସେ କଥା ନୁହେଁ । କିନ୍ତୁ ତୁମର ସେ ଆନ୍ତରିକତାକୁ ମୁଁ ସମ୍ମାନ ଦେବାକୁ ଚାହୁଁଥିଲି ।''

ପ୍ରେମରେ ପବିତ୍ରତା ହିଁ ଯେ ବଡ଼ କଥା, ଏହା ତୁମେ ସ୍ୱୀକାର କର ?

ସୁମିତ୍ରା ଝାଳେଇ ଯାଇଥିଲା ଏଇ କଥା ପଦକରେ । ଏଇଥିପାଇଁ ତ ସୁମିତ୍ରା ସବୁବେଳେ ସୁବୋଧକୁ ବେଶି ଭଲପାଇ ଆସିଛି ।

''ତେବେ ତୁମେ କଅଣ ଚିନ୍ତା କରୁଚ ?'' ପଚାରିଲା ସୁମିତ୍ରା ତଳକୁ ମୁହଁ ପୋତି ।''

''ଯେମିତି ଭାବରେ ଆମେ ସବୁବେଳେ ପାଖରେ ଥାଇ ମଧ୍ୟ ନିଜକୁ ଅନେକ ଦୂରରେ ରଖି ଆସିଚୁଁ । ସେ ବ୍ରତ ଯେତେ ଦୁରୂହ ହେଲେ ମଧ୍ୟ ପାଳିବାକୁ ପଡ଼ିବ ଆଉ କିଛିଦିନ ପାଇଁ । ହବ ନାହିଁ ?'' ପ୍ରଶ୍ନ କଲା ସୁବୋଧ । ''ଏବେ ଚାକିରିର ବଜାର ତ ଦେଖୁଚ । ପି.ଏଚ୍.ଡି.ଟିଏ ନ କଲେ କୋଉଠି ଜାଗା ମିଳିବ ?''

ସେଇ ସୁବୋଧ ପି.ଏଚ୍.ଡି. ପାଇଲା ପରେ ଗୋଟିଏ ପ୍ରାଇଭେଟ କଲେଜରେ ବର୍ଷଟିଏ ରହିଲା ପରେ ସୁମିତ୍ରା ସହିତ ସ୍ଥାୟୀ ସମ୍ପର୍କର ଖିଅଟିଏ ଯୋଡ଼ିଦେଲା । ସେମାନେ ଗଡ଼ ଜିଣି ଆସିଲେ ଯେମିତି । ପ୍ରଥମ ସ୍ପର୍ଶର କଥା ଏବେ ତା'ର ଅତି ସ୍ପଷ୍ଟ ଭାବେ ମନେ ଅଛି । ଏଇ କେଇ ମାସ ଭିତରେ କେମିତି ତାକୁ ଭୁଲିହେବ ? ସୁବୋଧର ଅଭିମାନ କିଛି କମ୍ ନୁହେଁ ।

ସୁବୋଧର ମୁହଁଟାକୁ ଧରି ନିଜ ଆଡ଼କୁ ଟାଣି ଆଣିଲାବେଳକୁ ସେ ଦେଖିଲା ଏ ମୁହଁଟା ତ ଅଭିମାନର ନୁହେଁ । ଏଇଟା ତ ଦୁଃଖର ପରସ୍ତ ପରସ୍ତ ଆସ୍ତରଣ ତଳେ ଚାପି ହୋଇଯାଇଥିବା ମୁହଁ । କୋଇଲା ଇଞ୍ଜିନ୍ ଥିବା ପାସେଞ୍ଜର ଗାଡ଼ିରେ ଦୀର୍ଘ ସମୟ ଯାତ୍ରା କରିଥିବା ଯାତ୍ରୀର ମୁହଁ ପରି ଶୁଷ୍କ ଓ ମଳିନ ।

ସେ ଚମକି ପଡ଼ିଲା । ''କଅଣ ହେଲା ? ତମ ଦେହ ଭଲ ନାହିଁ ?'' ସେ ତା ଦେହ, ଛାତି ବେକ, ମୁହଁର ସବୁଠି ହାତ ବୁଲାଇ ଆଣିଲା ।

''ଆଜି ବି ଭୁବନେଶ୍ୱରରୁ ଲୋକ ଫେରି ଆସିଲା । ସେଠୁ ଗ୍ରାଣ୍ଟ ମିଳିବାର କୌଣସି

ସୂଚନା ମିଳିନାହିଁ । କେବେ ମିଳିବ ସେ କଥା ମଧ୍ୟ ସେମାନେ କହିପାରୁ ନାହାନ୍ତି । ସରକାର ଯୋଉ ନୀତି ଘୋଷଣା କରିଥିଲେ ତାର ପରିବର୍ତ୍ତନ ହେବ ବୋଲି କହୁଚନ୍ତି । ତା'ମାନେ ପୁଣି ଗୋଟେ ଅନିଶ୍ଚିତ ଅବସ୍ଥା ।''

''ଓହୋ ! ଏଇଥିପାଇଁ ତମର ଚିନ୍ତା ? ଏଇଟା କଅଣ ତୁମକୁ ଶୋଭା ପାଏ ? କଲେଜ ଯେତେବେଳେ ଅଛି, ପିଲାମାନେ ପାଠ ପଢୁଛନ୍ତି, ସେତେବେଳେ ଏଇ କଥାଟା ଉପରେ ଏତେ ମନସ୍ତାପ କରିବାର କାରଣ ମୁଁ ବୁଝିପାରୁନି । ତମେ ଉଠିଲ । ଉଠ । ମୁଁ ଜଳଖିଆ କରିସାରିଚି ।''

ସୁବୋଧର ବେକ ପାଖରେ ହାତ ଦେଇ ସୁମିତ୍ରା ଉଠାଇ ଦେଲା ଏବଂ ସାର୍ଟର ବୋତାମ ଖୋଲିବା ଆରମ୍ଭ କଲା ।

''ଏଥିରେ ଏତେ ଭାବିବାର କଅଣ ଅଛି ?'' ପଚାରିଲା ସୁମିତ୍ରା ।

''ନାହିଁ ? ବର୍ଷେ ହେଲା ହଜାରେ ଟଙ୍କାରେ ଜଣେ ଚଳିପାରିବ ?''

''ମୁଁ ବି ତ ଅଛି ! ମୋର ବି ସେଇ ଅବସ୍ଥା । ମୁଁ ତ ଚାରିବର୍ଷ ହେଲା ସେଇ ହଜାରେ ପାଉଛି । ସେତକ ପୁଣି ଦୁଇତିନି ମାସରେ ।'' ସେ ସୁବୋଧର ଜୋତା ଖୋଲିବାକୁ ହାତ ବଢ଼ାଇଲା ବେଳକୁ ସୁବୋଧ ବାଧା ଦେଲା ।

''ପ୍ଲିଜ୍, ତମେ ଏମିତି କରନାହିଁ । ମୁଁ ନିଜେ ଖୋଲିବିନି ?''

''ମୁଁ କଲେ ଆପତ୍ତି ଅଛି ?''

''ଅଛି । ମୁଁ ତୁମକୁ ସେମିତି ଭାବରେ ଦେଖିବାକୁ ଚାହେଁ ଯେମିତି ତୁମକୁ ଦେଖୁଥିଲି କଲେଜରେ ।''

କେତେ ଭଲ ଥିଲେ ଆମେ ସେତେବେଳେ ? ସୁନ୍ଦର ଦିନ ।''

''କିନ୍ତୁ ଆଜି ସେ ଦିନ ବଦଳି ଯାଇଚି ?''

''କିଛି ବଦଳିନି । ତୁମେ ମୋର ସ୍ତ୍ରୀ, ଏକଥା କହିଲାବେଳେ ମୁଁ ନିଜେ ସଂକୁଚିତ ହୋଇଯାଏ । ତୁମକୁ ମୁଁ ଛୋଟ କରି ଦେଉଚି ବୋଲି ମୋର ମନେହୁଏ ।''

ସୁବୋଧ ସାର୍ଟପ୍ୟାଣ୍ଟ ଖୋଲି ଠିକ୍ ଜାଗାରେ ରଖି ପାଇଜାମା ଓ ପଞ୍ଜାବୀ ପିନ୍ଧି ସୁମିତ୍ରା କାନ୍ଧରେ ହାତରଖି ଆଗେଇ ଚାଲିଲା ରୋଷେଇଘର ଆଡ଼କୁ । ''କଅଣ ଜଳଖିଆ କରିଚ ?''

''ଚକୁଳି ।''

''ଓଃ, ନାଇସ୍ । ମୋର ପ୍ରିୟ ଖାଦ୍ୟ । ତେବେ ତ ଆଜି ରାତିରେ ମଧ୍ୟ ମୁଁ କିଛି ଖାଇବିନି ।'' ରୋଷେଇଘରେ ଆସନ ଖଣ୍ଡେ ପକେଇ ସେ ବସିପଡ଼ିଲା ଏବଂ କହିଲା, ''ତୁମେ ବି ବସ । ଏକାଠି ଖାଇବା ।''

''ନାଇଁ । ମୁଁ ଖଣ୍ଡିଏ ଖଣ୍ଡିଏ କରୁଚି । ତୁମେ ଖାଅ । ଦେଖିବି କେତେଖଣ୍ଡ ଖାଇପାରୁଚ । ଗରମ ଥିଲେ ଭଲ ।''

''ମୁଁ ଏ ବୈଦିକ ଯୁଗର ନାରୀ ମାନସିକତାରେ ବିଶ୍ୱାସ କରେ ନାହିଁ । ତୁମେ 'ମନୁ' ସମୟକୁ ଫେରିଯିବାକୁ ଚାହୁଁଚ ? ତୁମେ ଏକବିଂଶ ଶତାବ୍ଦୀ ନାରୀ ନୁହେଁ ? ଇଂରାଜୀ ଅଧ୍ୟାପିକା ସୁମିତ୍ରା ମହାପାତ୍ର ନୁହେଁ ?''

''ସୁବୋଧ ! ଅମାନିଆ ହୁଅନି । ନାରୀଟା ଯୁଗେ ଯୁଗେ ନାରୀ । ଇଂଲଣ୍ଡ ଓ ଆମେରିକାର ନାରୀମାନେ ସ୍ପେଶକୁ ଯିବା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲାବେଳେ ଘରେ ସ୍ୱାମୀ ପାଇଁ ନିଜେ ରାନ୍ଧିବାକୁ ଅଧିକ ସୁଖ ପାଆନ୍ତି । ଦିନକୁ ଆଠ ଦଶ ଘଣ୍ଟା ଅଫିସ୍ କି କାରଖାନାରେ କାମ କରୁଥିବା ନାରୀ ତା ସନ୍ତାନର ସବୁ କାମ ନିଜେ କରେ । ସ୍ୱାମୀ ପାଇଁ ବିଛଣା ବି ସଜାଡ଼ି ଦିଏ । ସେ କାମଟା ନାରୀଠାରୁ କେହି ଛଡ଼ାଇ ନେଇପାରିନି । କୌଣସି ଯୁଗରେ ନୁହେଁ । ତୁମେ କଅଣ ଭାବୁଚ ଆମେରିକା ରାଷ୍ଟ୍ରପତିଙ୍କ ସ୍ତ୍ରୀ ତାଙ୍କ ସ୍ୱାମୀଙ୍କୁ ଖାଇବାକୁ ବାଢ଼ି ଦିଅନ୍ତିନି ଟେବୁଲ ଉପରେ ? କରନ୍ତିନି ସେ କାମ ଇଂଲଣ୍ଡର ମହାରାଣୀ ତାଙ୍କ ସ୍ୱାମୀଙ୍କ ପାଇଁ ?''

ସୁବୋଧ ଆଉ ଯୁକ୍ତି କଲାନି । ସୁମିତ୍ରା ଗୋଟିଏ ଥାଳିରେ ଦୁଇ ଜଣଙ୍କ ପାଇଁ ଚକୁଳି ଓ କିଛି ସନ୍ତୁଳା ଆଣି ଥୋଇଲା ଓ ଆଉ ଖଣ୍ଡିଏ ଆସନ ଟାଣିଆଣି ବସିପଡ଼ିଲା ।

ଖାଉଖାଉ ସେ କହିଲା- ''ଆଜି ସକାଳେ ତୁମେ ବାହାରିଗଲା ପରେ ଘରବାଲା ଆସିଥିଲା ।''

''କଅଣ କହିଲ ତାଙ୍କୁ ? ସେ ତିନିମାସ ହେଲା ଘରଭଡ଼ା ପାଇନାହାନ୍ତି ।''

''ମୁଁ କହିଲି ମଉସା, ଆପଣ ଟିକେ ଅପେକ୍ଷା କରନ୍ତୁ । ଆପଣ ଆମ ଅଧ୍ୟାପକ ଚାକିରି କଥା ତ ଜାଣିଥିବେ । ପୂର୍ବ ଜନ୍ମର ଅଭିଶାପ ଓ ଏ ଜନ୍ମର ପିତୃମାତୃ ପୁରୁଷର ଅମାପ ଆଶୀର୍ବାଦ, ଏ ଦୁଇଟିର ସଂଗମରୁ ଅଧ୍ୟାପକ ପଦଟିଏ ସୃଷ୍ଟି ହୋଇଛି । ସେଥିରୁ ମୁକ୍ତି କାହିଁ ?''

''କଅଣ କହିଲେ ସେ ?''

''ହୋ, ହୋ ହେଇ ହସିଲେ । ଆଉ କଅଣ କହିବେ ? ଚା' ବି ଖାଇଲେନି । କିନ୍ତୁ ଉଠିଲାବେଳେ ଗୋଟାଏ କଥା କହିଲେ ।''

''କଅଣ ?'' ଚମକିପଡ଼ିଲା ସୁବୋଧ ।

''ନା, ଡରନି । ମନ୍ଦ କଥା କହି ନାହାନ୍ତି । କହିଲେ, ଅନୁମତି ଦେଲେ କହିବି, ସାହସ ହଉନି । ମୁଁ କହିଲି କହନ୍ତୁ, ଆପଣ ଆମକୁ ପର ବୋଲି ଭାବନ୍ତି କି ?''

''ଦୁହିଙ୍କର ସନ୍ଧ୍ୟାବେଳେ କିଛି କାମ ନ ଥିବ । କିଛି ସ୍କୁଲ୍ ପିଲାଙ୍କୁ ପାଠ ପଢ଼ାନ୍ତେନି ? ମୁଁ ଠିକ୍ କରିଦେବି । ସେମାନେ ମଧ୍ୟ.....।''

ମୁଁ କହିଲି, "ମନ୍ଦ ହୁଅନ୍ତାନି । କିନ୍ତୁ ଆଜିକାଲି ପିଲାମାନେ କୋଚିଂ ସେଣ୍ଟରକୁ ଯିବାକୁ ପସନ୍ଦ କରନ୍ତି । ସେଠି ଅନେକ ପ୍ରକାର ଲାଭ ଅଛି । ସେଠି ସେମାନେ 'ସିଓର୍

ସକ୍‌ସେସ୍‌'ର ଗ୍ୟାରେଣ୍ଟି ପାଆନ୍ତି । ପୁଣି ଯାହାର ଯୋଉ ଡିଭିଜନ୍ ଦରକାର ତାକୁ ବି ପାଆନ୍ତି । ବୁଢ଼ା କଅଣ କହିଲେ ଜାଣ ?''

''କଅଣ ?''

''ଏ ପୃଥିବୀରେ ଅସାଧୁତାର ମେଣ୍ଟ ଯେତେ ଶୀଘ୍ର ହୋଇପାରେ, ସାଧୁତାର ମେଣ୍ଟ ସେମିତି ମୋଟେ ହୋଇପାରେନା ।'' ସୁମିତ୍ରା କହିଲେ ।

''ତୁମେ ଜାଣ ସେ ପ୍ରାଇମେରୀ ସ୍କୁଲର ହେଡ୍ ପଣ୍ଡିତ ଥିଲେ ? ପ୍ରାଇମେରୀ ସ୍କୁଲ ଶିକ୍ଷକଙ୍କର କାମ କଅଣ କହିଲ ? ପାଠର ମାନଦଣ୍ଡ ତିଆରି କରିବା । ମଣିଷ ପଣିଆର ମୂଳଦୁଆ ଦେବା । ସେମାନେ ବୁଝନ୍ତି ଏବର 'କୋଚିଂ'ର ମାନେ କଅଣ ।'' ସୁବୋଧ ଖାଉ ଖାଉ କହୁଥାଏ ।

''ନିଅ, ଏଇଟା ଶେଷ ଖଣ୍ଡ ।'' ସୁମିତ୍ରା ବଢ଼େଇ ଦେଲେ ।

''ମୁଁ ଆଉ ପାରିବିନି । ଖାଉ ଖାଉ ଅନେକ ଖାଇଦେଲିଣି ।''

''ଦେଖି, ପେଟ ଦେଖି ?''ଦୁହେଁ ହସି ଉଠିଲେ ସିନା, କିନ୍ତୁ ଚମକି ପଡ଼ିଲା ସୁବୋଧ । କାହାର ଏ ସ୍ୱର ? କିଏ କହିଲା ଏକଥା ? ଅନେକ ପ୍ରିୟ ଓ ପରିଚିତ ମନେ ପଡୁଛି । କିଏ ଲୁଚିଛି ଏଠି ? କୋଉଠି ?

ସେ ସୁମିତ୍ରାକୁ ଦେଖୁଥିଲା । ସୁମିତ୍ରା ଖଡ଼ିକାରେ ଶେଷ ଚକୁଳିଖଣ୍ଡକ ତାଓ୍ୱାରୁ ଆଣି ରଖି କହିଲା, ''ଏଇଟା ସାରି ଦିଅ ତ ।''

ସୁବୋଧ ତଥାପି ଦେଖୁଥିଲା ସୁମିତ୍ରାକୁ । ତା' ଆଖିରେ ଢଳଢଳ ହେଉଥିଲା ଆଖିଏ ଲୁହ । ସୁମିତ୍ରା ସେଥିରୁ ଖଣ୍ଡେ ଛିଣ୍ଡାଇ ନେଇ ସୁବୋଧ ପାଟିରେ ଦେଉଦେଉ କହିଲା, ''That's like a good boy. ''

ଦୁବୋଧ ଭିତରେ ଅଚାନକ ଭାବବିହ୍ୱଳତାର ଝଡ଼ଟିଏ ସୃଷ୍ଟି ହେଲା । ତା ତଣ୍ଟି ପାଖରେ ସବୁ ପିଠାତକ ଯେମିତି କିଏ ଭିତର ପଟୁ ଠେଲି ଧରୁଚି । ସେ ଭାବିଲା, ସୁମିତ୍ରା ବି ତ ଦିନେ ମାଆ ହେବ । ଆଉ ବେଶି ଡେରି ନାହିଁ । ତା ଆଖି ଉଚ୍ଛୁଳାଇ ଦୁଇ ଧାର ଲୁହ ମାଡ଼ି ଆସିଲା ଏବଂ ସୁମିତ୍ରା ସଙ୍ଗେ ସଙ୍ଗେ ତାକୁ ନିଜ ପଣତ କାନିରେ ପୋଛି ଦେଇ କହିଲା, ''କଅଣ ଚାଟିଚି ?''

ତାତିଟା ସୁବୋଧର କୋଉଠି ଉଠିଚି ସେ କଥା ସେ ହିଁ ବୁଝୁଥିଲା । ନିଜ ଶୈଶବରେ ସେ କେମିତି ଚକା ପକେଇ ଚୁଲିମୁଣ୍ଡରେ ବସୁଥିଲା ! ଆଉ ଏବେ ସେ ବସିଚି ରୋଷେଇ ଘରେ । ସୁମିତ୍ରା ତା ପାଟିରେ ଗୁଞ୍ଜି ଦେଉଚି । ସେଇ ସୁମିତ୍ରା ପୁଣି ଆଉ କେଇମାସ ପରେ ଦୁଇ ଗୋଡ଼ ଲମ୍ୱେଇ ଦୁଇ ଚାରିମାସରେ ମିଳୁଥିବା ଦୁଇହଜାରର ପରିବାରର ବୋଝ ହେଇ ଆସିଥିବା ଅତିଥିକୁ କ୍ଷୀର ପିଆଉଥିବ 'ଓଲ ଓଲ' କହି ।

ସମ୍ଭାଳିପାରୁ ନ ଥିବା ବୋଝ ଉପରେ ଆଉ ଗୋଟାଏ ବୋଝ ।

''ପଞ୍ଚମ ଶ୍ରେଣୀର ଚାରୋଟି ପିଲା । ଶହେ ଟଙ୍କା ଲେଖାଏଁ ଦେବେ କହୁଛନ୍ତି । କ୍ଷତି କଅଣ ?'' ହାତ ଧୋଉ ଧୋଉ ସୁମିତ୍ରା କହିଲା ।

ଭାବିଲା ସୁବୋଧ ମାସକୁ ଚାରିଶହ । ମହାମାନ୍ୟ ଅତିଥିଙ୍କ କ୍ଷୀରକୁ ନିଅଣ୍ଟ । ଆଉ ଆମର କି ଭରସା ଅଛି ସେ କଲେଜ ଉପରେ ?

ସେଦିନ ସୁମିତ୍ରା କହିଲା, ''ଆସନ୍ତା ସପ୍ତାହରୁ ମୁଁ ଆଉ କଲେଜ ଯିବିନି ଭାବୁଚି । ଆଜି ପ୍ରିନ୍ସିପାଲଙ୍କୁ ଛୁଟି ଦରଖାସ୍ତ ଦେଇଦେବି ।''

ଚାହିଁଲା ସୁବୋଧ ସୁମିତ୍ରାକୁ । ''କାହିଁକି ? ସେମିତି କିଛି ଅସୁବିଧା ତ ଜଣାପଡୁନି । ଆଉ ମାସେ ଖଣ୍ଡେ ଯାଉ । ମୋର କହିବାର କଥା ତୁମେ ଏବେ ଯେତେ ଆକ୍ଟିଭ୍ ରହିବ ସେତେ ଭଲ । ଡାକ୍ତର ସେଇକଥା ତ କହିଥିଲେ ।''

''ଯିଏ ଦୈନିକ ଦେଖୁଥାଏ, ତାକୁ ପରିବର୍ତ୍ତନ ଜଣାପଡ଼େନି । କିନ୍ତୁ ମୋତେ ଖରାପ ଲାଗୁଚି । କଲେଜରେ ଶୈଳଜା ମ୍ୟାଡାମ୍ କହିଲେ, ''କିଲୋ, ତୁ ଏଥର ଛୁଟି ନେଉନୁ ? ତୁ ତ ଚାଲି ପାରୁନି କି ଚେଆରରେ ବସି ବି ପାରୁନୁ । କ୍ଲାସରେ ପିଲାମାନେ ମୁରୁକି ମୁରୁକି ହସିବାକୁ ଆରମ୍ଭ କଲେଣି ।''

ଓଃ, ଏମିତି ? ତେବେ ତ ଅସୁବିଧା । କିନ୍ତୁ ଏତେଦିନ ଛୁଟି ମିଳିବ ତୁମକୁ ? ''କୋଉ ରୁଲ୍ ରେଗୁଲେସନ୍ ଅଛି ଏ କଲେଜରେ ?'' କହିଲେ ସୁବୋଧ ।

''ଛୁଟି ଥାଉ କି ନଥାଉ । ନେବାକୁ ହେବ । କିନ୍ତୁ ଘରେ ବି ମୋତେ ଅଡୁଆ ଲାଗୁଚି । ତଳେ ବସି ରୋଷେଇ- କଷ୍ଟହେଉଚି । ଭାବୁଚି ବୋଉକୁ ଡକେଇ ଦେବି । ଆଉ କିଛି ଦିନ ଅପେକ୍ଷା କରିଥିଲେ ହୋଇଥାଆନ୍ତା ।''

ବୋଉ କଥା ଶୁଣି ସୁବୋଧ ଚମକି ପଡ଼ିଲା । ପୁଣି ଆଉ ଜଣେ ଅତିଥି ? ରେଳବାଇ ଷ୍ଟେସନରେ କୁଲି ମୁଣ୍ଡରେ ଗୋଟିକ ପରେ ଗୋଟିଏ, ତା ଉପରେ ଆଉ ଗୋଟିଏ ଏବଂ ଶେଷରେ କାନ୍ଧରେ ମଧ୍ୟ ଗୋଟିଏ ଯେମିତି ଝୁଲେଇ ଦିଆଯାଏ କୌଣସି କଥା ଚିନ୍ତା ନକରି, ତା'ର ଶକ୍ତିକୁ କଳନା ନକରି ।

ସୁବୋଧ ନିଜର ଦୁର୍ବଳତା ଯାହା ସୁମିତ୍ରା ମଧ୍ୟ ଜାଣିଚି, ପ୍ରକାଶ କରିପାରୁ ନଥିଲା କି ତାକୁ ନିଜ ଭିତରେ ରୋକି ମଧ୍ୟ ପାରୁ ନଥିଲା । ସେ ଦୋଦୋପାଞ୍ଚ ହେଇ କହିଲା, ''ହଁ, ବୋଉଙ୍କର ଆସିବା ଦରକାର । କିନ୍ତୁ ସେ ଆସି ଏତେଦିନ ରହିପାରିବେ ତ ? ମୁଁ ଭାବୁଥିଲି ସେ ଡେଲିଭରି ପରେ ମଧ୍ୟ ମାସେ ଖଣ୍ଡେ ରହନ୍ତେ ।''

''ସେଇଟା ତ ପରର କଥା । କିନ୍ତୁ ଏବେ ପ୍ରଶ୍ନ ହେଲାଣି ସେ ଆସିଲେ କୋଉଠି ଶୋଇବ ?''

ସୁମିତ୍ରା ବଡ଼ ଚିନ୍ତାରେ ପଡ଼ି ଯାଇଥିଲା ।

''ଏମିତି କଲେ କେମିତି ହୁଅନ୍ତା ?'' ସୁବୋଧ ପଚାରିଲେ ।

''କଅଣ ?''

ଆମେ ସିନା ଏ ଖଞ୍ଜାରେ ଅଛୁଁ । ସେ ଖଞ୍ଜାରେ ତ ଚୌଧୁରୀ ବାବୁ । କେମିତି ହୁଅନ୍ତା ଆମେ ଯଦି ତାଙ୍କୁ ଅନୁରୋଧ କରି....

''ନା, ସେଇଟା ଠିକ୍ ହେବନି । ଦିନେ ଦୁଇଦିନର କଥା ନୁହେଁ । ତା'ଛଡ଼ା ବୋଉ ମୋତେ ଛାଡ଼ି ସେଠାକୁ ଯିବାକୁ ରାଜି ହୋଇ ନ ପାରେ ।'' ସୁମିତ୍ରା ବଡ଼ ଚିନ୍ତିତ ହୋଇପଡ଼ିଲା ଏବଂ କହିଲା, ''ତୁମେ ଗୋଟେ କାମ କରି ପାରିବ ?''

''କଅଣ ?''

''ମୋ ପାଇଁ ଯଦି ଗୋଟେ ମୋଡ଼ା ଆଣି ଦେଇପାରନ୍ତ, ତେବେ ଅନେକ ସମସ୍ୟାର ସମାଧାନ ହେଇ ଯାଆନ୍ତା ।''

''ସାମାନ୍ୟ ମୋଡ଼ାଟାଏ ତୁମର ଏତେ ବଡ଼ ସମସ୍ୟାର ସମାଧାନ କେମିତି କରିପାରିବ, ମୁଁ ବୁଝି ପାରୁନି । ବୋଉ କଅଣ ମୋଡ଼ା ଉପରେ ରାତ୍ରି ଯାପନ କରିବେ ?'' ଇଂରାଜୀ ସାହିତ୍ୟର ଚର୍ଚ୍ଚା କରୁଥିବା ଅଧ୍ୟାପିକାମାନେ ଏ ପ୍ରକାର ସମସ୍ୟାକୁ ମୋଡ଼ା ଉପରେ ଛାଡ଼ିଦେଇ କେମିତି ନିରବ ହେଇ ପାରନ୍ତି ?'' ସୁବୋଧ ହସିହସି କହିଲା ।

''ଅଛି, ଅଛି । ସେ ସମସ୍ୟାର ସମାଧାନ ମଧ୍ୟ ସେଥିରେ ଅଛି । ଇଂରାଜୀ ସାହିତ୍ୟରେ ଏ ସମସ୍ୟାର ସମାଧାନକୁ ଦେଖି ପାରନ୍ତି କେବଳ ଓଡ଼ିଶାରେ ଥିବା ଇଂରାଜୀ ସାହିତ୍ୟର ଛାତ୍ରୀମାନେ । ଅତୀତକୁ ମାଟିତଳୁ କାଢ଼ି ମକ୍ଷୁଥିବା ଇତିହାସର ଛାତ୍ରମାନେ ତା'ର ସୂତ୍ର କୋଉଠୁ ପାଇବେ ? ହେଇ ଶୁଣ । ମୋଡ଼ାଟିଏ ଆଣିଦେଲେ ମୁଁ ତା ଉପରେ ବସି ରୋଷେଇ କରିପାରିବି । ଏଥିରେ ମୁଁ ଭାବୁଚି ବୋଉର ଆସିବାଟାକୁ ଆଉ ମାସେ ଦି'ମାସ ଘୁଞ୍ଚେଇ ଦେଇହେବ । ତା'ପରେ ଦେଖିବା । ସେ ସମୟ ଆସିଲେ ପୁଣି ଚିନ୍ତା କରିବା ।''

ସୁବୋଧ ମନକୁ କଥାଟା ପାଇଲା । କିନ୍ତୁ ମୋଡ଼ାଟାଏ ? କେତେ ହେଇଥିବ ତା'ର ଦାମ୍ ? କିଣି ହେବ ଏବେ ? ମାନେ ଏଇ ଦୁଇଚାରି ଦିନ ଭିତରେ ?

ଦରଜାରେ କିଏ ଜଣେ ଠକ୍ ଠକ୍ କଲା ।

ସୁବୋଧ ଦେଖିଲା ପେପରବାଲା ଠିଆ ହୋଇଚି ।

ବିଲ୍‌ଟା ନିଅନ୍ତୁ । ଗଲା ଦୁଇମାସର ବି ଏଥିରେ ଯୋଡ଼ି ଦେଇଚି । ସେ ଚାଲିଗଲା ସାଇକେଲ ମାରି ।

ସୁବୋଧ ଭାବୁଥିଲା, ଏତେ ପାଟିକରି କହିବା ମାନେ ?

ସୁବୋଧ ଖବରକାଗଜ ଖଣ୍ଡେ ରଖେ ମୁଖ୍ୟତଃ ଖବର ଜାଣିବା ପାଇଁ । ଗତ ସାତବର୍ଷ ଧରି କଲେଜ ଶିକ୍ଷକ ମହାସଂଘ ଯୋଉ ଆନ୍ଦୋଳନ କରିଆସୁଚି ତାର ଗତି ଓ ଫଳାଫଳ ଜାଣିବା ଆବଶ୍ୟକ ବୋଲି । କଅଣ ବା ମିଳୁଚି ସେ ଆନ୍ଦୋଳନରୁ ? ପ୍ରତିଶ୍ରୁତିର ପାହାଡ଼ ଉପରେ ଆହୁରି ଅନେକ ପାହାଡ଼ ସୃଷ୍ଟି ହେଲାଣି । ସେସବୁ ଏବେ ସ୍ୱର୍ଗକୁ ଲାଗିଲା ଅବସ୍ଥାକୁ

ଆସିଲାଣି । କେବଳ ଶିକ୍ଷକମାନେ ସେଇ ହିମାଳୟ ଦେଇ ସ୍ୱର୍ଗକୁ ଯିବା ଚେଷ୍ଟା କରୁଥିଲେ ମଧ୍ୟ ଚତୁର କୁକୁରଟି ତା ଲାଙ୍ଗୁଡ଼କୁ ମୋଟେ ଧରିବାକୁ ଦେଉନାହିଁ । ହାତ ବଢ଼େଇଲା ମାତ୍ରେ ସେ ତାକୁ ଏମିତି ହଲାଇ ଦେଉଚି ଯେ ଯେମିତି ସେ କହି ହେଉଚି ''ମୁଁ କାହାରି ନୁହେଁ ।'' କେବେ ନ ଥିଲି । ଆଜି ବି ନୁହେଁ ।''

ସେଦିନ ମହାସଂଘ ଅଫିସରୁ ଯୋଉ ଚିଠି ଆସିଥିଲା ତା'ର ସାରାଂଶ ହେଉଚି ସରକାରଙ୍କୁ ବାରମ୍ବାର ଅନୁରୋଧ କରିବା ସତ୍ୱେ ତାଙ୍କର ପ୍ରତିଶ୍ରୁତି ରକ୍ଷା ନ କରିବାରୁ ଏଥର ସ୍ଥିର ହେଇଚି ଯେ ଗଣଧାରଣା ଦିଆଯିବ । ତା ସହିତ ପରୀକ୍ଷା ଖାତା ଦେଖା ମଧ୍ୟ ବର୍ଜନ କରାଯିବ ।

ହସି ଦେଇଥିଲା ସୁବୋଧ । ଗଣଧାରଣାର କିଛି ମାନେ ଅଛି ଆଜିକାଲି ? ଏକବିଂଶ ଶତାବ୍ଦୀର ଗାନ୍ଧିବାଦକୁ ଆମ ନେତାମାନେ ଚଳୁ କରିଦେଲା ପରେ ତା'ର ଜନ୍ମଦିନ ପାଳନ କରିବା ପରି । ଗାନ୍ଧୀଙ୍କୁ ହତ୍ୟା କରି ତାଙ୍କ ଜନ୍ମଦିନରେ ଅଶ୍ରୁତର୍ପଣ ପରି । କଅଣ ମାନେ ଅଛି ଆନ୍ଦୋଳନର ଏଇ ମୃତ ରୂପକୁ ନେଇ ପୂଜା କରିବାରେ ? ସାପର କାତିକୁ ନେଇ ଘରେ ସାଇତିଲେ ତାହା ସାପର ଭ୍ରମ ସୃଷ୍ଟି କରିପାରେ, କିନ୍ତୁ ତାହା ସାପ ହେବ ନାହିଁକି ଚୋଟ ମଧ୍ୟ ମାରିବ ନାହିଁ ।''

ଆନ୍ଦୋଳନର ନୂତନ ସଂସ୍କରଣ ଏବେ ଆବିଷ୍କାର କରିବାକୁ ପଡ଼ିବ ।

ସୁମିତ୍ରା ସେଦିନ ବାରଟା ବେଳକୁ ଖଟରେ ଶୋଇଥିବାର ଦେଖି ସୁବୋଧ ଟିକିଏ ଚିନ୍ତିତ ହୋଇପଡ଼ିଲା । ସେ ତା ପାଖକୁ ଆସି ତା ଦେହ ଓ ମୁଣ୍ଡରେ ହାତ ବୁଲେଇଲା ।

''କଅଣ ହେଲା ? ଖରାପ ଲାଗୁଚି ?'' ସେ ପଚାରିଲା ।

''ବଡ଼ ଦୁର୍ବଳ ଲାଗୁଚି । ମୁଣ୍ଡ ବି ବୁଲାଉଚି ।'' କହିଲା ସୁମିତ୍ରା ।

ସୁମିତ୍ରାର ଆଗ ଔଜ୍ଜ୍ୱଲ୍ୟ ଆଉ ନାହିଁ । କେମିତି ଟିକିଏ ଶେତା ପଡ଼ିଯାଇଚି ବୋଧେ । ଡାକ୍ତର ଯାହା ଲେଖି ଦେଇଥିଲେ ସେସବୁ କିଣିବାକୁ ମନା କଲା ସୁମିତ୍ରା । କହିଲା, ''ମୁଁ ଜାଣେ ସେଗୁଡ଼ାକ ଭିଟାମିନ ଟାବ୍‌ଲେଟ୍ । ତାକୁ ଖାଇଲେ କ'ଣ ଲାଭ ?''

ସୁବୋଧ ତାକୁ ବାଧ୍ୟ କରି ସ୍ୟାମ୍ପଲ୍ ଔଷଧରୁ ଦୁଇଟା ଖୁଆଇ ଦେଲା । ତା'ପରେ କହିଲା, ''ତୁମେ ବ୍ୟସ୍ତ ହୁଅନା । ମୁଁ ବାକି ଔଷଧ ନେଇ ଆସିବି । ତୁମେ ସମ୍ପୂର୍ଣ୍ଣ ବିଶ୍ରାମ ନିଅ । ଏବେ କଅଣ ଖାଇଚ ?''

''କିଛି ଖାଇନି । ରନ୍ଧାରନ୍ଧି କୌଣସି ପ୍ରକାରେ ହୋଇସାରିଚି । ସେଇଟା ହିଁ ମୋତେ ସବୁଠୁ ବେଶି କଷ୍ଟ ।''

''ଓହୋ, ମୁଁ ତ ଭୁଲିଯାଇଚି ! ଆଜି ଯିବି ସନ୍ଧ୍ୟାବେଳକୁ ।''

ସୁମିତ୍ରା ଜାଣେ ସୁବୋଧ ମିଛ କହୁଚି । ମିଛର କାରଣ ମଧ୍ୟ ସେ ଜାଣେଁ । ତା ଉପରେ ଚାପ ସୃଷ୍ଟି ନ କରିବା ଉଦ୍ଦେଶ୍ୟରେ ସେ କହିଲା, ''ନା, ନା, ମୋଟେ ବ୍ୟସ୍ତ

ହେବା ଦରକାର ନାହିଁ । କାମ ଅଚଳ ହେବା ଅବସ୍ଥାକୁ ମୋଟେ ଆସିନି । ଆଜି କାହିଁକି ଆଉଥରେ ଏତେବୋଟ କଷ୍ଟକରି ଯିବ ? କାଲି କଲେଜରୁ ଫେରିବାବେଳେ ଦେଖିବ ।'' ସେ ତା ମନକୁ ଆହୁରି ହାଲ୍‌କା କରିବାକୁ କହିଲା, ''ତୁମେ ଯାଅ । ଗାଧୁଆ ପାଧୁଆ କରି ଆସ । ମୁଁ ତୁମ ପାଇଁ ବାଢୁଚି ।''

ସୁବୋଧ ଦେଖିଲା ସୁମିତ୍ରା ତା'ର ଅନେକ କଷ୍ଟ ସତ୍ତ୍ୱେ ଉଠିଗଲା ଖାଇବା ବାଢ଼ିବାକୁ ।

କି ଅଦ୍ଭୁତ ମାନସିକତା ଏ ନାରୀମାନଙ୍କର ? ନିଜ ହାତରେ ବାଢ଼ି ଖାଇବାକୁ ଦେଲେ କେମିତି କୃତକୃତ୍ୟ ହେଇପଡ଼ନ୍ତି ସେମାନେ । ଅନ୍ୟ ଦିଗରେ ସ୍ୱାମୀଟି ଯଦି ଖାଇବାରେ ତୃପ୍ତି ପାଇଲା, ସେତେବେଳେ ସ୍ତ୍ରୀଟି ମନେକରେ ଯା'ଠୁ ଭଲ କାମ ଆଉ କଅଣ ଅଛି ଏ ପୃଥିବୀରେ ? ଏକ ବିରଳ ଅନୁଭବ ।

ସେ ବୁଝିଲା ସତରେ ସୁମିତ୍ରାକୁ ଅନେକ କଷ୍ଟ ହେଉଚି । ସବୁଠାରୁ ବେଶି ଯନ୍ତ୍ରଣାଦାୟକ ଏଇ ରାନ୍ଧିବାଟା । ଯଦି ଠିଆ ହେଇ ରାନ୍ଧିବାର ବ୍ୟବସ୍ଥା ଥାଆନ୍ତା ତେବେ ବୋଧେ ସୁମିତ୍ରାକୁ ଏତେ କଷ୍ଟ ହୁଅନ୍ତାନି । କିନ୍ତୁ ଉପାୟ ? ମୁକ୍ତି କାହିଁ ଏ ଯନ୍ତ୍ରଣାରୁ ? କାହାର ଏ ଯନ୍ତ୍ରଣା ? ସୁମିତ୍ରାର ନା ସୁବୋଧର ?

ସୁବୋଧ ବେଡ୍‌ରୁମ୍ ଖଟ ଉପରେ ବସିଥିଲା । କଅଣ ବା ଅଛି ତା ପାଖରେ ? ସେ କାହାକୁ ଅଗ୍ରାଧିକାର ଦେବ ? ଦୈନିକ ଅନ୍ତତଃ ପକ୍ଷେ କୋଡ଼ିଏ ତିରିଶ ଟଙ୍କାର ପରିବା ? ନା ସୁମିତ୍ରା ପାଇଁ ଡାକ୍ତର ଲେଖି ଦେଇଥିବା ଔଷଧ ଯାହାର ଆବଶ୍ୟକତା ଆହୁରି ବେଶି ? ନା ମୋଡ଼ାଟିଏ ଯାହା ବିନା ସୁମିତ୍ରା ଅଚଳ ହୋଇ ଯାଉଚି ଏବଂ ବହୁତ କଷ୍ଟ ପାଉଛି ?

ଦୁଇଜଣ ଅଧ୍ୟାପକ । ଦୁଇଟି ପ୍ରଚଣ୍ଡ ପ୍ରତିଭା । ଦୁହେଁ ଦିନେ ସ୍ୱପ୍ନ ଦେଖିଥିଲେ ସେ ପ୍ରତିଭାର ଉପଯୋଗ କରିବେ ସମାଜ ପାଇଁ । ଏକ ଉତ୍ସର୍ଗୀକୃତ ମନୋଭାବ ନେଇ ଆଗେଇଯିବେ ସେମାନେ ନୂଆ ସମାଜ ଗଢ଼ିବାକୁ ।

କିନ୍ତୁ କିଏ ଜଣେ ସେମାନଙ୍କ ପଛରୁ ଟାଣି ଧରୁଚି । ତାଙ୍କ ବାଟ ଓଗାଳି ଠିଆ ହୋଇଚି । ଗୋଟାଏ ବିରାଟ ଅବ୍ୟବସ୍ଥା । ଏକ ଇଚ୍ଛାକୃତ ଉପେକ୍ଷାର ବ୍ୟବସ୍ଥା । କିଏ ହଟେଇ ପାରିବ ସେ ବ୍ୟବସ୍ଥାକୁ ? ସୁବୋଧ ପାରିବ ? ପାରିବ ସୁମିତ୍ରା ? ଦୁହେଁ ମିଶିଲେ ବି ତ ପାରିବେନି । ଅବ୍ୟବସ୍ଥାର କ୍ଷମତା ଏତେ ବେଶି ଯେ, ତା'ର ଓଜନ ମଧ୍ୟ ଏତେ ବେଶି ଯେ, ତାକୁ କେହି ଜଣେ ଦି'ଜଣ ରାସ୍ତାରୁ ହଟେଇ ପାରିବେନି । ସେଥିପାଇଁ ଦରକାର ଏକ ମହାଶକ୍ତି । କିଏ ସେ ଶକ୍ତି ? କାହିଁ ସେ ଶକ୍ତି ?

ସୁବୋଧ ଭାବୁଥିଲା ଯେ ଯଦି ସାଧାରଣ ମଣିଷଟିଏ ହେଇଥାଆନ୍ତା, ସେ ଯଦି ସାମାନ୍ୟ କିଛି ପାଠ ପଢ଼ିଥାଆନ୍ତା, ଆଉ ସୁମିତ୍ରା ବି, ତେବେ ତ ଅସୁବିଧା ହେଉ ନ ଥାଆନ୍ତା । ସବାତଳେ ଥିବା ମଣିଷଟି ଘାସଟିଏ ପରି ସବୁ ଯନ୍ତ୍ରଣା ସହୁଥାଏ ଏବଂ ବଞ୍ଚିଥାଏ ମଧ୍ୟ । ଯନ୍ତ୍ରଣା ସହିତ ସେ ସାଲିସ କରିପକାଏ । ତାକୁ ଅସୁବିଧା ହୁଏନି । ଦୁଃଖରେ ଜନ୍ମିଥିବା

ଜୀବନର ଅନ୍ୟନାମ ଦୁଃଖ । ତା'ର ତ୍ରାଣକର୍ତ୍ତା ସେ ନିଜେ ।

କିନ୍ତୁ ସୁବୋଧ ? ଅସାଧାରଣ ପ୍ରତିଭା । ତାକୁ ପାଣି ଟୋପାଏ ମଧ୍ୟ ପିଇବାକୁ ଦେଇପାରୁନି । ସବା ତଳେ ଥିବା ଜୀବନ ସେ ଜୀଉଁଚି । କି ମୂଲ୍ୟ ସେ ପ୍ରତିଭାରେ ? କି ମୂଲ୍ୟ ସେ ଜୀବନରେ ?

କେହି ଜଣେ କବାଟରେ ଠକ୍ ଠକ୍ କଲା । ସୁବୋଧ ଦେଖିଲା ପୁରୁଣା ପେପର୍ କିଣିବାକୁ ଲୋକଟି ଆସିଚି ।

''କେତେ ଲେଖାଏଁ କିଲୋ ନଉଚ ?''ପଚାରିଲା ସୁବୋଧ ।

''ତିନିଟଙ୍କା ଥିଲା । ଏବେ ପ୍ଲାଷ୍ଟିକ୍ ବ୍ୟାଗ୍ ବନ୍ଦ ହେଲା ପରେ ଆଉ ପଚାଶ ପଇସା ବଢ଼ିଚି । କିନ୍ତୁ ଅଛି କେତେ ?'' ପଚାରିଲା ସେ ।

ସୁବୋଧ ଚୁପ୍ । କେତେ ଅଛି ବୋଲି କହିବ ?

''ଯଦି ପୁରୁଣା ଖାତା କି ବହିପତ୍ର ଦେବେ, ତେବେ କିଲୋ ପାଞ୍ଚ ଟଙ୍କା ।'' ଲୋକଟି କହିଲା ।

ସୁବୋଧ ଭିତରକୁ ଗଲା । ଖଟତଳୁ ବାହାର କଲା ସବୁ ପୁରୁଣା କାଗଜ । ଖୋଜି ପକାଇଲା ଯୋଉଠି ଯେତେ ଖାତାପତ୍ର ଥିଲା । ଧେତ୍, କେତେ ବା ହବ ଯା'ର ଦାମ୍ ? ସେ ଦେଖିଲା ଉପର ଥାକରେ ଥୁଆ ହେଇଚି ତା'ର ଗବେଷଣାର ପାଣ୍ଡୁଲିପି । ବଡ଼ବଡ଼ ଚାରୋଟି ଭଲ୍ୟୁମରେ । ଟାଣିଆଣିଲା ତାକୁ ଗାଇଡ୍ ନୋଟ୍‌ଗୁଡ଼ାକୁ ସେଥିରୁ ଚିରି ଫୋପାଡ଼ି ଦେଲା ।

''ନିଅ, ଉଠାଅ ଏସବୁ ।''

ଗୋଟାଏ ଅସମ୍ଭବ ଘୃଣା ଓ କ୍ରୋଧରେ ଫାଟି ପଡୁଥିଲା ଯେମିତି ।

(ସିଂହଦ୍ୱାର, ପୂଜା ୨୦୦୪)

# ସମୟାନ୍ତର

ଶୁଭ୍ରକାନ୍ତ ଗଣିବାକୁ ଆରମ୍ଭ କଲେ । ଆଉ ମାତ୍ର ଏକବର୍ଷ ସାତ ମାସ ରହିଲା ତାଙ୍କର ଚାକିରିରୁ ବିଦାୟ ନେବାକୁ । ଅବସରର ସମୟଟା କେତେ ଶୀଘ୍ର ଆସିଯାଉଛି ସତେ । ହେଇତ ସେଦିନ ପରି ଲାଗୁଚି, ସେ ଚାକିରିରେ ଜଏନ କରିଥିଲେ । ଯୋଉଦିନ ତାଙ୍କ ବାପା ଜାଣିଲେ ଯେ ଶୁଭର ଅଧ୍ୟାପକ ଚାକିରିଟା ହେଇଯାଇଚି ଏବଂ ସେ ମେରିଟ ଲିଷ୍ଟରେ ପ୍ରଥମରେ ଅଛି, ସେ ଚେୟାର ଛାଡ଼ି ଡେଇଁ ପଡ଼ିଥିଲେ । ପାଟିକରି ଡାକିଥିଲେ ବୋଉକୁ । ଆରେ ଶୁଣୁଚ ନା ନାହିଁ । ଶୁଭ ଏଥର ମଧ୍ୟ ଫାଷ୍ଟ ହେଇଚି । ଏକରୁ ତାକୁ କେହି ଏ ଯାଏଁ ତଳକୁ ଖସାଇ ପାରିଲେନି । କାହିଁ ଶୁଭ ଗଲା କୁଆଡ଼େ ? ସେ ଜାଣିଲାଣି ନା ନାହିଁ ?'' କହିକହି ସେ ରୋଷେଇ ଘର ଭିତରକୁ ପଶି ଯାଇଥିଲେ ।

''ଆରେ କାହିଁକି ଏମିତି ପାଟି କରୁଛ ? ଶୁଭ କେତେବେଳୁ ଜାଣିଲାଣି ଏବଂ ମୋତେ ମଧ୍ୟ କହି ସାରିଲାଣି ।'' ଉତ୍ତର ଦେଲେ ।

ଓଃ ମା ପୁଅ ତୁମେ ଦୁହେଁ ଏଇଠି ? ମୋତେ କେମିତି କହି ନ ଥିଲୁରେ ? ବୋଉଟା ତୋର ଏତେ ନିଜର ହେଇଗଲା ଏ ଖବର ପାଇଁ ? ମୁଁ କେହି ନୁହେଁ ? ବାପାଙ୍କ କଣ୍ଠରେ ଏକ ଅପୂର୍ବ ଭାବବିହ୍ୱଳତାର ସ୍ୱର ।

ବୋଉ ବାଢ଼ି ଦେଇଥିବା ଭୋଗଥାଳି ଛାଡ଼ି ଶୁଭ୍ରକାନ୍ତ ଠିଆ ହୋଇ ପଡ଼ିଥିଲେ ଏବଂ ବାପାଙ୍କୁ ମୁଣ୍ଡିଆ ମାରିଥିଲେ ।

ଆରେ ଥାଉ ଥାଉ, ଭୋଗଥାଳି ଛାଡ଼ି ମୁଣ୍ଡିଆ ମାରିବାକୁ ଉଠନ୍ତିନିରେ । ନିଜେ ଦୁଇହାତ ଯୋଡ଼ି ସେ ଅଦୃଶ୍ୟ ସତ୍ତାଙ୍କୁ ପ୍ରଣାମ ଜଣେଇଲେ ।

ଶୁଭ୍ରକାନ୍ତଙ୍କ ମନେ ପଡ଼ିଲା କେଉଁ ଦୂର ଅତୀତରେ ହଜି ଯାଇଥିବା ସ୍ୱପ୍ନବୋଳା ସୁନ୍ଦର ଅତୀତଟି । ଅନେକ ଦୂରରେ ଛାଡ଼ି ଆସିଥିଲେ ମଧ୍ୟ ଏବେବି ବେଶ୍ ସ୍ପଷ୍ଟ ଓ ସୁମଧୁର ।

ବାପା ଥିଲେ ପ୍ରାଇମେରୀ ସ୍କୁଲର ହେଡ୍‌ମାଷ୍ଟର । ତାଙ୍କର ଲକ୍ଷ୍ୟ ଥିଲା ଏକମାତ୍ର ପୁଅ ତାଙ୍କର କେବଳ ଶିକ୍ଷକତା କରୁ । ଆଉ କିଛି ନୁହେଁ । ଯେତେ ପଢୁଚି ପଢୁ, ଯେତେ ଉପରକୁ ଯାଉଚି ଯାଉ । କିନ୍ତୁ ଶିକ୍ଷକତା ହିଁ କରୁ । ସେ ସିଡ଼ିର ସବା ଉପରକୁ ଯାଇ ଅଧ୍ୟାପକଟିଏ ହେଉ । ଆଉ ଅଧିକ କଅଣ ଦରକାର ? ସମସ୍ତେ ମାନୁଥିବା ଥାନ ନୁହେଁ କି ସେଇଟା ? କେତେ ଉଚ୍ଚ ନୁହେଁ ?

ଶୁଭ୍ରକାନ୍ତ ଫିକ୍‌କିନା ହସି ଦେଇଥିଲେ । ବାପା ତାଙ୍କର ଚାହିଁଥିଲେ ଏଣ୍ଟୁଅର ସିଙ୍ଗୁଗଛ ଆରୋହଣ । ସତରେ ଅନେକ ଉପରେ ନୁହେଁ ?

ଶୁଭ୍ରକାନ୍ତ ତାଙ୍କର ଖୁବ୍ ଗୋଟାଏ ବଡ଼ ପ୍ରଶାସନିକ ଅଫିସର ହେବାର ଇଚ୍ଛାଟାକୁ ନିଜ ବାକ୍ସରେ ରଖି ତାଲା ପକାଇଦେଲେ ସ୍ଥାୟୀ ଭାବରେ ଏବଂ ପିତୃ ଆଜ୍ଞା ପାଳନ ପାଇଁ ଚଉଦବର୍ଷ ନୁହେଁ ଚଉଦ ବର୍ଷରୁ ବେଶି ଯାଏଁ ମଧ୍ୟ ଶିକ୍ଷକତାର ଘଟଣା ବିହୀନ ଶୁନ୍‌ଶାନ୍ ଜଙ୍ଗଲ ଭିତରେ ବିତାଇବାକୁ ନିଜକୁ ପ୍ରସ୍ତୁତ କରିନେଲେ । ସେଇଦିନଠୁ ସେ ବାହାରି ଯାଇଥିଲେ ଯେ ଯାଇଥିଲେ ।

ଏବେ ତାଙ୍କର ପ୍ରତ୍ୟାବର୍ତ୍ତନ ସମୟ ଆସିଗଲା । ସେ ଅଯୋଧ୍ୟା ଫେରିଯିବେ । ତେବେ କଅଣ ଯା ଭିତରେ ସେ ଲଙ୍କା ଜୟକରି ସାରିଲେଣି ? ଅସୁରମାନଙ୍କୁ ନିପାତ କରି ସାରିଲେଣି ? ରାମ ରାବଣ ଯୁଦ୍ଧରେ ସେ କଅଣ ସତରେ ଜୟଲାଭ କରିଛନ୍ତି ?

ଶୁଭ୍ରକାନ୍ତ ତାଙ୍କ ମୁଣ୍ଡରେ ହାତ ବୁଲେଇଲେ । ଆରେ ଏଇଟା ତେବେ ଯା ଭିତରେ ଏତେ ମସୃଣ ଓ ଚିକ୍କଣ ହେଇଯାଇଛି ? ସେମାନେ ସମସ୍ତେ ବିଦାୟ ନେଇଛନ୍ତି ? ସେ ତା'ର ସାମାନ୍ୟ ସୂଚନା ମଧ୍ୟ ପାଇ ନ ଥିଲେ ତ ?

''ଆଜି କଲେଜ ଯିବ ନାହିଁ କି ?'' ମାୟାବତୀ ପଚାରିଥିଲେ ଶୁଭ୍ରକାନ୍ତଙ୍କୁ ଅନାବଶ୍ୟକ ଭାବେ ବସି ମୁଣ୍ଡ ସାଉଁଳୁଥିବାର ଦେଖି । ''ସମୟ ତୁମକୁ ଜଣା ପଡୁ ନାହିଁ ?''

ଚମକି ପଡ଼ିଲେ ଶୁଭ୍ରକାନ୍ତ । ସତରେ ତାଙ୍କୁ ସମୟ ମୋଟେ ଜଣାପଡୁ ନାହିଁ । ଯିଏ ଛପନ ବର୍ଷର ଦାର୍ଘ ସମୟଟାକୁ କେମିତି କୋଉଠି କଲେଜ ଯିବା ରାସ୍ତାରେ ନୋଟ୍ ବହି ଗଳେଇ ପକେଇଲା ପରି ହଜେଇ ଦେଇଚନ୍ତି, ସେ ଆଜି ମାତ୍ର କେତେଟା ଘଣ୍ଟା ପାଇଁ କାହିଁକି ବ୍ୟସ୍ତ ହେବେ ?

ଚା' କପ୍‌ରୁ ଶେଷ ଚା'ଟିକେ ଶୁଖିଗଲାଣି । ଗୋଟିଏ ଦି'ଟା ପିମ୍ପୁଡ଼ି ଏବେ ଚା' ପାଖରେ ବୁଲିବାକୁ ଆରମ୍ଭ କଲେଣି । ପଢ଼ା ସରିଥିବା ଖବରକାଗଜର ପୃଷ୍ଠାଗୁଡ଼ାକ ଖଣ୍ଡଖଣ୍ଡ ହୋଇ ପବନରେ ଉଡ଼ିବାକୁ ଆରମ୍ଭ କଲେଣି, ଠିକ୍ ଶବକୁ ଖାଇସାରି ଶାଗୁଣା ଉଡ଼ିଯିବାକୁ ଚାହୁଁଥିବାବେଳେ ଥରେ ଦି'ଥର ପରକୁ ଝାଡୁଥିବା ପରି । ଖବରକାଗଜରୁ ଆଜି ମୁଖ୍ୟ ସମ୍ବାଦଗୁଡ଼ିକ ଏବେ ଝାପ୍‌ସା ଦେଖାଗଲାଣି ।

ଶୁଭ୍ରକାନ୍ତ ଉପରକୁ ଦେଖିଲେ । କାନ୍ଥରେ ବାପା ଏବେବି ହସୁଛନ୍ତି ।

ଗୋଟାଏ କେମିତି ପ୍ରାଣପ୍ରାଚୁର୍ଯ୍ୟର ହସ । ଅନେକ କିଛି ପାଇଥିବାର ହସ । କଅଣ ସେଇଟା ? ଏଣ୍ଟୁଅର ସିଢ଼ିଗଛ ଆରୋହଣ ? ପୁଅ ତାଙ୍କର ଶୀର୍ଷରେ ପହଞ୍ଚି ଯାଇଛି- ଏଇ କଥା ତ ?

ସତରେ ଶୁଭ୍ରକାନ୍ତ ଶୀର୍ଷରେ ପହଞ୍ଚି ନାହାନ୍ତି କି ? ଘଟଣାବହୁଳ ନ ହେଇପାରେ ତାଙ୍କର ଅଧ୍ୟାପକ ଚାକିରିଟା । ହେଇପାରେ ସେ ତାଙ୍କ ଜୀବନରେ ମୂଲ୍ୟବାନ କାର୍ କି ସୁଟ୍, ଟାଇ ସଂସ୍କୃତିର ସ୍ୱାଦ ପାଇନାହାନ୍ତି, ହେଇପାରେ ନୈଶ୍ୟ କ୍ଲବରେ ମଲା ମଣିଷର ଶେଥା ପିଠି ପରି ମସୃଣ ମାର୍ବଲ ଚଟାଣର ସ୍ପର୍ଶ ପାଇନାହାନ୍ତି କିମ୍ବା ଅତ୍ୟାଧୁନିକା ନାରୀର କୃତ୍ରିମ ହସରେ ବିମୁଗ୍ଧ ହେବାର ସୁଯୋଗ ପାଇନାହାନ୍ତି । କିନ୍ତୁ ସେ ଯାହା ପାଇଛନ୍ତି ତାହା ସେ ସବୁଠାରୁ ଅନେକ ଉର୍ଦ୍ଧ୍ୱରେ ନୁହେଁ ? ଗଦାଗଦା ବହି ଭିତରେ ପୃଥିବୀର ମହାନ ଦାର୍ଶନିକ, ଲେଖକ, କବି ଓ ନାଟ୍ୟକାରମାନଙ୍କୁ ସେ ପ୍ରତିଦିନ ଭେଟିଛନ୍ତି । ସେମାନଙ୍କ ସହିତ ଅତି ନିବିଡ଼ ଭାବେ କଥା ହେଇଛନ୍ତି । କେତେ ଅନ୍ତରଙ୍ଗ ସେ ମୁହୂର୍ତ୍ତସବୁ । ଏବଂ ତା'ପରେ ତା'ର ସାରତତ୍ତ୍ୱସବୁକୁ ବାଣ୍ଟିଛନ୍ତି । ସେତେବେଳେ ସେ ଦେଖିଛନ୍ତି ଫୁଲର ପାଖୁଡ଼ାସବୁ ଖଣ୍ଡ ଖଣ୍ଡ କରି ଯେତେ ଛିଣ୍ଡେଇ ନେଉଥିଲେ ମଧ୍ୟ ସଙ୍ଗେସଙ୍ଗେ ସେ ସ୍ଥାନଟା ପୂରଣ ହେଇଯାଉଥିଲା ଆଉ ଗୋଟିଏ ପାଖୁଡ଼ାରେ । ନୂଆ ପାଖୁଡ଼ାରେ ମହକି ଉଠୁଥିଲା ଜାଗା ।

ଯା'ଠାରୁ ଆଉ ମହତ୍ତ୍ୱପୂର୍ଣ୍ଣ କାମ କଅଣ ଥାଇପାରେ ? ସହପାଠିନୀ ଶ୍ରାବଣୀ ହେଇଛି ଆଇ.ଏ.ଏସ୍. । ଦିନରାତି ଏବେ ମନ୍ତ୍ରୀଙ୍କ ବ୍ରିଫ୍‌କେଶ ଧରି ବୁଲୁଚି । ଚନ୍ଦ୍ରକାନ୍ତ ହେଇଚି ପୁଲିସ୍ ଅଫିସର । ମହାଶ୍ୱେତା ତା ସାମ୍ନାରେ ସେଦିନ କହିଥିଲା, ଆଇ.ପି.ଏସ୍. ଅଫିସରଙ୍କ ଗୁଣଗ୍ରାମ ଯଦି ଏଇଆ ଜାଣିଥାଆନ୍ତି..... । ଆଉ ଡାକ୍ତର ଭାବଗ୍ରାହୀ ? ଆହା ବିଚାରୀ, ତା'ର ଅପୂର୍ବ ରୂପଶ୍ରୀ ସ୍ତ୍ରୀର ମୁହଁକୁ ଦେଖି ଗୋଟାଏ ଘଣ୍ଟା ମଧ୍ୟ ପ୍ରେମାଳାପ କରିପାରେ ନାହିଁ । ରୋଗୀର ସେବାରେ ତା'ର ସବୁ ସମୟ ଚାଲିଯାଏ ।

ତେବେ ଏମାନେ ତାଙ୍କ ଜୀବନରେ ପାଇଛନ୍ତି କଅଣ ? ଯାହା ପାଇଛନ୍ତି ତାକୁ ସେମାନେ କେବେବି ଆଶା କରି ନଥିଲେ ଏବଂ ଯାହା ଆଶା କରି ନଥିଲେ ତାକୁ ହିଁ କେବଳ ପାଇଚନ୍ତି । ସୁଖ ଶବ୍ଦଟି କେମିତି କେଜାଣି ଶୀତ ସକାଳର ଲାଜକୁଳୀ ପତ୍ର ପରି ଏମାନଙ୍କ ସ୍ପର୍ଶ ପାଇଲେ ନିଜକୁ ଓଢ଼ଣା ଭିତରେ ରଖି ଦିଅନ୍ତି ।

ସେମାନେ ଜୀବନହୀନ ଜୀବନ ବଞ୍ଚୁନାହାନ୍ତି କି ? ସେମାନଙ୍କ ତୁଳନାରେ ଶୁଭ୍ରକାନ୍ତ ନିଜକୁ ତଉଲୁଥିଲେ । ବାପାଙ୍କ ହସର ଏବେ ମଧ୍ୟ ସାର୍ଥକତା ରହିଚି ।

ସ୍ତ୍ରୀ ଚେତେଇଦେଲେ- ''ତମକୁ ପରା କହିଲିଣି କଲେଜ ବେଳ ହେଇଯାଉଚି । ଯିବା ଆଗରୁ ମୋତେ ପରିବା ଆଣି ଦେବ । ହଁ, ମନେ ପଡ଼ିଲା । ସୁଧାଂଶୁବାବୁ ଆସିଥିଲେ । ତାଙ୍କ ଝିଅ କଥା କହୁଥିଲେ । ରୋଲନମ୍ବର ଦେଇ ଯାଇଛନ୍ତି । ପାରିବ କିଛି କରି ?'' ସେ

ଫେରି ଯାଉ ଯାଉ କହିଲେ ''ତୁମେ ତ ଯେମିତିକା ଲୋକ ।'' ସେ ଚାଲିଗଲେ ।

''ତୁମେ ସୁଧାଂଶୁବାବୁଙ୍କ ଝିଅକୁ କେତେ ଜାଣ ? କିଛି ଝିଅ ଥାଆନ୍ତି ଯୋଉମାନଙ୍କୁ ଦୟାକରି ମଧ୍ୟ ବେଶି ନମ୍ବର ଦେଇହୁଏ ନାହିଁ ।''

କାହିଁକି ? ସେ ଅସୁନ୍ଦରୀ ବୋଲି ? ନେଫେଡ଼ି ହେଇପାରେ ନାହିଁ ବୋଲି ? ସେମାନଙ୍କ ମାଆମାନେ ତୁମକୁ ବେଳ ଅବଳେରେ ଖାଇବାକୁ ଡାକିପାରନ୍ତି ନାହିଁ ବୋଲି ? ସେମାନଙ୍କ ବାପାମାନେ ସୁବିଧାଜନକ ଜାଗାରେ ଥିବା ଅଫିସର ନୁହଁନ୍ତି ବୋଲି ? ସେ ଝିଅ ତୁମମାନଙ୍କଠି ଟିଉସନ୍ ହୁଏ ନାହିଁ ବୋଲି ? ମାୟାବତୀଙ୍କ ପ୍ରଶ୍ନର ସୁପର ଫାଷ୍ଟ ଏକ୍ସପ୍ରେସ କୌଣସି ସିଗନାଲ ନମାଡ଼ି ମାଡ଼ି ଯାଉଥିବାବେଳେ ଶୁଭ୍ରକାନ୍ତ ଆଉ ଧୈର୍ଯ୍ୟଧରି ରହିପାରିଲେନି । ଗୋଟାଏ ହତାଶ ଯାତ୍ରୀ ପରି ସେ ଟ୍ରେନର ଚେନ୍‌ଟାକୁ ଧରି ସତେ ଯେମିତି ଓହଳି ପଡ଼ିଲେ ।

''ମୁଁ ପାଠ କଥା କହୁଚି, ପାଠ ।'' ସେ ଅପେକ୍ଷାକୃତ ବଡ଼ ପାଟିରେ କହିଲେ ମାୟାବତୀଙ୍କୁ ବଡ଼ ଆଖିରେ ଅନେଇ ।

''ତେବେ ତୁମ କଲେଜରେ ତୁମେ ହୁଏତ ଏକମାତ୍ର ଅଧ୍ୟାପକ ଯିଏ କେବଳ ପାଠ ଦେଖି ନମ୍ବର ଦିଏ ।'' ମାୟାବତୀ ଏଥର ଆଲମାରୀ ଭିତରୁ ଗୋଟାଏ କାଗଜ ରୋଲ ଆଣି ସ୍ୱାମୀଙ୍କ ସାମ୍ନାରେ ଥୋଇ ଦେଲେ ଏବଂ କହିଲେ ସେସବୁ ବାଜେ କଥା ଥାଉ । ଗୀତାର ବାହାଘର ପ୍ରସ୍ତାବ ପଡ଼ିଚି । ସୁଧାଂଶୁବାବୁ ବି ତମରି ସାଥିରେ ରିଟାୟାର କରିବେ । ଆଜିକାଲି ତ ଏମିତି ହେଲାଣି ଝିଅ ଦେଖିବା ପୂର୍ବରୁ ପ୍ରଶ୍ନ ହେଲାଣି 'ଝିଅ ପଢ଼ିଚି କଅଣ ? କେମିତିକା ଷ୍ଟୁଡ଼େଣ୍ଟ ? ହାଇଟ୍ କେତେ ?' ଆଉ କେହି ଆଉ ତଳକୁ ଓହ୍ଲେଇ ଯାଇ ପଚାରନ୍ତି, 'ୱେଟ୍ କେତେ ?'

''ସେଇ କ୍ରାଇଟେରିଆ ଯଦି ଆଗରୁ ଥାଆନ୍ତା ।'' ଶୁଭ୍ରକାନ୍ତ ହସିଲେ । ''ତା'ଠୁ ଅନେକ ବେଶି କ୍ରାଇଟେରିଆ ମୋର ଥିଲା । ତା' ନହେଲେ ଫରେଷ୍ଟ ରେଞ୍ଜର ବାପା ମୋର ଅଧ୍ୟାପକଟାକୁ ଦେବେ ନାହିଁ ବୋଲି କୁହୁକୁହୁ ହେଉଥିଲାବେଳେ ତୁମ ବାପା ଆମଘରକୁ ତିନି/ଚାରି ଥର ଦୌଡ଼ି ନ ଥାଆନ୍ତେ । କହିପାରିବ ସେ କଥା ? ମୁହଁ ଅଛି ? ଛାଡ଼ ସେସବୁ ବାଜେ କଥା । ଏଇ ନିଅ । ଏଇଟା ସେ ଘରର ପ୍ଲାନ । ତୁମେ ତାକୁ ଆଜି ନେଇ ରମେଶବାବୁଙ୍କୁ ଦେଖା କରିବ । ସେ ଏବେ ଚିଫ୍ ଇଞ୍ଜିନିୟର ଅଫିସରେ ବସୁଛନ୍ତି । ସେ ଯଦି ଚାହିଁବେ ଆଜି ସନ୍ଧ୍ୟାରେ ଆମେ ତାଙ୍କ ଘରକୁ ଯିବା । ଯେମିତି ହେଲେ ଆସନ୍ତା ଅକ୍ଷୟ ତୃତୀୟା ଦିନ ଘରର ଶୁଭ ଦିଆଯିବ ।''

''ଅକ୍ଷୟ ତୃତୀୟା ? ଏତେ ଶୀଘ୍ର ?''

''ନା, ଅନ୍ୟଦିନ ଠିକ୍ ନୁହେଁ । ସେଦିନ ବାସ୍ତୁଶାସ୍ତ୍ରର ଆବଶ୍ୟକତା ନାହିଁ ।''

''ତେବେ ମୋ ପ୍ରସ୍ତାବ ପୂରାପୂରି କାଟ ଖାଇଗଲା ?'' ଶୁଭ୍ରକାନ୍ତ ପଚାରିଲେ ।

''ତୁମ ପ୍ରସ୍ତାବ ? ସେଇ ପୁରୁଣାକାଳିଆ ଘରକୁ ତୁମର କଅଣ ପାଇଁ ଏତେ ଲୋଭ

କେଜାଣି ? ସେଇଟା ଗୋଟାଏ ଗୋଦାମଘର । ଆଲୁଅ କି ପବନ ସେ ଘରପାଖ ଦେଇ ମଧ୍ୟ ଯା'ଆସ କରିବାକୁ ଅନିଚ୍ଛା ପ୍ରକାଶ କରୁଚି । ଭିତରକୁ ପଶିଲେ ମଣିଷ ରୁନ୍ଧି ହେଇଯାଉଚି । ତୁମେ ତାକୁ କହୁଚ ଘର ?'' ମାୟାବତୀ ସ୍ୱାମୀଙ୍କ ଉପରକୁ ଏତକ ଫୋପାଡ଼ି ଦେଇ ଫୁଲଟାଙ୍ଗୁଡ଼ିଟି ଉଠେଇ ଭିତରକୁ ଚାଲିଗଲେ ।

ଶୁଭ୍ରକାନ୍ତ ତାଙ୍କୁ ପଛରୁ ଦେଖୁଥିଲେ । ମାୟାବତୀ ପଚାଶ ଅତିକ୍ରମ କଲେ ଏଇ ପନ୍ଦର ଦିନ ତଳେ । 'ପଚାଶଟି ବସନ୍ତକୁ ସେ ଫୋପାଡ଼ି ଦେଇ ଆଗକୁ ଆସିଛନ୍ତି' ବୋଲି କହିହେବ ନା 'ପଚାଶଟି ଯାକ ବସନ୍ତକୁ ହାତରେ ଧରି ସେ ଏବେ ଦର୍ପର ସହିତ ବାଟ ଚାଲୁଛନ୍ତି' ବୋଲି କହିହେବ ? ପଚାଶଟି ବସନ୍ତର ଉନ୍ମାଦ ରାସୋତ୍ସବ ଏବେ ମଧ୍ୟ ତାଙ୍କ ଦେହରେ ଲହଡ଼ି ଭାଙ୍ଗୁଛନ୍ତି । ଏବେ ଏବେ ଗାଧୋଇ ସାରି ଅସଜଡ଼ା ଶାଢ଼ିକୁ ଦେହରେ ଗୁଡ଼େଇ ଦେଇ ମାୟାବତୀ ଯେମିତି ଭାବରେ ଚାଲିଗଲେ ସେଥିରେ ତାଙ୍କୁ ପଛରୁ ଦେଖି ବିମୁଗ୍ଧ ହେବାର ଅନେକ ଖୋରାକ ସେ ଛାଡ଼ି ଦେଇଗଲେ । ଶୁଭ୍ରକାନ୍ତଙ୍କର ମନେ ହେଲା ମାୟାବତୀ ପଚାଶ ଛୁଇଁବାକୁ ଆହୁରି ଅନେକ ବାକି ଅଛି । ପଚାଶ ଯେତିକି ଆଗକୁ ଡେଇଁପଡ଼ି ମାୟାବତୀଙ୍କୁ ଖାଲି ଛୁଇଁବାକୁ ଚେଷ୍ଟା କରୁଚି । ଜଣେ ସୁଚତୁର ଖେଳୁଆଡ଼ ପରି ମାୟାବତୀ ସେତିକି ଆହୁରି ଆଗକୁ କୁଦାମାରି ଡେଇଁ ପଳାଉଛନ୍ତି । ବାଘ ଆଉ ହରିଣର ଦଉଡ଼ ଚାଲିଚି ଯେମିତି । ବାଘ ଥକି ପଡୁଥିବ କିନ୍ତୁ ହରିଣ ? 'କହୁଥିବ, ଆରେ ତୁ ଛୁଇଁ ପାରିବୁନି-ଖାଇବୁ କଅଣ ?' ସବୁ ପୁରୁଷଙ୍କ ପାଇଁ ନାରୀର ସୌନ୍ଦର୍ଯ୍ୟ ଏକ ଦୁର୍ବଳତା । ଶୁଭ୍ରକାନ୍ତ ସେଇଠି ହାରି ଯାଉଥିଲେ ।

ସେ ନକ୍ସାଟିକୁ ଖୋଲି ଦେଖିଲେ । ଗୋଟାଏ ଘରେ ଯେମିତି ଯାହା ରହିବାର କଥା ସବୁ ଅଛି । ତିନିଟା ସୁନ୍ଦର ଓ ପ୍ରଶସ୍ତ ବେଡ଼୍‌ରୁମ୍ । ବିଶାଳ ଡ୍ରଇଂ-କମ୍-ଡାଇନିଂ ରୁମ୍ । କିଚେନ୍ ଓ ଦୁଇଟା ଟୟଲେଟ୍ । ବାହାରେ ପୋର୍ଟିକୋ । ବଗିଚା ଓ ଲନ୍ ପାଇଁ ମଧ୍ୟ ପ୍ରଶସ୍ତ ସ୍ଥାନ । ଏବଂ ଗୋଟାଏ ପାଖକୁ ଓ କିଚେନକୁ ଲାଗି ଷ୍ଟୋର ଓ ଠାକୁରଘର । ପୂରା ନକ୍ସାଟି ତିଆରି ହେଇଚି ମାୟାବତୀଙ୍କ ନିର୍ଦ୍ଦେଶରେ । ସେ ସେଥିପାଇଁ ଶୁଭ୍ରକାନ୍ତଙ୍କୁ ମୋଟେ ପଚାରି ନାହାନ୍ତି । ସେ ଯଦି ପଚାରି ଥାଆନ୍ତେ ତେବେ ହୁଏତ ଶୁଭ୍ରକାନ୍ତ କହିପାରି ଥାଆନ୍ତେ ଯୋଉ ଘରେ ରିଡ଼ିଂରୁମ୍ ନାହିଁ ସେଠି ମୁଁ ଚଳିପାରିବି ତ ? ତା ସତ୍ତ୍ୱେ ଏ ପ୍ରଶ୍ନ ଯେ ନ ଉଠିଚି ସେ କଥା ନୁହଁ । ମାୟାବତୀଙ୍କ ଗୋଟିଏ ଉତ୍ତର, ତିନୋଟି ବେଡ଼୍‌ରୁମ୍‌ର ମାଷ୍ଟର ବେଡ଼୍‌ରୁମ୍‌କୁ ଛାଡ଼ି ଅନ୍ୟ ଦୁଇଟିରୁ ଯେକୌଣସି ଗୋଟିକୁ ରିଡ଼ିଂ ରୁମ୍ ହିସାବରେ ବ୍ୟବହାର କରାଯାଇପାରେ । ତାଙ୍କର ଯୁକ୍ତି ହେଲା ପୁଅ ଇଞ୍ଜିନିୟର । ତା'ର ଅନ୍ତିମ ଇଚ୍ଛା ସେ ଗୋଟାଏ ଶିଳ୍ପର ମାଲିକ ହେବ । ସେତେବେଳେ ତୁମ ରିଡ଼ିଂ ରୁମ୍‌ଟା ତା'ର କୋଉ କାମରେ ଲାଗିବ ?

ଶୁଭ୍ରକାନ୍ତ ଭାଷା ଓ ସାହିତ୍ୟର ଅଧ୍ୟାପକ । ଗବେଷଣା ବେଳେ ସେ କିଏ, କଅଣ,

କାହିଁକି ଓ କୋଉଠିରେ ଯୁକ୍ତି ଉପସ୍ଥାପନା କରି ତା'ର ସମାଧାନର ରାସ୍ତା ତିଆରି କରନ୍ତି । ସେଥିରେ ତାଙ୍କର ଆନନ୍ଦ । କିନ୍ତୁ ମାୟାବତୀଙ୍କ ଯୁକ୍ତି ତାଙ୍କୁ ଅଛିଣ୍ଡା ଅଙ୍କର ଭାଗଫଳ ପରି ମନେ ହୁଏ । ସେ ତା'ର ଉତ୍ତର ଦେଇପାରନ୍ତି ନାହିଁ । ଗୋଟିଏ ଅସହାୟବୋଧର ଅନ୍ତରାତ୍ମା ତାଙ୍କୁ ଆବୋରି ରଖେ । ବହିକୁ ମାୟାବତୀ ଗୌଣ କରି ଦେବାକୁ ଚାହିଁଲେ ତାଙ୍କ ଭିତରଟା ହାହାକାର କରିଉଠେ । ମାୟାବତୀଙ୍କର ଯୁକ୍ତି ହେଲା ଆମେ ଯୋଉ ଘର ତିଆରି କରିବୁଁ ତାହା ଅନ୍ତତଃ ପରବର୍ତ୍ତୀ ଜେନେରେସନ ପର୍ଯ୍ୟନ୍ତ କାମରେ ଲାଗିବ । ସେଇଟା ଯଦି ପୁଅଠାରୁ ନାତି କି ଅଣନାତି ପଣନାତି ପର୍ଯ୍ୟନ୍ତ ଯାଇପାରେ ତା'ହେଲେ ଆହୁରି ଭଲ । ତିନିଚାରି ପୁରୁଷକୁ ଆଖି ଆଗରେ ରଖି ଘରର ମୂଳଦୁଆ ଦେବାକୁ ସେ ଚାହାନ୍ତି । ଶୁଭ୍ରକାନ୍ତ ଭାବନ୍ତି ସେ ଚିନ୍ତା କଅଣ ମୋ ବାପାଙ୍କର ନ ଥିଲା ? ସେ ଯେତେବେଳେ ତାଙ୍କ ପୈତୃକ ଘରଟିକୁ ସାମାନ୍ୟ ବଦଳେଇ ନୂଆ କରି ତିଆରି କରେଇଥିଲେ ସେତେବେଳେ ସେ ମଧ୍ୟ ତାଙ୍କ ପୁଅ ନାତି ଯାଏ ଚିନ୍ତା କରି ତା'ର ବ୍ୟବସ୍ଥା କରିଥିଲେ । ପ୍ରାଇମେରୀ ସ୍କୁଲର ହେଡ଼ମାଷ୍ଟର ସେତେବେଳେ ପୁଅର ଜୀବନକାଳ ପର୍ଯ୍ୟନ୍ତ ଆଖି ବଢ଼େଇ ପାରିଥିଲେ ଏବଂ ସେଇ ଅନୁସାରେ ପୁଅର ଆବଶ୍ୟକତାର ପୂରଣ ପାଇଁ ଗୋଟିଏ ରିଡ଼ିଂ କମ୍ ଠାକୁରଘରର ବ୍ୟବସ୍ଥା ରଖିଥିଲେ । ସେ କୋଠରୀର ଗୋଟାଏ ପାଖରେ ବହୁ ପୁରାଣ ଓ ପୋଥିଠାରୁ ଆରମ୍ଭ କରି ମଧୁ ରାଓଙ୍କ ବର୍ଣ୍ଣବୋଧ ଓ ରହମତ ଅଲ୍ଲୀଙ୍କ ଗଣିତ ସୋପାନ ଯାଏ ଗଚ୍ଛିତ ଥିଲାବେଳେ ଅନ୍ୟ ପାଖରେ ଥାକ ଉପରେ ବହୁ ଦେବଦେବୀ ଓ ସେମାନଙ୍କର ଧଳାକଳା ଚୀନାମାଟିର ମୂର୍ତ୍ତିମାନ ଶୋଭା ପାଉଥିଲେ । ପୃଥିବୀର ସବୁ ବାପାଙ୍କର ଚିନ୍ତାଧାରା ଗୋଟିଏ ନା ସେଥିରେ ଫରକ ଥାଏ ? ବଦଳିଯାଏ କି ଜାଗାରୁ ଜାଗାକୁ ? ଯାହା ଭାରତୀୟ ବାପାମାନେ ଭାବନ୍ତି ତାହା କଅଣ ଇଂଲଣ୍ଡ, ଆମେରିକା କି ଚୀନ୍‌ର ବାପାମାନେ ଭାବିପାରନ୍ତି ନାହିଁ ? ସୃଷ୍ଟିର ଆରମ୍ଭରୁ ଆଜିଯାଏ ପୃଥିବୀର ସବୁ ବାପା ଏକାପରି ଚିନ୍ତା କରି ଆସୁଥିବେ ବୋଲି ତାଙ୍କର ମନେ ହେଲା । ତେବେ ମାୟାବତୀ ଆଜି ମୋ ବାପାଙ୍କ ଚିନ୍ତନକୁ ପଛକୁ ଆଡ଼େଇ ଦେଇ ଆଉ ଗୋଟିଏ କଥା କହୁଛନ୍ତି କାହିଁକି ? ସେ ତାର ସମାଧାନ ରାସ୍ତା କିଛି ପାଉ ନଥିଲେ ।

ସେଦିନ ଶୁଭ୍ରକାନ୍ତ ମାୟାବତୀଙ୍କୁ ବୁଝେଇବାକୁ ଚେଷ୍ଟା କଲେ । ସେ କହିଲେ, ଏକା ସହରରେ ଗୋଟିଏ ଘର ଥାଉଁ ଥାଉଁ ଆମେ ଆଉ ଗୋଟିଏ ଘର ତିଆରିରେ ସମୟ ନଷ୍ଟ କରିବା । ଅନେକ ପଇସା ମଧ୍ୟ ଖର୍ଚ୍ଚ ହେବ । ଆମେତ ଏକୁଟିଆ । ପୁଅ ଯେ ଆମ ପାଖରେ ରହିବ ତାର କିଛି ମାନେ ନାହିଁ । ତେଣୁ ମାନସିକସ୍ତରରେ ସାମାନ୍ୟ ଆଡ଼ଜଷ୍ଟମେଣ୍ଟ ହେଇଗଲେ ଆଉ କିଛି ଅସୁବିଧା ନ ଥିବ ।

ମାୟାବତୀ କଥାଟାକୁ ଗ୍ରହଣ କରିପାରିଲେ ନାହିଁ । ସେ କହିଲେ, ସେ ଘରଟା ଶହେ କି ଦେଢ଼ଶହ ବର୍ଷ ତଳେ ତିଆରି ହୋଇଥିଲା । ତାର ମୂଳଦୁଆ ଏବେ କିପରି ଥିବ ତାହା

ଅନୁମାନ କରିହୁଏ । ଗତ ଦେଢ଼ଶହ ବର୍ଷ ଭିତରେ ବହୁ ଝଡ଼ ତୋଫାନ, ଘୂର୍ଣ୍ଣିବାତ୍ୟା ଏବଂ ଏପଚିକି ଭୂମିକମ୍ପ ମଧ୍ୟ ସହିଯାଇଛି ଏଘର । ତାକୁ ଦେଖିଲେ ତାର ଜରାଜୀର୍ଣ୍ଣ ଅବସ୍ଥାରୁ ତା ଉପରେ ଆଉଥରେ ଚୂନ ଓ ରଙ୍ଗ ମଡ଼େଇବାର କିଛି ମାନେ ହୁଏ ? ସେ ଘର ତିଆରିବେଳେ ଆଧୁନିକ ଇଞ୍ଜିନିୟରିଂ କଳାକୌଶଳ ପ୍ରୟୋଗ ହେଇ ନ ଥିଲା ବୋଲି ତାହା ଏବେ ଆଉ ବାସଯୋଗ୍ୟ ହେବ ନାହିଁ ମନେ ହେଉଚି । ତା'ଛଡ଼ା ତା'ର ପରିବେଶ ମଧ୍ୟ ଅତି ଖରାପ । ମାତ୍ର ପଚାଶ ଫୁଟ ଦୂରରେ ଗୋଟାଏ ପରିତ୍ୟକ୍ତ ପଙ୍କ ପୋଖରୀ । ସବୁ ରୋଗ ବେମାରୀ ସେଇଠୁ ଜନ୍ମ ହେଉଚି ବୋଲି ପଡ଼ୋଶୀମାନେ ମୋତେ କହିଚନ୍ତି । ତେଣୁ ସେ ଘରକୁ ମୁଁ ମୋଟେ ଯିବି ନାହିଁ । ତୁମେ ଯିବ ଯଦି ଯାଅ । ସେ ଡ୍ରଇଂ ରୁମ୍‌ରୁ ଉଠିଗଲେ ଏବଂ ବେଡ୍‌ରୁମ୍‌ରେ ଶୋଇ ପଡ଼ିଲେ ।

ମାୟାବତୀ ଯେ ମୋଟେ ସାଲିସ କରିବାକୁ ଚାହୁଁ ନାହାନ୍ତି ଏକଥା ଶୁଭ୍ରକାନ୍ତ ସ୍ପଷ୍ଟ ବୁଝିପାରୁଥିଲେ । ସେ ତା'ର କାରଣ ମଧ୍ୟ ବୁଝୁଥିଲେ । ପ୍ରସ୍ତାବିତ ଘର ତିଆରି ହେବାର ଜାଗାଟି ତାଙ୍କ ଭାଇ ଅନେକ କଷ୍ଟରେ ତାଙ୍କୁ କିଣେଇ ଦେଇଥିଲେ । ସେ ଜାଗାଟି ଜାତୀୟ ରାଜପଥକୁ ଲାଗିଥିବାରୁ ଏବଂ ଅନ୍ୟ ଦିଗରେ ରେଳଷ୍ଟେସନ ପାଖରେ ହେଇଥିବାରୁ ତା ଉପରେ ବହୁ ବଡ଼ବଡ଼ ନେତା ଓ ଅଫିସରଙ୍କ ନଜର ଥିଲା । କିନ୍ତୁ ଜମି ମାଲିକ ମାୟାବତୀଙ୍କ ଭାଇଙ୍କ ବନ୍ଧୁ ହୋଇଥିବାରୁ ତାହା ଶେଷରେ ତାଙ୍କୁ ହିଁ ମିଳିଥିଲା । ସେ ସମସ୍ତଙ୍କୁ କହନ୍ତି ଭାଗ୍ୟରେ ଥିଲେ କେବଳ ଏହା ସମ୍ଭବ ହୋଇପାରେ ।

ଅନ୍ୟ ଦିଗରେ ମାୟାବତୀ ମଧ୍ୟ ଶୁଭ୍ରକାନ୍ତଙ୍କୁ ଅସନ୍ତୁଷ୍ଟ ରଖିବାକୁ ଚାହୁଁ ନଥିଲେ । ଯେତେ ଅବୁଝା ବା ଅମଣିଆ ହୋଇଥାଉ ନା କାହିଁକି କୌଣସି ସ୍ତ୍ରୀ ତା' ସ୍ୱାମୀକୁ ଅସୁଖୀ ରଖିବାକୁ ଚାହିଁବ ନାହିଁ । ଏହାହିଁ ଭାରତୀୟ ନାରୀର ପ୍ରଥମ ମାନସିକତା । ମାୟାବତୀ ତା'ର ବ୍ୟତିକ୍ରମ ନ ଥିଲେ । ସେ ଚାହୁଁଥିଲେ କୌଣସି ପ୍ରକାରେ ସ୍ୱାମୀଙ୍କ ମତରେ ପରିବର୍ତ୍ତନ ଆଣିବାକୁ ।

ସମୟ ଅପେକ୍ଷା କରେ ନାହିଁ । ଶୁଭ୍ରକାନ୍ତଙ୍କ ଅବସର ନେବାର ସମୟ ପାଖେଇ ଆସିଲା ବେଳକୁ ମାୟାବତୀ ତାଙ୍କ ପ୍ରୋଗ୍ରାମ ଅନୁସାରେ ଘରଟି ମଧ୍ୟ ତିଆରି କରିଦେଲେ । ସେ ଶୁଭ୍ରକାନ୍ତଙ୍କୁ ବୁଝାଇ ଦେଲେ ଯେ ନୂଆ ଘରଟିଏ ତିଆରି ହେଇଯାଉ । ଘର ପାଇଁ ସମସ୍ତ ଖର୍ଚ୍ଚ ପୁଅ ଦେବ କହୁଚି ଯେତେବେଳେ ସେତେବେଳେ ସେଥିରେ ଆମର ଆପତ୍ତି କାହିଁକି ରହିବ ? ପ୍ଲାନ ମଧ୍ୟ ସେ ଦେଖିଯାଇଚି । ସେ ତ ଚାକିରି କରୁଚି ମଲ୍‌ଟି ନେସନାଲ କମ୍ପାନୀରେ। ପାଖାପାଖି ଏକଲକ୍ଷ ମାସକୁ ପାଉଚି ସିଏ । ତେଣୁ ଏ ଘରଟି ତା'ର ବୋଲି ମନେ କର । ଅବସର ନେଲା ବେଳକୁ ଆମେ ଯଦି ଠିକ୍ କରିବା ଯେ ଆମେ ପୁରୁଣା ଘରେ ରହିବା ତେବେ ନୂଆ ଘରଟାକୁ ଭଡ଼ା ଲଗେଇ ଦେବା । କିମ୍ବା ପୁଅ ଯାହା କହିବ ସେଇଆ କରିବା ।

ଏ କଥାଟାକୁ ଶୁଭ୍ରକାନ୍ତ ସେତେବେଳେ ଟାଳି ପାରି ନଥିଲେ । ତେଣୁ ନୂଆ ଘର ତିଆରି ସରିଲା ବେଳକୁ ପୁରୁଣା ଘରଟିରୁ ଭଡ଼ାବାଲାକୁ ବିଦା କରିବା ଉଦ୍ଦେଶ୍ୟରେ ନୋଟିସ ଦେଇ ସାରିଥିଲେ । ସେଥର ସେମାନେ ଠିକ୍ କଲେ ଯେ ସେ ଘରେ ଯାଇ ଦୁଇତିନିଦିନ ରହିବେ ଏବଂ ଘରର ଆବଶ୍ୟକୀୟ ପରିବର୍ତ୍ତନ କଥା ଚିନ୍ତା କରିବା ସହିତ ଅନ୍ତତଃ ପଡ଼ୋଶୀମାନଙ୍କ ସହିତ ଟିକିଏ ପରିଚୟ ହେଇଯିବେ ।

ସେଦିନ ସେମାନେ ସେ ପୁରୁଣା ଘରେ ପହଞ୍ଚିଲା ବେଳକୁ ସକାଳ ନଅ । ଆଉ ମାସଟିଏ ରହିଲା ଶୁଭ୍ରକାନ୍ତଙ୍କର ସରକାରୀ ଘର ଛାଡ଼ିବାକୁ । ଘର ନ ଛାଡ଼ିଲେ ପେନସନ ମଧ୍ୟ ଅଟକିଯିବ । ତେଣୁ ସେ ଚାହୁଁଥିଲେ ଯେତେ ଶୀଘ୍ର ସମ୍ଭବ ଏ ଘରଟିକୁ ତାଙ୍କ ମନ ମୁତାବକ ଗଢ଼ି ତୋଳିବାକୁ । ମାୟାବତୀ ଘରଯାକ ବୁଲି ଆସିଲା ପରେ ସାଥିରେ ଆଣିଥିବା ଜିନିଷପତ୍ର ରୋଷେଇଘରେ ଥୋଇଦେଲେ । ଶୁଭ୍ରକାନ୍ତ ସାଥିରେ ନେଇଥିବା କଣ୍ଟ୍ରାକ୍ଟରକୁ କୋଉଠି କିପରି କଅଣ କରିବାକୁ ହେବ ସେକଥା ବୁଝାଉ ଥାଆନ୍ତି । ସେ ଯେତେବେଳେ କହିଲେ ରିଡ଼ିଂ ରୁମ୍ ଓ ଠାକୁରଘର ଯେମିତି ଅଛି ସେମିତି ରହିବ ମାୟାବତୀ ସେଥିରେ ଆପତ୍ତି କଲେ। ସେ କହିଲେ ଏ ଦୁଇଟିକୁ ଅଲଗା କରିବା ନିହାତି ଦରକାର । ନଚେତ ମୋର ପୂଜା କରିବାବେଳେ ତୁମେ ଗୋଳମାଳ କରିବ । ମୋର ପୂଜା ପାଇଁ ଅନ୍ତତଃ ପକ୍ଷେ ଦୁଇଘଣ୍ଟା ଦରକାର । ସେତେବେଳେ ତୁମେ ସେ ରୁମ୍‌କୁ ଗଲେ ମୋତେ ଅସୁବିଧା ହେବ । ସେ ପ୍ରସ୍ତାବ ଦେଲେ ଯେ ଏସବୁ ବହିଗୁଡ଼ାକ ଅନେକ ପୁରୁଣା । ତା'ର ଜୀବନକାଳ ମଧ୍ୟ ସରି ସରି ଆସିଲାଣି । ତୁମେ ଯଦି ସେଗୁଡ଼ିକୁ ସତରେ ରଖିବାକୁ ଚାହୁଁଚ, ମାନେ ସତକୁ ସତ ସେସବୁ ବହିର ଯଦି କିଛି ଆବଶ୍ୟକତା ଥାଏ ତେବେ ସେସବୁକୁ ଆଉଥରେ ବନ୍ଧେଇ କରି, ସଫାସଫି କରି ଛୋଟ ଛୋଟ ଆଲମାରିରେ ଭର୍ତ୍ତିକରି ସେ ସିଡ଼ି ତଳେ ରଖିଦିଅ । ଆଉ ତୁମର ପଢ଼ାପଢ଼ି ପାଇଁ ଗୋଟାଏ ସେପାରେଟ ରୁମ୍ ନରଖି ବରଂ.... । ତାଙ୍କ କଥା ସରିବା ପୂର୍ବରୁ ଶୁଭ୍ରକାନ୍ତ କହିଲେ ସେ ଦୁର୍ମୂଲ୍ୟ ବହିଗୁଡ଼ିକୁ ତୁମେ ପାହାଚ ତଳେ ରଖିଦେବାକୁ କହୁଚ ? ତା'ମାନେ ମୋ ପାଖରେ ଯୋଉ ବହି ଅଛି ତାକୁ ମଧ୍ୟ ସେଇଠି ରଖିଦେବି ?

ମୋ କଥା ମାନ, ବହିଗୁଡ଼ାକ ଯଦି ଏତେ ଦୁର୍ମୂଲ୍ୟ ବୋଲି ତୁମେ ଭାବୁଚ ତେବେ ତାକୁ କୌଣସି ଗୋଟାଏ ଲାଇବ୍ରେରୀକୁ ଦେଇଦିଅ । ସେଠି ତା'ର ସଦୁପଯୋଗ ହେବା ସହିତ ଉପଯୁକ୍ତ ରକ୍ଷଣାବେକ୍ଷଣ ମଧ୍ୟ ହୋଇପାରିବ । ଆମ ଘରେ ମିଛୁଟାରେ ଗୋଟାଏ ଲାଇବ୍ରେରୀ କାହିଁକି ଖୋଲିବା ? ଆମ ପରେ କଅଣ ହେବ ? ମାୟାବତୀ କହିଲେ ତାଙ୍କର ବହିପ୍ରିୟ ସ୍ୱାମୀଙ୍କୁ । ଏକଥା ଶୁଭ୍ରକାନ୍ତଙ୍କ ମନକୁ ପାଇଲା ନାହିଁ । ସେ କହିଲେ, ସେ ଘରଟା ତୁମ ପାଇଁ ଯେତିକି ଦରକାର ମୋପାଇଁ ମଧ୍ୟ ସେତିକି ଦରକାର । ଏଇ କୋଠରୀରେ ମୋ ବାପା ଦିନକୁ ତିନିଚାରି ଘଣ୍ଟା ବିତାଉଥିଲେ । ସେ ଖାଲି ଠାକୁର ପୂଜା ପରୁଥିଲେ ତା' ନୁହେଁ । ବହି ମଧ୍ୟ ପଢୁଥିଲେ । ଏଇଘରେ ମଧ୍ୟ ମୋ ବାପାଙ୍କ ମୃତ୍ୟୁ ହୋଇଥିଲା,

ଠାକୁରଙ୍କ ସାମ୍ନାରେ ଭାଗବତ ପଢୁପଢୁ । ମୋ ମାଆ, ମରିବାର ମାତ୍ର ଦିନକ ପୂର୍ବରୁ ଏଇ ଘରେ ସେ ଦୁଇଜଣଙ୍କ ଫଟୋ ବନ୍ଧେଇ କରି ଆଣି କାନ୍ଥରେ ଝୁଲେଇ ଦେଇଥିଲା । ଏତେବଡ଼ ତୈଳଚିତ୍ର ମୁଁ ଆଉ କୋଉଠି ଦେଖି ନାହିଁ । ମୁଁ ଏବେ ତାକୁ କିମ୍ବା ସେ ବହିଗୁଡ଼ାକୁ ଘୁଞ୍ଚାଇବା କଥା ମୋଟେ ଚିନ୍ତା ମଧ୍ୟ କରିପାରୁ ନାହିଁ । ସତେ ଯେମିତି ବହି ଓ ଠାକୁରମାନଙ୍କୁ ବାପା ବୋଉ ଦୁହେଁ ଜଗିଛନ୍ତି । ଏକଥା କହିହେବ ଯେ ସେମାନେ ଏବେ ଚବିଶ ଘଣ୍ଟା ଠାକୁରଙ୍କ ସେବାରେ ନିୟୋଜିତ ଅଛନ୍ତି । ସେମାନଙ୍କୁ ଡିଷ୍ଟର୍ବ କରିବା ଆମର ଅଧର୍ମ ହେବ ।

ତେବେ ତୁମକୁ ଯୋଉଟା ଭଲ ଲାଗୁଛି କର । ସେ ମୁହଁ ବୁଲାଇ ଚାଲିଗଲେ । ଏଇ କଥାଟାରେ ମାୟାବତୀ ଯେ ସହଯୋଗ କରିବାକୁ ଚାହୁଁ ନାହାନ୍ତି ସେ କଥା ଶୁଭ୍ରକାନ୍ତଙ୍କ ପକ୍ଷେ ବୁଝିବା କଷ୍ଟ ନ ଥିଲା । କିନ୍ତୁ ତାଙ୍କର ଆଉ କିଛି ଉପାୟ ନ ଥିଲା । ମାୟାବତୀ ତାଙ୍କ ମନକଥା ବୁଝିବାକୁ ଚେଷ୍ଟା କରୁନାହାନ୍ତି ବୋଲି ତାଙ୍କର ଧାରଣା ହେଉଥିଲା । ଏ ଘରଟାରେ ତାଙ୍କର ଶୈଶବ, କୈଶୋର ଏବଂ ଯୌବନର ପ୍ରଥମ କେତୋଟି ପାହାଚ କଟିଚି । ଏଇ ଘରଟାରେ ମଧ୍ୟ ସେ ମା ଡାକ ଶିଖିଛନ୍ତି ,ବଂ ମା'ର ମମତା ପାଇଛନ୍ତି । ଏଇ ଘରେ ବାପା ତାଙ୍କୁ ମାଟିରୁ ମଣିଷରେ ରୂପାନ୍ତରିତ କରିଛନ୍ତି । ନୂଆ ଜୀବନଦାନ ଦେଇଛନ୍ତି । ଆଜି ଯଦି ତାଙ୍କର କିଛି ବି ନିଜର ବୋଲି ଦାବି କରିବାର ଥାଏ ତେବେ ସେଇଟା ସେ ବାପାଙ୍କଠାରୁ ହିଁ ଦାନ ସୂତ୍ରରେ ପାଇଛନ୍ତି । ଏକଥା ତ ଅସ୍ୱୀକାର କରି ହେବ ନାହିଁ ।

କିନ୍ତୁ ଏସବୁ କଥା ମାୟାବତୀ ବୁଝିଲେ ତ ? ସେ ବା କେମିତି ବୁଝନ୍ତେ ? ମାୟାବତୀ ସେ ଘରକୁ ଆସିଥିଲେ କେବଳ ଶୁଭ୍ରକାନ୍ତଙ୍କ ଯୌବନର ଆହ୍ୱାନରେ । ଆସିଥିଲେ ମଧ୍ୟ ଅତିଥି ହେଇ ଅଳ୍ପ କେତେଟା ଦିନ ପାଇଁ । ଯୌବନର ସମୁଜ୍ଜ୍ୱଳ ସମୟଟିକୁ ସମାନ ଭାବରେ ଦୁହିଁଙ୍କ ଭିତରେ ବାଣ୍ଟିବାରେ ସୁଯୋଗ ସୃଷ୍ଟି ପାଇଁ ବାପା ତାଙ୍କର ବିବାହର ମାତ୍ର ଦଶ ଦିନ ପରେ ଦୁହିଁଙ୍କୁ ଡାକି କହିଥିଲେ- ତୁମେମାନେ କର୍ମକ୍ଷେତ୍ରକୁ ଯାଅ । କର୍ମକ୍ଷେତ୍ର ହିଁ ମଣିଷ ଜୀବନର ମହତ୍ତର କ୍ଷେତ୍ର । ତୁମର ଏଠି କିଛି କାମ ନାହିଁ । କିନ୍ତୁ ଯେତେବେଳେ ଚାହିଁବ ଏଠାକୁ ଆସିବ । ଏଥିପାଇଁ ଏ ଦ୍ୱାର ସବୁବେଳେ ଉନ୍ମୁକ୍ତ ରହିବ । ସେ ଦିନ ହିଁ ଶୁଭ୍ରକାନ୍ତ ମାୟାବତୀଙ୍କ ହାତ ଧରି ବାହାରିଗଲେ । ତା'ପରେ ଶୁଭ୍ରକାନ୍ତ ଯେତେବେଳେ ଭାବିଚନ୍ତି ବା ଝୁରିଛନ୍ତି ତାଙ୍କ ଘରକଥା, ବାପା ମାଆଙ୍କ କଥା ସୁମରଣା କରି, ମାୟାବତୀ ତାଙ୍କ ମୁଣ୍ଡକୁ ଆଉଜାଇ ନେଇଛନ୍ତି ନିଜ କୋଳ ଉପରକୁ ଏବଂ ଅସଜଡ଼ା ବାଳକୁ ଆଉଁଷି ଦେଇଛନ୍ତି । ସେତେବେଳେ ଶୁଭ୍ରକାନ୍ତ ସେ କୋଳ ଭିତରେ ମୁହଁ ଲୁଚେଇ ତାର ଉଷ୍ମତା ମାପିଛନ୍ତି ଏବଂ ଭାବିଛନ୍ତି କିଏ ଇଏ ? କାହାର ଏ କୋଳ ? ଏଇଟା କଅଣ ଗୋଟାଏ ମାୟା କି ଆଉ ?

ଆଜି ସେଇ ମାୟାବତୀ ସେ ଘର ପ୍ରତି ବିମୁଖ ହେଇ ଉଠିଛନ୍ତି । ସେ ଭିନ୍ନ ଏକ

ପରିବେଶରେ ଭିନ୍ନ ଏକ ଘର ପ୍ରତି ଆକୃଷ୍ଟ ହୋଇ ପଡ଼ିଛନ୍ତି । ଏ ଘରର ମଞ୍ଜ ବନିଥିବ ବହି, ଫଟୋ, ଠାକୁରମାନେ ତାଙ୍କର ପ୍ରିୟ ହୋଇପାରୁ ନାହାନ୍ତି । ସେସବୁକୁ ସେ ଆପଣେଇ ନେଇପାରୁ ନାହାନ୍ତି ।

''ହେଇ ଦେଖିଲଣି ?'' ମାୟାବତୀ ବଗିଚା ପଛପଟୁ ପାଟି କଲେ ।

ଶୁଭ୍ରକାନ୍ତ ସେଠାକୁ ଯିବାରୁ ସେ ପାଖକୁ ଘୁଂଚିଆସି କହିଲେ, ''ହେଇ ଦେଖ ।'' ବାଡ଼ି ସେ ପାଖରେ ବୁଲୁଥିଲେ ଦୁଇଟା ଘୁଷୁରି । ସେ ଅନେଇଲେ ମାୟାବତୀଙ୍କୁ । କଅଣ ସେ କହିବାକୁ ଚାହୁଁଛନ୍ତି ? ''ଏମାନଙ୍କ ମାଲିକମାନେ ମଧ୍ୟ ଏଇ ପାଖରେ କୋଉଠି ରହୁଛନ୍ତି ।'' ମାୟାବତୀ କହିଲେ କିଛିଟା ଘୃଣାର ସ୍ୱରରେ ।

ଶୁଭ୍ରକାନ୍ତ କି ଉତ୍ତର ଦେବେ ? ଖାଲି ଗୋଟାଏ ଥାକ ମାରିଦେବା ପାଇଁ କହିଲେ, ''ସେମାନେ କଅଣ ବରାବର ସେମିତି ଥିବେ ନା ସ୍ଥାନ ବି ସେମିତି ଥିବ ?'' ମାୟାବତୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେତକ କଥା ଯେ ଯଥେଷ୍ଟ ନ ଥିଲା ଏକଥା ସେ ବୁଝୁଥିଲେ ମଧ୍ୟ ତାଙ୍କର ଆଉ କିଛି କରିବାର ନଥିଲା ।

ସେମାନେ ଘର ଭିତରକୁ ଚାଲି ଆସିଲେ । ଘର ଭିତରର ବାୟୁମଣ୍ଡଳଟା ଯେମିତି ଅନେକବେଳୁ ବାହାରକୁ ବାହାରି ନ ପାରି ଅଟକି ଯାଇଥିଲା । କେମିତି ଗୋଟାଏ ଗୁମ୍‌ସୁମ୍ ଭାବ । ମାୟାବତୀ ଅନ୍ୟାନ୍ୟ କୋଠରିସବୁକୁ ବୁଲି ଦେଖୁଥିଲେ । ସାଥିରେ ଆସିଥିବା କଣ୍ଟ୍ରାକ୍ଟର ତା କାମରେ ଲାଗିଯାଇଥିଲା ।

ଗୋଟାଏ ଅସ୍ୱାଭାବିକ ପରିସ୍ଥିତିରୁ ଶୁଭ୍ରକାନ୍ତ କେମିତି ମୁକ୍ତି ପାଇବେ ସେ ବୁଝିପାରୁ ନଥିଲେ । ସେ ମାୟାବତୀଙ୍କ ସାମ୍ନା ସାମ୍ନି ହେବାକୁ ଚାହୁଁ ନ ଥିଲେ । ମାୟାବତୀଙ୍କ ପ୍ରଶ୍ନ କାଳେ ତାଙ୍କୁ ପୁଣି ଅପ୍ରସ୍ତୁତ କରି ପକାଇବ ସେଇ ଭୟରେ ସେ କାକୁସ୍ଥ ହୋଇ ଯାଉଥିଲେ । ସେ ଗୋଟିଏ ବେଡ଼୍‌ରୁମ୍‌ର ଝରକା ଖୋଲିବାକୁ ଯାଉଯାଉ କଅଣ ଭାବିଲେ କେଜାଣି ପୁଣି ତାକୁ ଟାଣିଆଣି ବନ୍ଦ କରିଦେଲେ ।

''ବନ୍ଦ କାହିଁକି କରୁଚ ? ଖୋଲୁନ ?'' ସେ ଦେଖିଲେ ତାଙ୍କ ପଛରେ ମାୟାବତୀ ଠିଆ ହୋଇଛନ୍ତି ଗୋଟାଏ ଅସମ୍ଭବ ଚାଲେଞ୍ଜର ଅସ୍ତ୍ର ନେଇ ।

ଶୁଭ୍ରକାନ୍ତ ଧୀରେ ଧୀରେ ତାଙ୍କ ପାଖଦେଇ ବାହାରି ଚାଲିଗଲେ । ଯୁଦ୍ଧକୁ ଭୟ କରି ପଛେଇ ଯାଉଥିବା ଦୁର୍ବଳ ସୈନିକ ପରି ।

ସେଦିନ ଦିନଯାକ ସେ ଆଉ ମାୟାବତୀଙ୍କ ସହିତ କଥା ହୋଇନାହାନ୍ତି । ମାୟାବତୀ ମଧ୍ୟ ଗୋଟାଏ ଅସ୍ୱାଭାବିକ ନିରବତା ଭିତରେ ନିଜକୁ ଢାଙ୍କି ରଖିବାକୁ ଚେଷ୍ଟା କରୁଥିଲେ । ସେଦିନ ସେମାନେ କଣ୍ଟ୍ରାକ୍ଟରକୁ ମରାମତି କାମସବୁ ବରାଦ କରି ଫେରି ଆସିଲେ ପୁରୁଣା ସରକାରୀ ବାସଭବନକୁ । ସେଦିନ ପୁରୁଣାଘରେ ରହିବାର ଆଶା ତାଙ୍କର ମଉଳି ଯାଇଥିଲା ।

ସନ୍ଧ୍ୟାରେ ଶୁଭ୍ରକାନ୍ତ ମାର୍କେଟରୁ ପରିବା ନେଇ ଫେରିବାବେଳକୁ ଟିକିଏ ଡେରି

ହେଇଗଲା । ସେ ଯେ ଏତେ ଚଞ୍ଚଳ ଛାଡ଼ି ଚାଲିଯିବେ ଏକଥା ବନ୍ଧୁମାନଙ୍କୁ ଶୁଣାଇ ଶୁଣାଇ ଡେରି ହେଇଗଲା । ସେ ଆଉ ମଧ୍ୟ ସେ ମାର୍କେଟକୁ ପରିବା ନେବାକୁ ଆସିବେ ନାହିଁ ବୋଲି ସମସ୍ତଙ୍କୁ ଜଣାଇ ଦେଲେ । ଘରେ ପଶୁପଶୁ ମାୟାବତୀ କହିଲେ, ଜୟନ୍ତ ଫୋନ୍ କରିଥିଲା । କହିଲା, ଆସନ୍ତା ମାସ ପ୍ରଥମ ସପ୍ତାହରେ ସେ ଆସିବ ପାଞ୍ଚସାତ ଦିନ ପାଇଁ । ନୂଆ ଘରର କିଛି ପରିବର୍ତ୍ତନ ଦରକାର । ଆମକୁ ସେଇ ଘରକୁ ସିଫ୍ଟ କରିବାକୁ କହିଲା । ସେ ସେଇଠି ରହି ସେ କାମ କରିବ । ଆସନ୍ତାକାଲି ସେ ସିଙ୍ଗାପୁର ଯିବ । ସେଠୁ ଫେରିଲା ପରେ ଏଠାକୁ ଆସିବ ।''

ମାୟାବତୀ ଟିକିଏ ରହିଗଲେ ଏବଂ ଶୁଭ୍ରକାନ୍ତଙ୍କୁ ଅନେଇଲେ । ତାଙ୍କ ମୁହଁର ଭାବ ଯେ ବଦଳି ଆସୁଛି ସେ କଥା ସେ ଲକ୍ଷ୍ୟ କରୁଥିଲେ ।

ପରିବା ବେଗ୍ ଦୁଇଟା ତଳେ ରଖି ସେ ସଳଖି ଠିଆ ହେବାବେଳକୁ ମାୟାବତୀ ପୁଣି କହିଲେ, ''ସେ ଆଉ କଅଣ କହିଲା ଜାଣ ?''

''କଅଣ ?''

''ତା ସହିତ ଲରା ଆସୁଚି । ସେ ବି ଆମ ସହିତ କେତେ ଦିନ ରହିବ । ସେ କୁଆଡ଼େ ଭାରତର ମନ୍ଦିରମାନଙ୍କ ଉପରେ ଗବେଷଣା କରୁଛି । ସେମାନେ କୋଣାର୍କ ଓ ପୁରୀ ଯିବେ ଏବଂ ସେଠୁ ପୁଣି ଖଜୁରାହୋ ମଧ୍ୟ ଯିବେ ।''

''କଅଣ ନାଁ କହିଲ ?''

''ଲରା..... ଲ...ରା''

''ତୁମେ ଗୋକୁଳାନନ୍ଦ ମହାପାତ୍ରଙ୍କ ସେ ଉପନ୍ୟାସଟା ପଢ଼ିଛ ? ଲରା କେମିତି ଚନ୍ଦ୍ରାଲୋକକୁ ଯାଇଥିଲା ?''

ମାୟାବତୀ ମୁହଁ ଫେରାଇ ନେଇ ରୋଷେଇ ଘର ଭିତରକୁ ପଶିଗଲେ ।

ଜୟନ୍ତ ଓ ଲରା ଆସିଛନ୍ତି ଓ ବେଶ୍ କିଛିଦିନ ଓଡ଼ିଶାର ବିଭିନ୍ନ ସ୍ଥାନ ବୁଲାବୁଲି କରି ଫେରି ଯାଇଛନ୍ତି । ସେମାନେ ଯୋଉ ପାଞ୍ଚସାତ ଦିନ ରହିଲେ ତା' ଭିତରେ ଥରେ ଦୁଇଥର ମାତ୍ର ଘରେ ଖାଇଥିବେ । ଲରା କିନ୍ତୁ ପ୍ରତ୍ୟେକ କଥାରେ ଶୁଭ୍ରକାନ୍ତ ଓ ମାୟାବତୀଙ୍କ ଉଚ୍ଚପ୍ରଶଂସା କରିଛନ୍ତି । ଲରା ଆର୍କିଟେକ୍ଚର ଛାତ୍ରୀ ହୋଇଥିବାରୁ ଘରର ଯୋଉ କେତୋଟି ପରିବର୍ତ୍ତନ ଆବଶ୍ୟକ ସେ ବିଷୟରେ ପରାମର୍ଶ ଦେଇଛି । ଶୁଭ୍ରକାନ୍ତ ତାକୁ ଗ୍ରହଣ କରିଛନ୍ତି । ଶୁଭ୍ରକାନ୍ତ ଯେତେବେଳେ ଜୟନ୍ତକୁ ପଚାରିଲେ, ''ଆମ ପୁରୁଣା ଘରକୁ ଥରେ ଯିବୁ ନାହିଁ ?'' ଜୟନ୍ତ କୁରୁଳି ଉଠି କହିଲା, ''ବୁଝିଲ ଲରା, ମୋ ଜେଜେଙ୍କର ଗୋଟିଏ ଘର ଅଛି । ଘର ତ ନୁହେଁ ଗୋଟେ କଟେଜ୍ । ଗୋଆର କଟେଜ ଦେଖିଚ ନା ? ଚାରିପାଖେ ନଡ଼ିଆ ଓ ଗୁଆ ବଣ । ସାମ୍ନାରେ ତାଳବଣର ବିରାଟ ପୋଖରୀ । ତୁମେ ଜାଣ ଲରା, ମାଛମାନେ ସେଠି କଥା କହନ୍ତି ? ରଙ୍ଗୀନ ମାଛ ବି ।''

''ରିଏଲି ?'' ଲରାର ଆଖି ବିସ୍ମୟ ବିସ୍ଫାରିତ ହୋଇ ଯାଇଥିଲା । ସେଦିନ ଏରୋଡ୍ରମକୁ ଯିବା ପୂର୍ବରୁ ମାୟାବତୀ ଜୟନ୍ତକୁ ଗୋଟିଏ ଘର ଭିତରକୁ ଡାକିନେଇ ଯେତେବେଳେ ପଚାରିଲେ ''ତୁ ମୋତେ ଗୋଟାଏ କଥା କହିଲୁ । ତୁ କଅଣ ଲରାକୁ.....''

ଖୁବ୍ ଜୋର୍‌ରେ ହସି ଉଠିଲା ଜୟନ୍ତ । କହିଲା, ''ଓ ବୋଉ ! ତୁମକୁ ଆଉ ପାରିହେବନି ।'' ପୁଣି ହସିଲା ଏବଂ ତା'ପରେ ସୁଟକେଶ ଉଠେଇଲା ।

ଶୁଭ୍ରକାନ୍ତ ଦୁଆରମୁହଁ ସେପଟେ ଠିଆ ହୋଇଥିଲେ । ରବିବାର ସକାଳେ ବନ୍ଧା ହୋଇଥିବା ନିରୀହ ଛେଳି ପରି କିଛି ବୁଝୁ ନଥିବା ଆଖିରେ ସେ ଖାଲି ଅନେଇ ରହିଥିଲେ । ସେମାନେ ମୁଣ୍ଡିଆ ମାରୁଥିଲେ ।

କାର୍‌ର ଡୋର ଖୋଲୁଖୋଲୁ ଲରା କହିଲା, ''ମୁଁ ପୁଣିଥରେ ଆସିବି– କିନ୍ତୁ ଏକୁଟିଆ । ଏଠି ମାସେ ଖଣ୍ଡେ ରହିବି । କିନ୍ତୁ ଏ ଘରେ ନୁହେଁ । ସେଇ କଟେଜ୍‌ରେ । ବହୁତ ଭଲ ଲାଗିବ ସେତେବେଳେ ।'' ଖୁସି ହୋଇଗଲେ ଶୁଭ୍ରକାନ୍ତ । ''ଆସ, ଆସ ।'' କହିଲେ ଶୁଭ୍ରକାନ୍ତ ।

''ଲରାର କାମ ଅନେକ ବାକି ରହିଗଲା ।'' କାର୍‌ରେ ବସୁ ବସୁ କହିଥିଲା ଜୟନ୍ତ ।

ଠିକ୍ ମାସକ ପରେ ଜୟନ୍ତ ଫୋନ୍ କଲା । କହିଲା, ''ବାପା ! ବୋଉକୁ ନେଇ ତୁମେ ଏଠିକୁ ଆସନ୍ତା ପନ୍ଦର ତାରିଖରେ ଆସିବ । ମୁଁ ଆଜି କୋରିଅରରେ ଦୁଇଟା ଏଆର୍ ଟିକଟ ପଠାଇ ଦେଉଛି । ସେ ଟ୍ରେନ୍‌ରେ ତମେମାନେ ଆସି ପାରିବନି । ତୁମର ବି.ପି. ବଢ଼ିଯିବ ।''

ଶୁଭ୍ରକାନ୍ତ କହିଲେ ମୁଁ ଶୁଣୁଚି.....

ଜୟନ୍ତ କହିଲା, ''ମୁଁ କହୁଛି ସେ କଥା । ମୁଁ ଏଠି ଗୋଟେ ଘର କିଣିଛି । ସବୁ ଟଙ୍କା କମ୍ପାନୀ ଦେଲା । ଜାଣିଚ ନା, ଠିକ୍ ଜେଜେଙ୍କ ଘର ପରି ଗୋଟେ କଟେଜ୍ । ସାମ୍ନାରେ ବିରାଟ ହ୍ରଦ । ସେଇ ନଡ଼ିଆ ଆଉ ଗୁଆ ବଣ । ତୁମେ ଦେଖିଲେ ଭାରି ଖୁସି ହେବ । ଆଉ ଶୁଣ । ଲରାର ବି ଖୁବ୍ ପସନ୍ଦ ହୋଇଛି ଘରଟା । ତା'ଛଡ଼ା...... ।''

ଶୁଭ୍ରକାନ୍ତ ଆଉ କିଛି ଶୁଣିପାରୁ ନଥିଲେ । ଟେଲିଫୋନ୍‌ର ସ୍ୱରଟା କେମିତି କେଜାଣି ଯେମିତି ଅନେକ ଦୂରରୁ ଭାସି ଆସୁଥିଲା । ଅନେକ ନଈର ସୁଅରେ ଶୁଖିଲା କାଠ ଖଣ୍ଡେ ଉଠିପଡ଼ି ଭାସି ଆସୁଥିଲା ପରି ।

(ସହକାର, ଶାରଦୀୟ ୨୦୦୪)

# ଈଶ୍ୱର ଜଣେ ସାଧାରଣ ମଣିଷ

ସେଦିନ ମୁନିବରଙ୍କ ତପସ୍ୟା ଶହେ ବର୍ଷ ପୂରଣ ହୋଇଗଲା । ଏହି ଦୀର୍ଘ ବର୍ଷ କାଳ ସେ ଖାଦ୍ୟପେୟ ଛାଡ଼ି ଗୋଟିଏ ଆସନରେ ବସି ଧ୍ୟାନମଗ୍ନ ଥିଲେ । ତେବେ ଏହି ସମୟ ଭିତରେ ସେ କେବଳ ପବନ ଆହାର କରୁଥିଲେ । ସେ ତାଙ୍କ ଶରୀରକୁ ଏପରି ଭାବରେ ଆୟତ୍ତ କରିଥିଲେ ଯେ, ସେଥିରେ ସେ ଯେତେବେଳେ ଶରୀରର ଯୋଉ ଅଂଶକୁ ଯାହା ନିର୍ଦ୍ଦେଶ ଦେଉଥିଲେ ସେ ତାହା ପାଳନ କରୁଥିଲା । ତାଙ୍କ ମତରେ ପ୍ରକୃତି ଦ୍ୱାରା ଜଣେ ପରିଚାଳିତ ନହୋଇ ପ୍ରକୃତିକୁ ନିଜ ପରିଚାଳନାରେ ରଖିବା ଉଚିତ । ତାହାହିଁ ସୃଷ୍ଟିର ଇଚ୍ଛା ଥିଲା ବୋଲି ସେ କହୁଥିଲେ । ମଣିଷକୁ ସର୍ବଶକ୍ତିମାନ୍ କରି 'ତାକୁ ସମସ୍ତଙ୍କ ଉପରେ' ରଖିବାକୁ ସେତେବେଳେ ସୃଷ୍ଟିକର୍ତ୍ତା ଇଚ୍ଛା କରିଥିଲେ । ମୁନିବରଙ୍କ ତପସ୍ୟାର ମୂଳ ଉଦ୍ଦେଶ୍ୟ ତାହାହିଁ ଥିଲା । ଦେହ, ମନ ଓ ଆତ୍ମାକୁ ନିଜ ନିୟନ୍ତ୍ରଣାଧୀନ କରିବା ପାଇଁ ଯେଉଁ ଶକ୍ତିର ଆବଶ୍ୟକ ତାକୁ ପାଇବା ପାଇଁ ସେ ଚେଷ୍ଟା କରୁଥିଲେ । ସେହି ଅଲୌକିକ ଶକ୍ତିର ପ୍ରାପ୍ତି ଈଶ୍ୱର ପ୍ରାପ୍ତି ସହିତ ସମାନ ବୋଲି ତାଙ୍କର ମତ ଥିଲା ।

ମୁନିବର ସେ ତିନୋଟି ଶକ୍ତିକୁ ଅତି ଚମତ୍କାର ଭାବେ ନିଜ ଆୟତ୍ତରେ ରଖିଥିଲେ ବୋଲି ଦୀର୍ଘ ଶହେ ବର୍ଷ କାଳ ସେ ତପସ୍ୟାରେ ବସି ପାରିଥିଲେ । ସେ ଯେ ଆଉ ଶହେ ବର୍ଷ ବସିପାରି ନଥାଆନ୍ତେ ସେ କଥା ନୁହେଁ । କିନ୍ତୁ ଶହେ ବର୍ଷକୁ ହିଁ ଈଶ୍ୱର ପ୍ରାପ୍ତିର ସମୟ ସୀମା ହିସାବରେ ଧାର୍ଯ୍ୟ କରିଥିଲେ ଏବଂ ତେଣୁ ତାଙ୍କ ତପସ୍ୟାକୁ ତା'ରି ଭିତରେ ସୀମିତ ରଖିଥିଲେ ।

ଘୋର ଜଙ୍ଗଲ ଭିତରେ ଦୀର୍ଘ ଶହେବର୍ଷ କମ୍ କଥା ନୁହେଁ । ଏହି ଶହେ ବର୍ଷ ଭିତରେ ସୂର୍ଯ୍ୟ ଚନ୍ଦ୍ର ଯେମିତି ଆକାଶ ପଥରେ ଯିବା ଆସିବା କରିବା କଥା ତାହା ହୋଇଥିଲା । ପୃଥିବୀ ମଧ୍ୟ ତାର କକ୍ଷ ପଥରେ କଥା ଯେମିତି ବୁଲିବାର କଥା ସେମିତି ବୁଲୁଚି । ଗ୍ରହ, ନକ୍ଷତ୍ର ଓ ତାରାମାନେ ସେମାନଙ୍କ ଗତିବିଧିରେ କେବେ ହେଳା କରି ନାହାନ୍ତି । ତାର ଅର୍ଥ

ଏହି ଯେ ଗତ ଶହେ ବର୍ଷ ଭିତରେ ଋତୁଚକ୍ର ଯେମିତି ପରିବର୍ତ୍ତନ ହେବାର କଥା ସେସବୁ ଠିକ୍ ସମୟରେ ହେଇଚି । ବର୍ଷା, ଶୀତ ଓ ଖରା ଏମାନେ ସମସ୍ତେ ଆସିଛନ୍ତି ଓ ଯାଇଛନ୍ତି । ବନ୍ୟା, ଝଡ଼, ଘୂର୍ଣ୍ଣିମାନେ ନିୟମିତ ପୃଥିବୀ ପୃଷ୍ଠକୁ ଆସିଛନ୍ତି ଓ ଯାଇଚନ୍ତି ।

ମୁନିବର ତଥାପି ତପସ୍ୟାରତ । ପ୍ରକୃତି ହୁଏତ ଜାଣେନା ତପସ୍ୟାରେ ମଗ୍ନ ଥିବା ମୁନିଋଷିମାନେ କେବେ ସେମାନଙ୍କ କାୟାକଳ୍ପରେ ନଥାଆନ୍ତି । ଯାହାଫଳରେ ସେମାନେ ଶାରୀରିକ ସ୍ପର୍ଶଠାରୁ ଦୂରରେ ଥାଆନ୍ତି । ସ୍ପର୍ଶେନ୍ଦ୍ରିୟ ମଣିଷର ଏକ ଶକ୍ତିଶାଳୀ ଇନ୍ଦ୍ରିୟ ଏକଥା ଆମେ ଯେତିକି ଜାଣୁଁ ଆମ ଅପେକ୍ଷା ବେଶି ଭଲ ଭାବରେ ଜାଣନ୍ତି ମୁନିଋଷିମାନେ । ଏହା ମଣିଷର ଗୋଟିଏ ଶକ୍ତିଶାଳୀ ଶତ୍ରୁ । ମଣିଷ ସବୁ ଇନ୍ଦ୍ରିୟକୁ ଆୟତ୍ତ କରିପାରେ କିନ୍ତୁ ସ୍ପର୍ଶେନ୍ଦ୍ରିୟକୁ ପାରେ ନାହିଁ । ଗୋଟିଏ ସେକେଣ୍ଡ ବା ତା'ଠାରୁ ଆହୁରି କମ୍ ସମୟ ମଧ୍ୟରେ ସ୍ପର୍ଶ ମଣିଷ ମନ, ଦେହ ଓ ଆତ୍ମାକୁ ଜାଳିପୋଡ଼ି ଧ୍ୱଂସ କରି ଦେଇପାରେ । ସ୍ପର୍ଶେନ୍ଦ୍ରିୟ ଅନ୍ୟସବୁ ଇନ୍ଦ୍ରିୟକୁ ପରାଜିତ କରିଦେଇ ପାରେ ।

ମୁନିବର ସବୁ ଇନ୍ଦ୍ରିୟକୁ ଜୟ କରିଥିବାରୁ ଋତୁଚକ୍ରର ପରିବର୍ତ୍ତନ ବା ଖରା, ବର୍ଷା, ଶୀତ ଇତ୍ୟାଦିର ଅତ୍ୟାଚାରକୁ ସେ ମୋଟେ ଅନୁଭବ କରିପାରି ନଥିଲେ ।

ଏଥିରେ ଦେବତାମାନେ ମଧ୍ୟ ଈର୍ଷାନ୍ୱିତ ହେଇ ପଡ଼ିଥିଲେ । ମଣିଷର ଏକାଗ୍ରତା ଯେ ଦିନେ ସେମାନଙ୍କ ପାଇଁ ବିପଦ ସୃଷ୍ଟି କରିବ ତାହା ସେତେବେଳେ ସେମାନେ ବୁଝି ପାରିଲେ । ଏକାଗ୍ରତା ହିଁ ତପସ୍ୟା । ପ୍ରାକୃତିକ ଉପାୟରେ ସେମାନେ ଯେତେବେଳେ ଦେଖିଲେ ମୁନିବରଙ୍କ ତପସ୍ୟା ଭଙ୍ଗ କରି ହେଉ ନାହିଁ ସେମାନେ ସେତେବେଳେ କୃତ୍ରିମ ଉପାୟରେ ଚାପ ପ୍ରୟୋଗ କରିବାକୁ ଚେଷ୍ଟା କଲେ । ସେମାନେ ପ୍ରଥମେ ବାଘ, ଭାଲୁ ଓ ସାପ ପ୍ରଭୃତି ବନ୍ୟଜନ୍ତୁଙ୍କୁ ସେଠାକୁ ପଠାଇଲେ । କିନ୍ତୁ ହାୟ, ଏଇ ଜନ୍ତୁମାନେ ମଣିଷର ସ୍ପର୍ଶେନ୍ଦ୍ରିୟ ଅନୁପସ୍ଥିତ ଥିବା ଗୋଟେ ଶରୀରକୁ ବାରମ୍ବାର କାମୁଡ଼ି ଓ ଚୋଟମାରି ମଧ୍ୟ ସାମାନ୍ୟ କ୍ଷତି କରିପାରିଲେ ନାହିଁ । ସେମାନେ ଭାବିଲେ ସ୍ପର୍ଶେନ୍ଦ୍ରିୟ ନଥିବା ଶରୀରକୁ କାମୁଡ଼ିବା ଯାହା କାଠ ପଥରକୁ କାମୁଡ଼ିବା ସେଇଆ । ସେମାନେ ପରାସ୍ତ ହେଲେ ଏବଂ ଦେବତାମାନଙ୍କଠାରେ ଯାଇ ନିଜର ଅକ୍ଷମତା ପ୍ରକାଶ କଲେ । କିନ୍ତୁ ଏ କଥା ତ ସମସ୍ତେ ଜାଣନ୍ତି ଦେବତାଙ୍କର ମନ୍ଦବୁଦ୍ଧି ମଣିଷଙ୍କ ଅପେକ୍ଷା ମଧ୍ୟ ବେଶି । ସତକଥା କହିବାକୁ ଗଲେ ମଣିଷଙ୍କ ମନ୍ଦବୁଦ୍ଧି ଦେବତାଙ୍କଠାରେ ଥିବା ମନ୍ଦବୁଦ୍ଧିର ଗୋଟିଏ ସାମାନ୍ୟ ଅଂଶ ମାତ୍ର । ଗୋଟାଏ ଉପାୟରେ ସେମାନେ ଯେତେବେଳେ ଦେଖିଲେ ମୁନିବରଙ୍କ ତପସ୍ୟା ଭଙ୍ଗ କରିହେଉ ନାହିଁ ସେମାନେ ଆଉ ଏକ ଉପାୟ ପାଞ୍ଚିଲେ । ସେମାନେ ଏକ ସୁନ୍ଦରୀ ନାରୀଙ୍କୁ ତାଙ୍କଠାକୁ ପଠାଇବାକୁ ଠିକ୍ କଲେ । ସେମାନେ କହିଲେ ନାରୀ ଓ ତପସ୍ୟା ଏମାନେ ପରସ୍ପରର ପରିପୂରକ । ହିମାଳୟ ପରି ସୁଉଚ୍ଚ ତପସ୍ୟାକୁ ବାମନ ପରି ସାମାନ୍ୟ ନାରିଟିଏ ନିମିଷକେ ଉଡ଼େଇ ଦେଇପାରେ । ନାରୀ ପ୍ରତି ମଣିଷର ସ୍ୱାଭାବିକ ଦୁର୍ବଳତାଠାରେ

ପୃଥିବୀର ଯେକୌଣସି ଶକ୍ତି ପରାଜୟ ସ୍ୱୀକାର କରେ । ସେମାନେ ସ୍ୱର୍ଗ ରାଜ୍ୟରେ ଥିବା ସର୍ବୋତ୍କୃଷ୍ଟ ନାରୀଟିକୁ ମୁନିବରଙ୍କଠାକୁ ଯାଇ ତାଙ୍କ ତପସ୍ୟା ଭଙ୍ଗ କରିବାକୁ ଆଦେଶ ଦେଲେ । ସବୁଠାରୁ ସୁନ୍ଦରୀ ନାରୀଟିର ନାଁ ସେମାନେ ଦେଇଥିଲେ 'ସ୍ୱର୍ଗ-ସୁନ୍ଦରୀ' । ସ୍ୱର୍ଗସୁନ୍ଦରୀ ଅବଶ୍ୟ ପ୍ରଥମେ ଏଥିରେ ଆପତ୍ତି ଉଠେଇଥିଲେ । ସେ କହିଥିଲେ କେବଳ ଦେବତାମାନଙ୍କ ମନୋରଂଜନ ପାଇଁ ମୋର ଜନ୍ମ । ସେମାନଙ୍କ ସହିତ ମୋର ସମ୍ପର୍କ ଭିନ୍ନ । ମୁଁ ନର ଲୋକରେ ଥିବା ମଣିଷମାନଙ୍କ ସହିତ କିପରି ସମ୍ପର୍କ ସ୍ଥାପନ କରିବି ? ଏହା ନୀତି ଦୃଷ୍ଟିରୁ ମଧ୍ୟ ହେବା ଉଚିତ ନୁହେଁ । ମୁଁ ପାରିବି ନାହିଁ । ମୋତେ ଆପଣମାନେ କ୍ଷମା କରନ୍ତୁ ।

ଦେବତାମାନେ ଏଥିରେ ସନ୍ତୁଷ୍ଟ ହେଲେ ନାହିଁ । ସେମାନେ କହିଲେ, ଦେହଦାନରେ ବାଛବିଚାର ନୀତି ଦୃଷ୍ଟିରୁ ଗର୍ହିତ । ମେନକା ତ ପୁଣି ବିଶ୍ୱାମିତ୍ରଙ୍କ ନିକଟକୁ ଯାଇଥିଲେ । ସମଗ୍ର ସ୍ୱର୍ଗରାଜ୍ୟ ତଥା ଦେବଗଣଙ୍କ ସ୍ୱାର୍ଥ ଦୃଷ୍ଟିରୁ ତୁମକୁ ଯୋଉ କାମ ଯେତେବେଳେ ଦିଆଯିବ ସେତେବେଳେ ତୁମେ ତାକୁ ହସିହସି ପାଳନ କରିବା ଉଚିତ । ଯଦି ସେତେବେଳେ ବିଶ୍ୱାମିତ୍ରଙ୍କ ତପସ୍ୟା ଭାଙ୍ଗି ଦିଆଯାଇ ନଥାନ୍ତା, ତେବେ ଆଜି ଆମେ ଏଠି ବାସ କରୁଥାନ୍ତାନ୍ତୁ ନା ତୁମେ ଆମ ନନ୍ଦନକାନନର ସୁଖ ପାଉ ଥାଆନ୍ତ । କଥାର ଗୁରୁତ୍ୱଟା ତୁମର ଏ ଦିଗରୁ ବିଚାର କରିବା ଉଚିତ ।

ସ୍ୱର୍ଗ ସୁନ୍ଦରୀ ଅଗତ୍ୟା ରାଜି ହେଲେ ।

ସେ ମର୍ତ୍ତ୍ୟଲୋକକୁ ଗଲେ ଏବଂ ମୁନିବରଙ୍କ ତପସ୍ୟା ସ୍ଥାନରେ ପହଞ୍ଚିଲେ । ମୁନିବର ପୂର୍ବପରି ତପସ୍ୟାରତ । ତାଙ୍କ ଚକ୍ଷୁ ମୁଦ୍ରିତ ଥିଲା । ଏବଂ ସେ ପଦ୍ମାସନରେ ହିଁ ବସିଥିଲେ । ସ୍ୱର୍ଗସୁନ୍ଦରୀ ପ୍ରଥମେ ତାଙ୍କୁ ସ୍ପର୍ଶ କରିବେ କି ନା ଚିନ୍ତା କଲେ । ସେ ଜାଣନ୍ତି ତାଙ୍କ ସ୍ପର୍ଶରେ ଥାଏ ଅସମ୍ଭବ ଉତ୍ତେଜନାକାରୀ ଶକ୍ତି । ତାର ଦାହିକା ଶକ୍ତି ମଧ୍ୟ ପ୍ରବଳ । କିନ୍ତୁ ସେ ତାଙ୍କୁ କିପରି ଓ କେଉଁଠି ସ୍ପର୍ଶ କରିବେ ?

ପାଦରେ ନା ଶିରରେ ?

ମୁନିବରଙ୍କ ଚକ୍ଷୁ ତଥାପି ମୁଦ୍ରିତ । ସେ ସମ୍ପୂର୍ଣ୍ଣ ଧ୍ୟାନସ୍ଥ ।

ସ୍ୱର୍ଗସୁନ୍ଦରୀ ସ୍ଥିର କଲେ ସେ ପ୍ରଥମେ ତାଙ୍କୁ ସ୍ପର୍ଶ ନକରି ତାଙ୍କୁ ମଧୁର ଜଳ ପିଇବାକୁ ଦେବେ । ସେ ତୃଷାର୍ତ୍ତ ? ସେଇ କଥାଟା ଜାଣିଗଲା ପରେ ଜଳ ମୁଖ ଗହ୍ୱରକୁ ପ୍ରବେଶ କଲା ନାହିଁ । ସ୍ୱର୍ଗସୁନ୍ଦରୀ ତାଙ୍କର ଦ୍ୱିତୀୟ ଅସ୍ତ୍ର ପ୍ରୟୋଗ କଲେ । ସେ ଅତ୍ୟନ୍ତ ସୁଶୀତଳ ଓ ସୁମଧୁର ପାଣି ମାଠିଆରେ ନେଇ ତାଙ୍କ ମୁଣ୍ଡ ଉପରେ ଏକ ବସୁଧାରାର ଭ୍ରମ ସୃଷ୍ଟି କଲେ । ମସ୍ତିଷ୍କରେ ପ୍ରବାହମାନ ଚିନ୍ତା ଓ ଚେତନାରେ ଏହା ଦ୍ୱାରା ବ୍ୟାଘାତ ସୃଷ୍ଟି କରିହୁଏ ।

କି ଆଶ୍ଚର୍ଯ୍ୟ, ମୁନିବର ଏଥିରେ ସାମାନ୍ୟମାତ୍ର ହଲଚଲ ମଧ୍ୟ ହେଲେ ନାହିଁ । ଚକ୍ଷୁ ପୂର୍ବପରି ସମ୍ପୂର୍ଣ୍ଣ ମୁଦ୍ରିତ । ଦେହ ଜୀବହୀନ ସଦୃଶ ।

ସେ ତାଙ୍କର ଶେଷ ଅସ୍ତ୍ର ପ୍ରୟୋଗ କଲେ । 'ସ୍ପର୍ଶ' ଏହା ଏକ ବିସ୍ଫୋରଣ ମଧ୍ୟ ସୃଷ୍ଟି

କରିପାରେ । ସେ ହଠାତ୍ କୌଣସି ଦୁର୍ଭାଗ୍ୟପୂର୍ଣ ଦୁର୍ଘଟଣା ଆଶା କରୁ ନଥିଲେ । କାରଣ ତାହା ଓଲଟା କାମ କରିପାରେ ମଧ୍ୟ । ସମଗ୍ର ବିଦ୍ୟୁତ୍ ପ୍ରବାହର ଏକତ୍ରିକରଣରେ ସେ ନିଜେ ଭସ୍ମୀଭୂତ ହୋଇଯିବେ ନାହିଁ ତ ? ଉତ୍ପାଦିତ ଶକ୍ତି ଯଦି ଖର୍ଚ୍ଚ ହେଇ ନପାରେ ? ଫଳ ବିଷମୟ ହେବ ନାହିଁ ? ସେ ଅତି ଧୀର ତଥା ନମ୍ର ଭାବରେ ମୁନିବରଙ୍କ ପାଦରେ ପାପୁଲି ସ୍ପର୍ଶ ଦେଲେ ।

କୋମଳ କମନୀୟ ହାତର ଚୁମ୍ବକୀୟ ସ୍ପର୍ଶ ସମଗ୍ର ଦେହରେ ଏକ ନୂତନ ଶିହରଣ ସୃଷ୍ଟି କରିବାର କଥା । ସେ ସ୍ପର୍ଶ ପ୍ରଥମେ ଲହଡ଼ି ଭାଙ୍ଗେ ଆଖିରେ । ଅନ୍ୟାନ୍ୟ ଅବୟବରେ ।

ସେସବୁ କିଛି ହେଲା ନାହିଁ । ମୁନିବର ପୂର୍ବବତ ଧ୍ୟାନମଗ୍ନ । ସେ ତାଙ୍କର ଦୁଇ ହାତର ପାପୁଲିରେ ମୁନିବରଙ୍କ ମୁଖମଣ୍ଡଳକୁ ଧରି ନିଜ ଓଠର ପ୍ରଥମ  ସ୍ପର୍ଶଟିଏ ତାଙ୍କ ଓଠ ଉପରେ ଆଙ୍କିଦେଲେ । ତାଙ୍କ ତୂଣୀରୁ ଶେଷ ଅସ୍ତ୍ରଟି ନିକ୍ଷେପିତ ହେଇଗଲା । ମୁନିବର ତଥାପି ତପସ୍ୟାରତ । ସେ ସ୍ଥିର, ଅଚଳ ଓ ଅବିଚଳିତ । ଶହେବର୍ଷ ବିତିଗଲା । ତାଙ୍କ ତପସ୍ୟାର ବିଧି ବିଧାନରେ ସେ ତିଳେମାତ୍ର ହେଳା କରି ନଥିଲେ ମଧ୍ୟ ସେ ଶେଷ ପର୍ଯ୍ୟନ୍ତ ଈଶ୍ୱରଙ୍କୁ ପାଇ ପାରିଲେ ନାହିଁ ।

ସେ ଉଠିଲେ ଏବଂ ଜନପଦ ଭ୍ରମଣରେ ବାହାରି ଗଲେ । ଈଶ୍ୱରଙ୍କ ସନ୍ଧାନରେ ମୁନିବର ଶେଷରେ ପୃଥିବୀର ଗୋଟିଏ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ବୁଲିବାକୁ ଲାଗିଲେ ସେ ପୃଥିବୀର ଯୋଉଠି ଯେତେ ଶାସ୍ତ୍ର ଥିଲା ସେସବୁକୁ ଅଧ୍ୟୟନ ପୂର୍ବକ ଈଶ୍ୱରଙ୍କୁ ଖୋଜିବାକୁ ଲାଗିଲେ ।

ସେ ମଠକୁ ଗଲେ । ସେଠି ଈଶ୍ୱର ନଥିଲେ । ସେ ମନ୍ଦିର, ଗୀର୍ଜା, ମସ୍‌ଜିଦ ଓ ଦେବାଳୟକୁ ଗଲେ । ଈଶ୍ୱର ଥିବାର ସେ କୋଉଠି ହେଲେ ଦେଖିଲେ ନାହିଁ । ତଥାପି ସେ ନିରାଶ ହେଲେ ନାହିଁ । ଈଶ୍ୱରଙ୍କୁ ନିଶ୍ଚୟ ଦିନେ ନା ଦିନେ କୋଉଠି ପାଇବାର ଏକାନ୍ତ ଇଚ୍ଛା ତାଙ୍କୁ ଏ ସବୁଥିରୁ କେବେବି ବିରତ କରାଇ ପାରି ନଥିଲା । ସେ ଏକ ନିର୍ଜନ ଅରଣ୍ୟ ପଥରେ ଯାଉଯାଉ ଅନୁଭବ କଲେ ତାଙ୍କୁ ଭୋକ ଲାଗୁଛି ।

ଏ କଅଣ ? କ୍ଷୁଧା ? ମୁନିବର ଆଶ୍ଚର୍ଯ୍ୟ ହେଲେ । ତାଙ୍କଠାରେ କ୍ଷୁଧା କିପରି ପ୍ରକାଶ ପାଉଚି ? ସେ କଅଣ ତେବେ କ୍ଷୁଧାକୁ ଜୟ କରି ନାହାନ୍ତି ? ସେ କଥାଟାକୁ ଗଭୀର ଭାବେ ଚିନ୍ତା କଲେ ଏବଂ ଶେଷରେ ଏଇ ସିଦ୍ଧାନ୍ତରେ ଉପନୀତ ହେଲେ ଯେ ଯେହେତୁ ସେ ଏବେ ଆଉ ତପସ୍ୟା କରୁ ନାହାନ୍ତି ତେଣୁ ଇନ୍ଦ୍ରିୟମାନେ ଆଉ ତାଙ୍କ ଅଧୀନରେ ନାହାନ୍ତି । ସେ ତେଣୁ କ୍ଷୁଧା ଅନୁଭବ କରିବା ସ୍ୱାଭାବିକ । କ୍ଷୁଧା ଧୀରେ ଧୀରେ ତାଙ୍କ ଭିତରେ ପ୍ରବଳ ହେବାକୁ ଲାଗିଲା । କ୍ଷୁଧା ତାଙ୍କ ଭିତରେ ଯନ୍ତଣାର ରୂପ ନେବାକୁ ଆରମ୍ଭ କଲା । ସେ ଖୁବ୍ କଷ୍ଟ ଅନୁଭବ କରୁଥିଲେ ।

ତାଙ୍କର ଯନ୍ତଣା ଧୀରେଧୀରେ ବଢ଼ିବାକୁ ଲାଗିଲା । ସେ ଯନ୍ତଣାରୁ କିପରି ମୁକ୍ତି ଲାଭ

କରିପାରିବେ ଏକଥା ଚିନ୍ତା କରିବାକୁ ଲାଗିଲେ । କିନ୍ତୁ ଏ ଦୀର୍ଘ ଅରଣ୍ୟ ପଥ ଶେଷ ନହେଲେ ତାଙ୍କୁ ଖାଦ୍ୟ କୋଉଠୁ ମିଳିବ ? ସେ ଅରଣ୍ୟ ପଥ ଆଉ ଅଛି କିମ୍ବା ତାର ଶେଷ କେଉଁଠି ସେକଥା ମଧ୍ୟ ସେ ଜାଣି ନଥିଲେ । ଗୋଟାଏ ଦିଗରେ ତାଙ୍କର କ୍ଷୁଧା ବଢୁଛି ଓ ଅନ୍ୟ ଦିଗରେ ନିକଟରେ ଖାଦ୍ୟ ମିଳିବାର ସମ୍ଭାବନା ଦେଖାଯାଉ ନାହିଁ କି ପଥ ମଧ୍ୟ ସରିବାର ଦେଖାଯାଉ ନାହିଁ । ପାଖରେ କୋଉଠି ପାଣି ମଧ୍ୟ ନାହିଁ ଯାହା ତାଙ୍କୁ ହେଉଥିବା କଷ୍ଟରୁ ସାମାନ୍ୟ ମୁକ୍ତି ଦେଇ ପାରନ୍ତା ।

କିନ୍ତୁ ଏସବୁ ସତ୍ତ୍ୱେ ଈଶ୍ୱରଙ୍କୁ ଖୋଜି ପାଇବାର ଇଚ୍ଛା ତଥାପି ତାଙ୍କଠାରେ ବଳବତ୍ତର ଥିଲା । ସେ ଭାବୁଥିଲେ ସାମାନ୍ୟ କ୍ଷୁଧା ତାଙ୍କୁ ଈଶ୍ୱରଙ୍କୁ ପାଇବାରୁ ନିବୃତ୍ତ କରାଇ ପାରିବ ନାହିଁ । ତାଙ୍କର ଯନ୍ତ୍ରଣା ଆହୁରି ବଢ଼ିବାକୁ ଲାଗିଲା । ସେ ଏକପ୍ରକାର ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ସେ ବେଳେବେଳେ ପେଟଟାକୁ ଚିପି ଧରି ବସି ପଡୁଥିଲେ ଏବଂ ପୁଣି ଚାଲୁଥିଲେ । ସେ ଭାବୁଥିଲେ ଏ ବାଟଟା କଅଣ ଅସରନ୍ତି ? କେବେବି ସରିବ ନାହିଁ ? ସେ ଏପରି ମଧ୍ୟ ଭାବିଲେ ଯେ ତାଙ୍କ ଜୀବନ ସରିବା ପୂର୍ବରୁ ସେ ବାଟର ଶେଷ ମୁଣ୍ଡରେ ପହଞ୍ଚି ପାରିବେ ନାହିଁ ? ହଠାତ୍ ସେ ଏପରି ଏକ ଜାଗାରେ ଆସି ପହଞ୍ଚିଲେ ଯୋଉଠି ତାଙ୍କୁ ଜଣାଗଲା, ଯେମିତି ଏଇ ଅଳ୍ପ ଦୂରରେ କିଛି ଲୋକ କଥାବାର୍ତ୍ତା ହେଉଛନ୍ତି । ତାଙ୍କର ମନେ ହେଲା ହୁଏତ ଗୋଟାଏ ଜନସମାଗମରୁ ସେ ଶବ୍ଦ ଭାସି ଆସୁଚି । କିନ୍ତୁ କାହିଁ ? କେଉଁଠି ସେ ଲୋକମାନେ ? ଏଠୁ କେତେଦୂର ? ସେ ଯାଇ ସେଠି ପହଞ୍ଚି ପାରିବେ ତ ?

ସେ ଭାବିଲେ ଏତେ ଲୋକ ଯେତେବେଳେ ସେଠି ଅଛନ୍ତି ସେମାନଙ୍କ ପାଖରେ ନିଶ୍ଚୟ ଖାଦ୍ୟ ଥିବ । ପିଇବା ପାଇଁ ପାଣି ମଧ୍ୟ ଥିବ । ତାଙ୍କର ମନେ ହେଲା ସେ ଯଦି ବଞ୍ଚିଯିବେ ତେବେ ଈଶ୍ୱରଙ୍କୁ ପାଇବାରେ ତାଙ୍କୁ ଆଉ କଷ୍ଟ ହେବ ନାହିଁ । ଯୋଉଆଡୁ ସ୍ୱର ଶୁଭୁଥିଲା ସେଇ ଆଡ଼କୁ ଏକ ପ୍ରକାର ସେ ଦୌଡ଼ିବାକୁ ଆରମ୍ଭ କଲେ । ହଠାତ୍ ସେ ଗୋଟାଏ ଗ୍ରାମ୍ୟ ହାଟ ପାଖରେ ଯାଇ ପହଞ୍ଚିଲେ । ସେ ହାଟରେ ନାନା ପ୍ରକାର ଜିନିଷପତ୍ର କିଣାବିକା ଚାଲିଥିଲା । ସଞ୍ଜ ହେଇ ଆସୁଥାଏ ବୋଲି ଲୋକମାନେ ଖୁବ୍ ବ୍ୟସ୍ତ ଥିଲେ । ସେମାନେ ଖୁବ୍ ଶୀଘ୍ର କିଣାବିକା ସାରି ଘରକୁ ଫେରିବେ । ସେମାନେ ତାଙ୍କ କାମରେ ଏତେ ବ୍ୟସ୍ତ ଥିଲେ ଯେ ମୁନିବରଙ୍କ ଉପସ୍ଥିତି ସେମାନେ ଲକ୍ଷ୍ୟକରି ପାରୁ ନଥିଲେ ସେମାନଙ୍କ ଭିତରୁ ଅଧିକାଂଶ ହୁଏତ ମୁନିବରଙ୍କୁ ଖାଲି ଥରେ ଦେଖିଥିଲେ ଏବଂ ତା ପର ମୁହୂର୍ତ୍ତରେ ମୁହଁ ବୁଲାଇ ଅନ୍ୟଆଡ଼େ ଚାଲି ଯାଉଥିଲେ । ସେମାନଙ୍କ ଲୁଗା କାନିରେ କାଳେ କିଛି ଖାଇବା ଜିନିଷ ଥାଇପାରେ ଭାବି ପଚାରିବା ପୂର୍ବରୁ ଲୋକଟି ଅନ୍ୟଆଡ଼େ ମୁହଁ ବୁଲାଇ ନେଇଥାଏ ।

ମୁନିବରଙ୍କ ସଙ୍କଟ ଆସ୍ତେ ଆସ୍ତେ ଘନେଇ ଆସିଲାଣି । ସେ ପ୍ରାୟ ପାଗଳ ହେବା ଅବସ୍ଥାକୁ ସେତେବେଳକୁ ଆସିଗଲେଣି । ସେ ହାଟ ଭିତରେ ଅତି ଦ୍ରୁତ ଗତିରେ ଚାଲୁ

ଚାଲୁ କୋଉଠି କିଛି ଖାଇବାକୁ ପାଇବେ, ତାହାହିଁ ଦେଖୁଥିଲେ । ଅନେକ ସମୟରେ ତାଙ୍କର ଏ ଅବସ୍ଥା ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହେଉ ଯାଉଥିଲେ ମଧ୍ୟ ଝଟାଳୁଟରେ ବାବାଜୀ ଜଣକ କାଳେ କିଛି ମାଗଣାରେ ପାଇବାକୁ ଇଚ୍ଛା କରି ମାଗିଦେବ ସେଇ ଭୟରେ ସେମାନେ ମୁହଁ ଆଡ଼େଇ ଦେଉଥିଲେ । ଗାଁର ହାଟଚାତ କେବଳ ଗରିବ ଲୋକଙ୍କର । ସେଠି ମାଗଣାରେ କିଏ କାହାକୁ ଦେବ ?

ମୁନିବରଙ୍କ କ୍ଷୁଧାଜନିତ ଯନ୍ତଣା ଏତେ ବଢ଼ିଗଲାଣି ଯେ ସେ ସେତେବେଳେ ଆଉ ଈଶ୍ୱରଙ୍କୁ ମନେ ପକାଇ ପାରୁ ନଥିଲେ । କାରଣ କ୍ଷୁଧା ଓ ଈଶ୍ୱର ଏମାନେ ପରସ୍ପରର ପରିପୂରକ । ଏମାନେ କେହି କାହାକୁ ଆଖିଟେକି ଦେଖି ପାରନ୍ତି ନାହିଁ । ହଠାତ୍ ସେ ଗୋଟିଏ ଝୁଡ଼ି ସାମ୍ନାରେ ଅଟକି ଗଲେ । ଅତି ସୁନ୍ଦର ବାଉଁଶ ଝୁଡ଼ି ଭିତରେ କେବଳ ଗୋଟିଏ ମାତ୍ର ଦରପାଚିଲା ପିଜୁଳି  ପଡ଼ିଥିଲା । ପିଜୁଳିଟି ବଡ଼ ନଥିଲେ ଛୋଟ ବି ନଥିଲା । ସେ ଚାରିଆଡ଼କୁ ଦେଖିଲେ । ଝୁଡ଼ି ପାଖରେ କିମ୍ବା ଆଖପାଖରେ ମଧ୍ୟ କେହି ନଥିଲେ । ସେ ଝୁଡ଼ିଟି କାହାର ସେ କଥା ମଧ୍ୟ ସେ ବୁଝିପାରୁ ନଥିଲେ ।

ସେ ତୁରନ୍ତ ଝୁଡ଼ି ଭିତରକୁ ହାତ ଭର୍ତ୍ତି କଲେ ଏବଂ ପିଜୁଳିଟିକୁ ଉଠାଇ ଆଣି ଖାଇବାକୁ ଲାଗିଲେ । ଚୋବାଇବାକୁ ସାମାନ୍ୟ କଷ୍ଟ ହେଉଥିଲେ ମଧ୍ୟ ତାଙ୍କ ମୁହଁରେ ପରମତୃପ୍ତିର ଆଭା ଫୁଟି ଉଠୁଥିଲା । ତାଙ୍କ ଆଖି ମୁଦି ହେଇ ଯାଇଥିଲା । ଲୋକଟିଏ ଆସି ଝୁଡ଼ି ପାଖରେ ଠିଆ ହେଲା । ସେ ଦେଖିଲା ଝୁଡ଼ି ଭିତରେ ତାର ଯେଉଁ ଏକମାତ୍ର ଦରପାଚିଲା ପିଜୁଳିଟି ବିକ୍ରି ନହୋଇ ପଡ଼ିଥିଲା ତାହା ଆଉ ନାହିଁ । ଅଧିକନ୍ତୁ ଜଣେ ବାବାଜୀ ଝୁଡ଼ି ପାଖରେ ବସି ପାଟି ଭିତରେ କିଛି ଚୋବାଉଛନ୍ତି । ତାଙ୍କ ଆଖି ତଥାପି ବନ୍ଦ ଥିଲା- ବୋଧେ ତୃପ୍ତିରେ । ଲୋକଟି ପ୍ରଥମେ ବୁଝି ପାରିଲାନି ଯେ ଜଣେ  ଋଷି କଅଣ ବିନା ଅନୁମତିରେ କେବେ କାହାର ଦ୍ରବ୍ୟ ନେଇପାରେ  ? ତାର ଯେତେ ସନ୍ଦେହ ହେଉଥିଲେ ମଧ୍ୟ ସେ କିନ୍ତୁ ଦେଖୁଥିଲା ଯେ ସେ କିଛି ଖାଉଚନ୍ତି । କଅଣ ଆଉ ସେ ଏଠି ଖାଉଥିବେ ?

ସେ ଶେଷରେ ମୁନିବରଙ୍କୁ ହାତଯୋଡ଼ି କହିଲା, ''ମହାପ୍ରଭୁ ! ଆପଣ କଅଣ ମୋ ଝୁଡ଼ିରେ ଥିବା ଏକମାତ୍ର ଅଧାପାଚିଲା ପିଜୁଳିଟିକୁ ନେଇଚନ୍ତି ?''

ଏକଥା ଶୁଣି ମୁନିବରଙ୍କ ଖାଇବା ବନ୍ଦ ହେଲା ସିନା କିନ୍ତୁ ସେ ଆଖି ଖୋଲିଲେ ନାହିଁ । ସେ ସେହି ଅବସ୍ଥାରେ ଭାବିଲେ ଏବେ ତାଙ୍କର କଅଣ କହିବା ଉଚିତ ? ସେ ବିନା ଅନୁମତିରେ ପିଜୁଳିଟି ନେଇ ଖାଇଛନ୍ତି । ସେ କ'ଣ କହିଦେବେ କି ସେ ଯାହା କରିଛନ୍ତି ତାହା ଭୁଲ୍ କରିଛନ୍ତି ? ସତ୍ୟ ପ୍ରକାଶ କରିଦେଲେ ସେ ରକ୍ଷା ପାଇଯିବେ ? ସେ ଅନୁଭବ କଲେ ତାଙ୍କ ଚାରିପାଖରେ ହୁଏତ କିଛି ଲୋକ ଜମିଗଲେଣି । ସେମାନଙ୍କ ଭିତରେ କିଛି ଲୋକ କଥାବାର୍ତ୍ତା ହେଉଥିଲେ ଯେ ବାବାଜୀ ଜଣକ କେବେ ହେଲେ ପିଜୁଳିଟିକୁ ନେଇ ନଥିବେ । ମୁନିବର ଭାବିଲେ ସେମାନଙ୍କର ଏ ଦୃଢ଼ ଭୁଲ ବିଶ୍ୱାସଟିକୁ ସେ ସତ୍ୟ ପ୍ରକାଶ

କରି ଭାଙ୍ଗି ଦେବେ କି ? କହିଦେବେ କି, ହଁ କ୍ଷୁଧାର ଜ୍ୱାଳା ସହ୍ୟ କରି ନପାରି...।'' ଝୁଡ଼ିର ମାଲିକ ଏଥର ପୁଣି ହାତ ଯୋଡ଼ି ଜଣାଣ କଲା । ''ମହାରାଜ ! ମୋ ପାଖରେ ଆହୁରି କିଛି ପିଜୁଳି ଅଛି । ହେଇ ନିଅନ୍ତୁ ।'' ମୁନିବର ଏଥର ଆଖି ଖୋଲିଲେ । ସେ ଦେଖିଲେ ତାଙ୍କ ଆଗରେ ଜୀର୍ଣ୍ଣଶୀର୍ଣ୍ଣ ବୃଦ୍ଧ ଛିଡ଼ା ହୋଇଛନ୍ତି । ସେ ହସୁଛନ୍ତି । ତାଙ୍କ ହାତରେ ଆଞ୍ଜୁଳାଏ ପିଜୁଳି ।

ସେ ବୃଦ୍ଧଙ୍କୁ ଦେଖି କିଛି ସମୟ ଅନେଇ ରହିଲେ ଏବଂ ତା'ପରେ ଭାବ ଗଦଗଦ ହୋଇ କହିଲେ ନା, ଆଉ ଲୋଡ଼ା ନାହିଁ । ମୁଁ ଯଥେଷ୍ଟ ପାଇଚି । ମୋର ସେତିକି ଦରକାର ଥିଲା ।'' ତାଙ୍କ ଆଖିରୁ ଦୁଇଧାର ଲୁହ ବହି ଆସିଲା ।

(ଆଇନା, ଶାରଦୀୟ ୨୦୦୪)

# ମାଟି ହାଣ୍ଡି

ଅନାଦି ଥଳିଟାକୁ ପୂରା ଅଜାଡ଼ି ଦେଲା । ସବୁ ଅଲଗା ଅଲଗା କରି ଦେଲା । ପରିବା ଭିତରେ ଥିଲା ଅଧକିଲେ ଆଳୁ, ଅଧକିଲେ ହେବ ପିଆଜ, କଖାରୁ, ବାଇଗଣ, ପୋଇ, ଜହ୍ନି, ଗୋଟାଏ କଞ୍ଚା ଅମୃତ ଭଣ୍ଡା । ବାସ୍ ଏତିକି । ଆଉ ଫଳ ଭିତରେ ଥିଲା ଚାରିଟା କଦଳୀ (ପାଚିଲା) ଯାହାର ଲମ୍ବ ଆଙ୍ଗୁଠିଠାରୁ ବେଶି ହେବ ନାହିଁ, ଗୋଟାଏ କଞ୍ଚା ପିଜୁଳି, ତିନିଟା ଖଜୁରୀକୋଳି, ପଣସ କୋଷା ଚାରୋଟି, ଗୋଟାଏ ଜରି କାଗଜରେ ବନ୍ଧା ହୋଇଚି । ସାବିତ୍ରୀର ମୁଣ୍ଡ କଅଣ ହେଇଗଲା ଯେ ସେ ଆଉ ତା ଭିତରେ କଅଣ କଅଣ ଅଛି ଦେଖିପାରି ନଥିଲା । ସେ ବେଗଟାକୁ ରାଗରେ ମାଟି ଉପରେ କଚାଡ଼ି ଦେଇ ଉଠି ପଡ଼ିଲା ଓ ଦୁମ୍ ଦୁମ୍ କରି ଘର ଭିତରକୁ ଚାଲିଗଲା ।

ଅନାଦିକୁ କିଛି ବୁଝିବାକୁ ବାକି ନଥିଲା । ସେ ଯେ ସାବିତ୍ରୀର ମନକଥା ବୁଝୁ ନଥିଲା ସେ କଥା ନୁହେଁ । ପିଣ୍ଡାଠାରୁ ଦଶଫୁଟ ଦୂରରେ ଥିବା ପଣସ ଗଛ ମୂଳରେ ଯେଉଁଠି ସକାଳଠାରୁ ସନ୍ଧ୍ୟା ଯାଏ ବୁଢ଼ୀ ଗାଇ ବନ୍ଧା ହୋଇଥାଏ ଏବଂ ସେ ଶୋଇ ଶୋଇ ଚୋବାଉଥାଏ କିଛି ଶୁଖିଲା ଘାସ ଓ କୁଟା, ସେଇ ଗଛ ମୂଳରେ ଧୋତିକୁ ଆଣ୍ଠୁ ଉପରକୁ ଟେକି ଅନାଦି ଗୋଡ଼ରୁ କାଦୁଅ ଛଡ଼େଇବାକୁ ପାଣି ଢାଳୁଥିଲା । ସେ ମଧ୍ୟ ଦୂରରୁ ସାବିତ୍ରୀକୁ ଲକ୍ଷ୍ୟ କରୁଥିଲା । ମିଞ୍ଜିମିଞ୍ଜି ଲଣ୍ଠନ ଆଲୁଅରେ ମଧ ତା ମୁହଁରେ ଯେ ଗୋଟାଏ ଭିନ୍ନ ରଙ୍ଗ ଫୁଟି ଉଠୁଥିଲା ଏକଥା ସେ ସ୍ପଷ୍ଟ ଦେଖିପାରୁ ନ ଥିଲା । ମୁହଁ ସଞ୍ଜର ରଙ୍ଗ ସହିତ ସାବିତ୍ରୀର ମୁହଁର ରଙ୍ଗ ମିଳୁ ନଥିଲା । ଗାଢ଼ କଳା ନେସି ହେଇଥିବା ହାଣ୍ଡି ଯେତେବେଳେ ଅନେକ ବେଳଯାଏ ଚୁଲିରେ ବସି ତାତିଯାଏ ତାର ଗୋଟାଏ ମିଶାମିଶି ରଙ୍ଗ ।

ଚିତ୍ରକରମାନେ ତାକୁ କି ରଙ୍ଗ କହୁଥିବେ କେଜାଣି ।

ଆବଶ୍ୟକ ନଥିଲେ ବି ଅନାଦି ଡାଡ଼ିଆରୁ ନୋଟାକୁ ନୋଟା ପାଣି ଆଣି ମିଛରେ ଗୋଡ଼ ଧୋଉଥିଲା ଏବଂ ଗୋଟାଏ ଅସନ୍ତୋଷ ମିଶା ଭୟରେ ସାବିତ୍ରୀର ଗତିବିଧି ଲକ୍ଷ୍ୟ କରୁଥିଲା ।

ତାକୁ ଜଣାପଡୁ ନଥିଲା ଯେ ତାଡ଼ିଆରୁ ପାଣି ସରି ଆସିଲାଣି ବୋଲି ନୋଟାଟା ବାରମ୍ବାର ଗଡ଼୍ ଗଡ଼୍ କରି ଗୋଟାଏ ବିରକ୍ତିକର ଶବ୍ଦ ସୃଷ୍ଟି କରୁଚି । ସାବିତ୍ରୀ ଯା ଭିତରେ ଘର ଭିତରୁ ଗୋଟାଏ କୁଲା ଓ ବେତ ପାଛିଆଟାଏ ଆଣି ପରିବା ଓ ଫଳକୁ ଉଠାଉଥିବାବେଳେ ଗଡ଼୍ ଗଡ଼୍ ଶବ୍ଦଟା ତା କାନରେ ବାଜିଥିଲା । ସେ ହାତର କାମ ବନ୍ଦ କରି ଅନାଦି ଆଡ଼କୁ ଟିକିଏ ଦେଖିଲା । କିନ୍ତୁ ଆଲୁଅରେ ଥାଇ ଅନ୍ଧାରକୁ ଦେଖିଲେ କିଛି ଦେଖାଯାଉ ନଥିଲେ ମଧ୍ୟ ସେ ବୁଝି ପାରୁଥିଲା ଯେ ଅନାଦି ଆଉ ଗୋଡ଼ ଧୋଉନାହିଁ ।

ସେ ପରିବା ପାଛିଆଟିକୁ ଧରି ଉଠିଗଲା । ଫଳ କେଇଟା କୁଲା ଉପରେ ସେମିତି ପଡ଼ି ରହିଲା । ଅନାଦି ଗୋଡ଼ହାତ ଗାମୁଛାରେ ପୋଛିବା ପାଇଁ ଚିନ୍ତା କରୁଥିଲା । କିନ୍ତୁ ଗାମୁଛାଟା ତାକୁ ମିଳୁ ନଥିଲା । ସେ ଜାଣେ ସାବିତ୍ରୀ ଏଇନେ ଭିତରେ ଭିତରେ କୁହୁଳୁଚି । କିଛି କରିପାରୁ ନାହିଁ । ଚୁଲିରେ ଘସି ପଡ଼ି ଭିତରେ କୁହୁଳୁଥିବା ପରି । ଘସି କୁହୁଳି ସାରି ଯେତେବେଳେ ଜଳେ ସେତେବେଳେ ସେଥିରୁ ନିଆଁ ବାହାରେ ନାହିଁ ସତ, କିନ୍ତୁ ତାର ଉତ୍ତାପ ଯେକୌଣସି ଜଳୁଥିବା ବସ୍ତୁଠାରୁ ବେଶି ।

ଆଠବର୍ଷର ବାହାଘର ଭିତରେ ଅନାଦିକୁ ଏକଥା ବୁଝିବାକୁ ବାକି ନାହିଁ ଯେ ସାବିତ୍ରୀ ଏମିତି ଖଣ୍ଡେ କୁହୁଳୁଥିବା ଘସି, ଯାହା ଚୁଲି ମୁଣ୍ଡରେ ପଡ଼ିଥିବାବେଳେ କିଛି ନୁହେଁ । କିନ୍ତୁ ଚୁଲିରେ ପଶିଲେ ଅଗ୍ନିପିଣ୍ଡ ହେଇଯାଏ । ସାବିତ୍ରୀ ଯାହାଯାହା ହାଟରୁ ଆଣିବାକୁ କହିଥିଲା ତାର ଚାରି ଭାଗରୁ ଭାଗେ ମଧ୍ୟ ଅନାଦି ଆଣି ନଥିଲା ।

"ସେ କେଇଟା ଫଳକୁ ନେଇ ମୁଁ କଅଣ କରିବି ?" ସାବିତ୍ରୀ ବେଶ୍ ଲମ୍ବା ଲମ୍ବା ପାଦ ପକେଇ ସେଆଡୁ ଆସିଲା ଓ ଗାମୁଛାଟାକୁ ଭାରା ଉପରେ ଅନାଦି ସାମ୍ନାରେ ରଖିଦେଇ ଚାଲିଗଲା ।

ଅନାଦି ଗାମୁଛାଟାକୁ ନେଇ ଗୋଡ଼ ପୋଛିଲା ।

''ଜଗା ବୋଉ, ସମା ଆଈ, ଚମ୍ପା ଭାଉଜ ହେରିକା ସମସ୍ତେ ମିଶି ବ୍ରତ ପାଳୁଚେ । ପୂଜାବେଳେ ସେମାନଙ୍କ କୁଲା ପାଖରେ ମୋ କୁଲା ତୁମେ ନେଇ ରଖିବ । ମୁଁ ପାରିବିନି ।'' ସାବିତ୍ରୀ ଏଥର ଲ୍ୟାମ୍ପଟାକୁ ନେଇ ଯାଉଥିଲାବେଳେ ପବନରେ ସେଇଟା ଲିଭିଗଲା । ସେ ଆଉ କିଛି କହିବାକୁ ଚାହୁଁଥିଲା ବୋଧେ ସେ ସେଇଠି ଅଟକି ଗଲା । ଅନାଦି କିଛି ଦୂରରେ ଥିବା ଲଣ୍ଠନକୁ ଦେଖିଲା । ସେଇଟା ବି ଦପ୍ ଦପ୍ କରୁଚି ମଝିରେ ମଝିରେ । କେତେ ସମୟ ଆଉ ଜଳି ପାରିବ କେଜାଣି । ତାର ମନେ ପଡ଼ିଲା । ଆଜି ସାହୁକାର କଣ୍ଟ୍ରୋଲ ତେଲ ଦେବ କହିଥିଲା । ସେ ତ କେତେଥର ଦେବ ଦେବ କହି ଫେରେଇଚି । ଅନିଚ୍ଛା ସତ୍ତ୍ୱେ ସେ ପୁଣି ଉଠିଲା ଓ ରୋଷେଇ ଘର କାନ୍ଥରେ ଝୁଲୁଥିବା ବୋତଲଟିକୁ ଆଣି ସାର୍ଟ ପକେଟରୁ ହାଟରୁ ଫେରିଥିବା ଦଶ ଟଙ୍କିଆ ନୋଟଟିକୁ ଅନ୍ଧାର ହେଲେ ମଧ୍ୟ ଅଭ୍ୟସ୍ତ ହାତ ପୂରାଇ ବାହାର କରିଆଣି ପିଣ୍ଡା ତଳକୁ ଓହ୍ଲାଇଲା । ସେ ତାକୁ ଶୁଣେଇ ଶୁଣେଇ କହିଲା । ବୁଢ଼ୀ ମଥା ଉପରେ ଚାଳରେ ଅଛି ଛଣକାଠି । ସେଥିରୁ ଦି'ଟା ଆଣି ଜଳେଇ ନେଇ ଯାଅ । ଅନ୍ଧାରରେ ସେ

ଗୋହିରିରେ ଯାଅନା । ସେତିକି କହିଦେଇ ପୁଣି ଲ୍ୟାମ୍ପଟାକୁ ନେଇ ରୋଷେଇ ଘର ଆଡ଼କୁ ଚାଲିଗଲା ।

ଅନାଦି ବୁଢ଼ୀ ଗାଈ ପାଖକୁ ଛଣ କାଠି ଆଣିବାକୁ ଗଲାବେଳକୁ ଦେଖିଲା ବୁଢ଼ୀ ଶିଙ୍ଗ ଦୁଇଟାକୁ ସିଧା ଉପରକୁ କରି ତାକୁ ଅନେଇଚି । ଅନାଦି ଆଶ୍ଚର୍ଯ୍ୟ ହେଲା, ଏମିତି ହୁଏ ନାହିଁ । ଗୁହାଳକୁ ସଞ୍ଜବେଳେ ବୁଢ଼ୀ ଗାଈ ଆସିଲା ମାତ୍ରେ ଶୋଇପଡ଼େ ଓ ପାକୁଳି କରୁଥାଏ । ପ୍ରତିଦିନ ରାତିରେ ଶୋଇବା ପୂର୍ବରୁ ଥରେ ତା ପାଖକୁ ଆସେ । ତା ବେକକୁ ଆଉଁସି ଦିଏ, ବେଳେବେଳେ ଅଧା ଭାଙ୍ଗିଥିବା ଶିଙ୍ଗରେ ଘୋରିଷ ତେଲ ରସୁଣ ଗରମ କରି ମାଲିସ କରେ ଏବଂ ଆଉମାନଙ୍କ ମୁହଁରେ କୁଟା କି ଘାସ ପକେଇ ନିଜେ ଶୋଇବାକୁ ଯାଏ । ଆଉମାନଙ୍କ ଭିତରେ ଥାଆନ୍ତି ଗୋଟିଏ ଛୁଆ ଓ ଆଉ ଗୋଟିଏ ଦୁଇବର୍ଷର ଦାମୁଡ଼ିଆ ଏବଂ ଗତବର୍ଷ କିଣିଥିବା ଗୋଟିଏ ବଳଦ ।

ଅନାଦି ଭାଗରେ ଚାଷ କରେ। ନିଜର ଜମି ନାହିଁ । ତେଣୁ ଗୋଟିଏ ଲଙ୍ଗଳ ଓ ଗୋଟିଏ ବଳଦରେ ସେ ଦାମ ସେଠୀ ସାଙ୍ଗରେ ମିଶି ହଳ କରେ ।

ସେ ବୁଢ଼ୀକୁ ଆଉ ଥରେ ଗେଲ କଲା ଓ ଛଣକାଠି ନେଇ ଚାଲିଗଲା । ବୁଢ଼ୀଟାକୁ ବିକିଦେବାକୁ ସାବିତ୍ରୀ କେତେଥର କହିଲାଣି । କହିଲାଣି, ରମଜାନ ମିଆଁ ତିନିଥର ଆସିଲାଣି । ଏଥର ଆଉ ଶହେ ବଢ଼େଇ ଚାରିଶହ ଦେବ କହିଲାଣି । କହିଲା, ଏ ମାସ ତାଙ୍କର କି ପର୍ବ ପଡୁଛି, ଯଦି ଦବ ଦେଇଦିଅ । ପରେ ପେର ଦାମ୍ କମିଯିବ । ତଥାପି ଏ ବେଉସାରେ କୁଆଡ଼େ ଆଉ ଲାଭ ହେଉନାହିଁ । ଆଜିକାଲି ଦଳେ ଲମ୍ବା କଲିବାଲା ମେଞ୍ଚଡ଼ ଟୋକା ବାହାରିଚନ୍ତି ଯେ ସେମାନେ ଚାଲାଣ କରିବାକୁ ଦଉ ନାହାନ୍ତି । ରମଜାନ କୁହେ ଏ ନାଲିକଲିବାଲା ପୁଲିସ ସାଙ୍ଗରେ ମିଶି ଟ୍ରକ ଅଟକେଇବେ ତା'ପରେ ହଜାରେ ଦି ହଜାର ନେଇ ଛାଡ଼ି ଦେବେ । ଏଥିରେ ଆଉ କି ବିଜିନେସ୍ ହେବ କୁହ ? ସେ କୁଆଡ଼େ ଆଜି ବି ବସିବସି ଯାଇଚି । ଶହେ ଟଙ୍କା ବଇଣା ଯାଚୁଥିଲା । ସାବିତ୍ରୀ ତାକୁ ରଖି ନାହିଁ । ଅନାଦି ବି ରାଜି ହେଇ ନାହିଁ ।

ଅନାଦି ଗୋହିରି ଭିତରେ ଚାଲୁ ଚାଲୁ ଭାବୁଥିଲା । ଘରର ପଛପଟ ଚାଳ ଏକଦମ ଜଳକା ହେଇ ଗଲାଣି । ଦୁଇବର୍ଷ ହେଲା ଛୁଆଁଣି ହେଇ ନାହିଁ । ଆର ବର୍ଷା ବେଳକୁ କାନୁ ଉପରେ ପାଣି ପଡ଼ିବ । ସାବିତ୍ରୀର କହିବାର କଥା ବୁଢ଼ୀକୁ ବିଦାକର, ଦାମୁଡ଼ିଆକୁ ବି ବିଦାକର । ସେଇ ପଇସାରେ ଛୁଆଁଣିଟା କରିଦିଅ । ଏ ଦି'ଟାକୁ ପୋଷି ଲାଭ କଅଣ ? ମୁଁ କୋଉଠୁ ଏତେ ଘାସ ଆଣିବି ?

ଅନାଦି ଯେ ସାବିତ୍ରୀର ଦୁଃଖ ବୁଝୁ ନାହିଁ ସେକଥା ନୁହେଁ । କିନ୍ତୁ ରମଜାନ ମିଆଁ କଥାରେ ବି ରାଜି ହେବା ସମ୍ଭବ ନୁହେଁ । ବୁଢ଼ୀ ଗାଈ ତା ମାଆ ସମୟରୁ ଅଛି । ଅନାଦିର ମାଆ ତାର ସେବା କରୁଥିଲା । ଗାଈ ଦୁଧ ବି ସେମିତି ଦେଉଥିଲା । କଥାରେ ଅଛି''ମାଆ ନଥିଲେ ଗାଈ ଅଛି ।'' ସେ ଗାଈର ଉପକାର କେହି ଶୁଝିପାରିବ ନାହିଁ । ଅନାଦିର ମାଆ

ଗଲାବେଳେ ସେ ଗାଈ ପେଟ ତଳେ ହିଁ ମରିଥିଲା । ତା ପେଟ ଆଉଁସୁ ଆଉଁସୁ ସେଇଠି ଟଳି ପଡ଼ିଲା ।''

ସେ ଗାଈକୁ ଚମଡ଼ାନ ନିଆଁକୁ ଦେଇ ହେବ ନାହିଁ । ମାଆର ଶ୍ରାଦ୍ଧ ଦିନ ଅନାଦି ସ୍ୱପ୍ନ ଦେଖିଥିଲା । ମାଆ ତାକୁ କହୁଚି, ''ତୁ ବୁଢ଼ୀର ଯତ୍ନ ନେଉ ନାହୁଁ କିରେ ? ମୁଁ ପରା ତା'ରି ଭିତରେ ଅଛି । ତୁ ଏଠି ସେଠି କାହିଁକି ଖୋଜୁଛୁ ?''

ତେବେ ଘର ଚାଳ କଅଣ ହେବ ? ତାର ଛୁଆଁଣି କେମିତି ହେବ ? ଦୁଧ ବିକ୍ରିରୁ କେତେ ପଇସା ହେଉଚି ଯେ ? ଭଗବାନ ମଣିଷଙ୍କୁ ସବୁ ଦେଲେ । ଏ ପେଟଟାକୁ ନ ଦେଇଥିଲେ ହେଇ ନଥାଆନ୍ତା ? ସବୁ ତ ସେଇଥିରେ ଚାଲି ଯାଉଚି ।

''ହଁ, ଦେ, ବଢ଼ା ।'' ସାହୁକାର କହିଲା ଅନାଦିକୁ, "ତୋ ପାଇଁ ମୁଁ ରାତିଯାକ ଦୋକାନ ଖୋଲି ବସିବି ?" ଅନାଦି ଯେ ଯା ଭିତରେ ସାହୁକାର ଘରେ ପହଞ୍ଚି ଗଲାଣି ସେ କଥା ତାର ମନେ ନାହିଁ ।

ଆଜି ପାଏ ନେଇ ଯାଆ । ଆର ପାଳିକୁ ଆସି ଆଉ ପାଏ ନେଇଯିବୁ ।'' ସାହୁକାର କହିଲା ବୋତଲଟାକୁ ଅନାଦିକୁ ଦେଉ ଦେଉ ।

''କହୁଥିଲ ପରା ଏଥର ଗଲା ବର୍ଷର ପୂଜାବେଳୁ ବାକି ଥିବା ଅଧିକ ଏକ ଲିଟର ତେଲ ବି ଦେବ ?''

"ମୁଁ କହିଲେ କଅଣ ହେବ ଅନାଦି ? ସରକାର କହିଥିଲେ, ସେ କଥା ରଖିଲେ ନାହିଁ । ମୁଁ ଏବେ କଅଣ କରିବି ? ସରକାରୀ କଥାକୁ କାହାର ହାତ ଅଛି ? ଗଲା ବର୍ଷର ପୂଜା କୋଟା ଏବର୍ଷ ପୂଜାକୁ ମିଳିପାରେ ।" ସାହୁକାର କହିଲେ ।

"ବି.ପି.ଏଲ୍. ଚାଉଳ ଆସିଲା କି ?" ଅନାଦି ଟିକେ ପାଖକୁ ଯାଇ କହିଲା ।

''କି ଚାଉଳ ?'' ସେ ଏମିତି ଭାବରେ ପ୍ରଶ୍ନ ପଚାରିଲେ ଯେ ଅନାଦିର ଆଉ ସାହସ ହେଲା ନାହିଁ ତାକୁ ଦୋହରାଇବାକୁ । ସାହୁକାର ଲାଇଟ ଲିଭାଇଦେଲେ ଓ ଧଡ଼କରି କବାଟ ବନ୍ଦ କଲେ । ଅନାଦି ଘରକୁ ଫେରି ଦେଖିଲା, ସାବିତ୍ରୀ ପିଣ୍ଡା ଉପରେ କାନ୍ଥକୁ ଆଉଚି ବସିଚି । ତା ସାମ୍ନାରେ ପଣସ ଅଠାରେ ବତୀଟା ଜଳୁଚି । ଲ୍ୟାମ୍ପ ଓ ଲଣ୍ଠନ ଲିଭିଗଲା ପରେ ବୋଧେ ସାବିତ୍ରୀ ସେଇଟାକୁ କୋଉଠୁ ବାହାର କରିଚି । ନେ, ଏଇ ଏତକ ଦେଲା । ଲ୍ୟାମ୍ପଟାରେ ଭରି ଦେ । ଲଣ୍ଠନଟା ଥାଉ । ବୋତଲଟା ସାବିତ୍ରୀ ହାତକୁ ବଢ଼ାଇ ଦେଲା ।

ସାବିତ୍ରୀ କଥାବାର୍ତ୍ତା କରୁନାହିଁ । ସେ ବୋତଲଟା ନେଇ ଉଠିଗଲା ।

ମିଞ୍ଜିମିଞ୍ଜି ଲ୍ୟାମ୍ପ ଆଲୁଅରେ ଅନାଦି ରୁଟି ଖଣ୍ଡକୁ ଛିଣ୍ଡାଉଥିବାବେଳେ ସାବିତ୍ରୀ ଖଣ୍ଡେ ଛିଟ ଶାଢ଼ୀ ଆଣି ତା ଆଗରେ ରଖିଲା । "ନରିଆ, ଆଣି ଦେଇଗଲା । ତିରିଶ ଟଙ୍କା, ଧାର ଅଛି । ମୁଁ ତାକୁ କହିଚି, ମାସେ ପରେ ଦେବି । ସେ ଧୀରେ ଧୀରେ ଦେଇ ଦେବ କହିଛି ।" କହିଲା ସାବିତ୍ରୀ ।

ଅନାଦିର ହାତ ଅଟକି ଗଲା । ତିରିଶ ଟଙ୍କା, ପୁଣି ଧାରରେ ? ନରିଆ ଭଲ ଲୋକ ନୁହେଁ । ପନ୍ଦର ଦିନ ଯାଇ ନଥିବ ବାଟରେ ଘାଟରେ ମାଗି ଦେବ । ଦ୍ୱିତୀୟ ଥର ବେଳକୁ ପଦେ କହିବ । ଯାହା କହିବ ସେଥିରେ ତୁମକୁ ବାଟ ଦୁଶିବନି ପଳେଇବାକୁ । କିନ୍ତୁ ଅନାଦି ପଳାଏ ନାହିଁ । ସେ ରାଗୁ ନଥିଲେ ବି ଟିକେ ହସି ଦିଏ । ନ ହସି ଆଉ କଅଣ କରିଥାନ୍ତା ? ତାକୁ କଅଣ ରାଗି ହେବ କି ?

''ନରିଆଠୁ କାହିଁକି ଆଣିଲୁ କହିଲୁ ?''

''ମୁଁ କଅଣ ଆଣିଚି କି ? ଯୋଉମାନେ ମୋ ସହିତ ସାବିତ୍ରୀ ବ୍ରତ ପାଳୁଚନ୍ତି ସେ ସମସ୍ତେ ନରିଆଠୁ ନଉଛନ୍ତି । କହୁଛନ୍ତି ନରିଆ ଯୋଉ ଶାଢ଼ୀ ଦେଇଚି ସେଥିରେ ଯୋଉ ଘଟ ଛାପ ବସିଚି ସେଇଟା ଶୁଭ, ସେଇ ଶାଢ଼ୀ କେବଳ ଲାଗିବ । ସେ ଟିକିଏ ରହିଗଲା ଓ କହିଲା ତାର ପ୍ରକୃତ ଦାମ କୁଆଡ଼େ ଚାଳିଶ ଟଙ୍କା । ଯାହାର ଗୋଦାମ କଟକରେ ଅଛି । ସିଏ ଦଉଚି ଶସ୍ତାରେ । ତୁମେ ନରିଆକୁ ପଚାରୁନ ? ଆମେ ସମସ୍ତେ ସେଇ ନରିଆଠୁ ନେଇଛୁଁ ।''

''ମୁଁ ବୁଝିଲି ଯେ, କିନ୍ତୁ ସେ ଲୋକଟା ଭଲ ନୁହେଁ । ଏକ ନମ୍ବର ବଦମାସ । ଆମ ଅଞ୍ଚଳରେ ତାକୁ କିଏ ନଜାଣେ ? ସମସ୍ତେ ବେଳେବେଳେ ମିଛ କହନ୍ତି । ନରିଆ ବେଳେବେଳେ ସତ କହେ ।''

''ଧେତ୍, ବିଜିନେସ୍ କରୁଚି । ମିଛ କୁହନ୍ତା ନାହିଁ ? ଆମକୁ ସେଥିରୁ କଅଣ ମିଳିବ ? ଆମର କାମ ହେଲେ ହେଲା ।''

ଅନାଦି ବୁଝିପାରୁ ନଥିଲା ସେ ତିରିଶ ଟଙ୍କା କୋଉଠୁ ଆଣିବ । ସେ ସାବିତ୍ରୀକୁ ଜାଣେ । ପୂଜା ବ୍ରତ କରି ମରିବ ପଛେ ପୂଜାକୁ ଛାଡ଼ିବ ନାହିଁ । ବର୍ଷକଯାକ ରୋଗ । ତଥାପି ଉପବାସ ଛାଡୁଚି କି ?

ହଠାତ୍ ପିଣ୍ଡା ତଳେ ଆସି ଠିଆ ହେଲେ ସତ୍ୟଭାମା । ଡାକିଲେ, ''ଆଲୋ ସାବିତ୍ରୀ, ଶାଢ଼ି ପାଇଲୁ ନା ?''

ସତ୍ୟଭାମା ସରପଞ୍ଚଙ୍କ ସ୍ତ୍ରୀ । ପୁଣି ଗାଁ ପ୍ରାଇମେରୀ ସ୍କୁଲରେ ମାଷ୍ଟରାଣୀ ଅଛନ୍ତି । ଅନାଦି ଜାଣେ, ସେ ବହୁତ ପାଠ ପଢ଼ିଛନ୍ତି । ସଭା ସମିତିରେ ଭାଷଣ ମଧ୍ୟ ଦିଅନ୍ତି । ସାବିତ୍ରୀକୁ ସେ ଭଲ ପାଆନ୍ତି । ବେଳ ଅବେଳରେ ଡକେଇ ପଠାନ୍ତି । ଘର କାମ ବଳି ପଡ଼ିଲେ ।

''ଶାଢ଼ି ପାଇଚି ମାଉସୀ । ହେଇ ଦେଖ ତିରିଶ ଟଙ୍କା କହିବାରୁ ଇଏ ବିରକ୍ତ ହେଉଚନ୍ତି'' ସାବିତ୍ରୀ ଆସି କହିଲା ।

''ନା ନା ମୁଁ ବିରକ୍ତ ହେଉ ନାହିଁ । ମୁଁ କହୁଚି ଏଇନେ ତିରିଶ ଟଙ୍କା ମୁଁ କୋଉଠୁ ଆଣିବି ?'' ଅନାଦି ମାଉସୀଙ୍କଆଡ଼କୁ ଆସନ ଖଣ୍ଡେ ପକେଇ ଦେଇ କହିଲା । "ଆରେ ଟଙ୍କା ପାଇଁ ଚିନ୍ତା କରନା । ମୁଁ ତାକୁ କହିଦେବି, ରହି ରହି ନେବ । ଅସଲ କଥାଟା ହେଲା ବ୍ରତଟା

ତ ଆଉ ଆମ ସୁବିଧା ଅସୁବିଧାକୁ ଅପେକ୍ଷା କରିବନି । ତା ସମୟରେ ସେ ଆସିବ । ତୁମ ପେଡ଼ିରେ ପଇସା ଥାଉ କି ନଥାଉ । ତୁମେ ଯଦି ତାକୁ ଧରି ନପାର, କ୍ଷତି ତୁମର ।" ମାଉସୀ କହିଲେ ।

ଅନାଦି କହିଲା, "ମାଉସୀ କାହିଁ ସାରା ଜୀବନରେ ଥରେ ବୋଲି ତ ମୁଁ ଲାଭ ପାଇଲିନି । ଖାଲି କ୍ଷତି ହିଁ କ୍ଷତି । କେତେ ପଇସା ଯେ ଗଲାଣି ତାର ସୀମା ଅଛି ?"

ଆରେ ନା, ଏସବୁ କଥାରେ ସେମିତି କୁହନ୍ତିନି । ଆମ କାମ ଆମେ କରୁଥିବା । ସେ ତାଙ୍କ କାମ କରିବେନି ? ତୁ ବ୍ୟସ୍ତ ହଅନା । ହେଇ ମୁଁ ଆଣିଥିଲି ଆଉ ତିନିଟା ଫଳ, ଏକୋଇଶଟା ଫଳ ଦରକାର । ଏତିକିବେଳେ ବି ବଜାର ଦାମ ଟିକିଏ ବଢ଼େ । କଅଣ କରିବା କହିଲୁ ? କୋଉ ଯୁଗରେ ଶୁଣିଥିଲୁ ଗୋଟାଏ କଞ୍ଚା ଖଗୁରୀ କୋଳି ଦାମ ଏକ ଟଙ୍କା ? ପଚା ପଣସ କୋଷା କେବେ ବିକ୍ରି ହୁଏ ?"

"ସେଇଟା ଠାକୁରଙ୍କ ପାଇଁ ବିକ୍ରି ହୁଏ ?" କହିଲା ଅନାଦି ।

"ଚୋପ୍, ମାଡ଼ୁଆ କୋଉଠିକାର ।" ମାଉସୀ ହାତ ଉଠେଇଲେ ହସିହସି । "ଦେଖିଲ ମାଉସୀ, ସବୁବେଳେ ଏମିତି । ପୂଜା କଥା କହିଲେ ଏମିତି କହନ୍ତି ।" ସାବିତ୍ରୀ କହିଲା ଓ ମାଉସୀଙ୍କୁ ସମର୍ଥନ ଆଶାରେ ଅନେଇଲା ।

"ମୁଁ ମୋଟେ ମନାକରୁନି ମାଉସୀ । ମୋର କହିବାର କଥା, ପୂଜା ପାର୍ବଣ ସବୁ ଥିଲାବାଲାଙ୍କର । ତାଙ୍କୁ ସେସବୁ ସାଜେ । ଆମର ତ ହାତ ପାପୁଲିକୁ ଦେଖିଲା ବେଳକୁ ଗଡ଼ି ଗଲାଣି ତଳକୁ । ଏତେ ଖର୍ଚ୍ଚ ପାଇଁ ଠେକିରେ ତେଲ ଥିଲେ ତ ?"

ମାଉସୀ ଉଠିଲେ । କହିଲେ, "ତୁ ଚିନ୍ତା କରନା । ପୋଥି ପୁରାଣକୁ ଶୁଣିନୁ କି ? ତାଙ୍କର ଦୟା ହେଲେ ଛାତ କଣାହେଇ ତଳକୁ ଗଳି ପଡ଼େ ।"

"ମୋ ଛାତ କେବେଠୁ କଣା ଅଛି ମାଉସୀ । କିନ୍ତୁ କାହିଁ ?" ଦୁହେଁ ହୋ ହୋ ହସି ଉଠିଲେ ।

ଦୁହେଁ ବିଛଣାରେ ଶୋଇଥିଲାବେଳେ ଚାଳରୁ ମେଞ୍ଚା ମେଞ୍ଚା ଅନ୍ଧାର ତଳକୁ ଖସି ପଡୁଥିଲା, ବରଗଛର ଓହଳ ଧରି ମାଙ୍କଡ଼ମାନେ ତଳକୁ ଓହ୍ଲାଉଥିବା ପରି । ସକାଳ ଆସିଗଲେ କିଚିରି ମିଚିରି କରି ବାଦୁଡ଼ିମାନେ ଗଛ ଡାଳରେ ଧୀର ସ୍ଥିର ହୋଇ ଓହଳି ପଡ଼ିଲା ପରି ।

ଘରଟା ଏକଦମ ଶୂନ୍‌ଶାନ୍ । ରହିରହି ଚେମେଣିମାନେ ଫଡ଼ଫାଡ଼ କରୁଥାଆନ୍ତି ଏବଂ ବେଳେବେଳେ ଝିଟିପିଟିମାନେ କାନ୍ଥ ସନ୍ଧିରେ ଟିକଟିକ୍ କରି ନୀରବତାକୁ ହଇରାଣ କରୁଥାନ୍ତି ।

ସାବିତ୍ରୀ ମୁହଁ ଖୋଲିଲା । "ମୁଁ କାହା ପାଇଁ ଏ ବ୍ରତ କରୁଚି ? କାହା ପାଇଁ ଏତେ କଷଣ ସହୁଚି ? ମୋ ସୁଖ ପାଇଁ ? ସଫା ମନରେ ତୁମେ ଆଣିଦେଲେ ଠାକୁରେ ଯେତିକି ସନ୍ତୁଷ୍ଟ ହେବେ, ମୋତେ ସେତିକି ଆନନ୍ଦ ମିଳିବ ।"

"ମୁଁ ତ ତୋ ପାଇଁ କିଛି କରିପାରୁ ନାହିଁ । ତୁ କାହିଁକି ମୋ ପାଇଁ ଏତେ କରୁଛୁ ? ମୁଁ

କହୁଚି ଆମେ ଯେତିକି, ସେତିକିରେ ରହିବା । ତା'ଠୁ ବେଶି କଅଣ ହେବ ଆମର ? ତୁ ତୋ ଠାକୁରଙ୍କୁ ସେତିକି ମାଗ୍ ।"

"ମୁଁ ତ କେତେଥର କହିଲିଣି ବୁଢ଼ୀ ଗାଈକୁ ବିକି ଦିଅ ।"

"ତା'ପରେ ? ଦାମୁଡ଼ିଆ କହିବୁ ତ ? ତା'ପରେ ? ଆମ ଅଭାବର ଅନ୍ତ ନାହିଁ । ଗୋଟିଏ ଗାଈ କି ଗୋଟିଏ ଦାମୁଡ଼ିଆରେ ତାହା ପୂରିବ ନାହିଁ । ଲକ୍ଷେ ଠାକୁର ପୂଜା କି ତିନିଶ ପଅଁଷଠି ବ୍ରତ ଉପାସରେ ମଧ୍ୟ ମିଳିବ ନାହିଁ । ମୁଁ ସେଇ ସେତକ ତୋତେ କେମିତି ବୁଝେଇବି କହ ?" କହିଲା ଅନାଦି ।

ସାବିତ୍ରୀ ବୋଧେ ସେତେବେଳକୁ କାନ୍ଦୁଥିଲା । ଅନାଦିର ସେତେବେଳେ ତା ମାଆ କଥା ମନେ ପଡୁଥିଲା । ସେ ବି ତ ଏମିତି ମୋ ବାବାଙ୍କୁ ଜିଗର କରୁଥିଲା । ସାତ ଦିନରେ ଛଅଦିନ ତାର ଉପାସରେ କଟୁଥିଲା । କିନ୍ତୁ କାହିଁ, ତାର କିଛି ବି ଉନ୍ନତି ହେଇ ନଥିଲା । ବରଂ ବାପ ତାର ପୈତୃକ ସମ୍ପତ୍ତି ପରି ପୁଅ ଅନାଦିକୁ ସେଇ ଦୁଃଖ ଦେଇଗଲା । ଗରିବିଟା ଗୋଟିଏ ଜନ୍ମରେ ସରେ ନାହିଁ । ଠିକ୍ ଏଇଠି ଅନାଦି ଭାବେ ତାର ଭାଗ୍ୟ ଭଲ ଯେ ତା'ପରେ ସେ ସମ୍ପତ୍ତିକୁ ନେବାକୁ କେହି ନାହିଁ । ଆମେ ଏଥିପାଇଁ ଠାକୁରଙ୍କୁ ଧନ୍ୟବାଦ ଦେବା କଥା ।

ତେବେ ସାବିତ୍ରୀ କଅଣ ପାଇଁ ଆଉ ପୂଜା କରୁଚି ?

ପର ଜନ୍ମରେ ଏଇ ସମ୍ପତ୍ତିକୁ ଅଧିକାର ସୂତ୍ରରେ ପାଇବା ପାଇଁ ?

ବୋକା ନୁହେଁ ? ନା, ଆଉ ଆମର ଦରକାର ନାହିଁ, ଭାବୁଥିଲା ଅନାଦି ।

ତା' ଆଡ଼କୁ ପିଠିକରି ଶୋଇଥିବା ସାବିତ୍ରୀ ଦେହରେ ସେ ହାତ ମାରିଲା ଓ ନିଜେ ତା ଆଡ଼କୁ ଟିକିଏ ଘୁଞ୍ଚିଗଲା ।

ସକାଳୁ ଉଠି ସାବିତ୍ରୀ ଯେତେବେଳେ ଦେଖିଲା ଭାତ ହେଉଥିବା ହାଣ୍ଡିରେ ଗୋଟିଏ ଫାଟ ଦେଖାଯାଉଚି ସେ ଆଶ୍ଚର୍ଯ୍ୟ ହେଲା । ଏମିତି କେମିତି ହେଲା ? ଏଇତ ତିନି ଚାରି ମାସ ହେଲା ସେ ହାଣ୍ଡିକୁ ଆଣିଥିଲା । ଅନେକଗୁଡ଼ିଏ ହାଣ୍ଡିକୁ ଅଧଘଣ୍ଟାଏ କାଳ ଦେଖି ବଜେଇ ପାଣି ଢାଳି ତା'ପରେ ସେ ଏଇଟାକୁ ନେଇଥିଲା । ଗୋଟାଏ ହାଣ୍ଡି ତ କମ୍‌ସେ କମ୍ ବର୍ଷେ ଯିବା କଥା । ତା ଶାଶୁ ମଲା ବେଳକୁ ସେ ହାଣ୍ଡି ବଦଳ କରିଥିଲା । ତା'ପରେ ପଡ଼ିଶା ଘରେ ଛୁଆ ହେବାରୁ ଆଉ ଥରେ ବଦଳ କରିଥିଲା । ଈଶାଣରେ ଭଲ ଓ ପବିତ୍ର ହାଣ୍ଡିଟିଏ ରହିବା ଦରକାର । ସାବିତ୍ରୀ ଆଜିଯାଏ କେବେବି ଅଗାଧୁଆ ହାଣ୍ଡିଶାଳରେ ପଶି ନାହିଁ । ତେବେ ହାଣ୍ଡି ଫାଟିଲା କାହିଁକି ? ସେ କଅଣ ତା ଅଜାଣତରେ ଆଉ କିଛି ଅନୀତି କରି ପକେଇଲା ?

ହାଣ୍ଡିଟାକୁ ନେଇ ସେ ବାହାରକୁ ଆସିଲା ଓ ସୂର୍ଯ୍ୟଙ୍କ ଆଡ଼କୁ ଟେକି ତା ଭିତରେ ମୁହଁ ଭର୍ତ୍ତି କରି ଦେଖିଲା । ବେକଠାରୁ ଟିକିଏ ତଳକୁ ମେଘୁଆ ଆକାଶରେ ବିଜୁଳିର ଚମକ ପରି ଲାଲ ରେଖାଟିଏ ଦେଖାଗଲା । ସେ ଏବେ କଅଣ କରିବ ? ସମସ୍ତେ ଅବଶ୍ୟ ଦୁଇ ଚାରିଟା ଅଧିକ ରଖି ଥାଆନ୍ତି । କୁମ୍ଭାର ବି ଭାତ ହାଣ୍ଡି ସବୁବେଳେ ତିଆରି କରେ ନାହିଁ । ଖାଲି ମାଟି

ନୁହେଁ ରାଶି ନକ୍ଷତ୍ର ଦେଖି ସେମାନେ ତିଆରି କରନ୍ତି ।

ଭାତ ହାଣ୍ଡି ଧାର ଦେଲେ ଲକ୍ଷ୍ମୀ ଚାଲି ଯାଆନ୍ତି । ସାବିତ୍ରୀର ଦୁଇଟା ଭାତ ହାଣ୍ଡି କେବେବି ନ ଥାଏ । ତା ଭାଗ୍ୟରେ ସବୁବେଳେ ଗୋଟାଏ ।

ସେ ହାଣ୍ଡିଟାକୁ ନେଇ ଗଡ଼ିଆ ପାଖକୁ ଗଲା । ଆଣ୍ଠୁଏ ପାଣିରେ ପଶି ସେ ତଳୁ ପଙ୍କ ଆଣିଲା । ସେଥିରେ ପଟୁ ମାଟି ମିଶେଇ ତାକୁ ହାଣ୍ଡିରେ ଲିପିଲା । ଫଟା ହାଣ୍ଡି ଉପରେ ଗୋଟେ ମରାମତି ପାଇଁ ପ୍ରଲେପ ଦେଲା । କିନ୍ତୁ କେତେ ଦିନ ? ଫଟା ହାଣ୍ଡି ଉପରେ ଭରସା ରଖି ହେବ ?

''କଅଣ ହେଲା ହାଣ୍ଡିଟା ଭାଙ୍ଗିଗଲା ?'' ପଛପଟେ ପଣସ ଗଛ ମୂଳରେ ଅନାଦି ଠିଆ ହୋଇ ପଚାରିଲା ।

''କେମିତି ଭାଙ୍ଗିଲା କେଜାଣି ?'' ସାବିତ୍ରୀ କହିଲା, ''ଆରେ, ମାଟି ହାଣ୍ଡିଟା ଭାଙ୍ଗନ୍ତା ନାହିଁ କି ?''

"ଆଉ ହାଣ୍ଡି ନାହିଁ ?"

''ଆଉ ଥିଲେ କଅଣ ମୁଁ ପାଣିରେ ଠିଆ ହେଇ ଥାଆନ୍ତି ? ନା ଯା ଉପରେ ଢାବ ପକାଇ ଥାଆନ୍ତି । ତୁମେ ଯାଇ କୁମ୍ଭାର ସାହିରେ ଦେଖିଲ । ଯଦି କେହି ରଖିଥାଏ ।'' କହିଲା ସାବିତ୍ରୀ ।

''ଥିଲେ ବି ଆଜି ଗୁରୁବାର । କିଏ ଧାର ଦେବ କହିଲ ? ଆସନ୍ତା କାଲି ଶୁକ୍ରବାର । ଭୋରରୁ ସେମାନେ ହାଟକୁ ପଳେଇବେ ।''

''ଡାଟି ଖୋଲି କିଏ ଜଣେ ଆସିଲା ଦେଖିଲ ।'' ସାବିତ୍ରୀ କହିଲା ହାଣ୍ଡିଟାର ଫଟା ଅଂଶକୁ ସୂର୍ଯ୍ୟ ଆଡ଼କୁ ଦେଖେଇ । ଯେତେ ଶୀଘ୍ର ପଟୁଟା ଶୁଖିଯିବ ସେତେ ଭଲ । ସାବିତ୍ରୀ ଭାବୁଥିଲା ତାକୁ ଚୁଲିରେ ବସେଇ ଭଲ କରି ପୋଡ଼ି ଦେବ କି ଆଉ । ପୋଡ଼ି ଦେଲେ କିଛିଦିନ ଚାଲି ଯାଆନ୍ତା ।

ଦାଣ୍ଡପଟୁ ଅନାଦି ଫେରିଆସି କହିଲା, ''ଫେର୍ ସେଇ ରମଜାନ ମିଆଁ ଆସିଚି । କେମିତିକା ଲୋକଟା ମ ?''

''କିଏ ଆସିଚି ? ରମଜାନ ମିଆଁ ? ତାକୁ ପିଣ୍ଡା ଉପରେ ବସିବାକୁ କୁହ । ମୁଁ ଆସୁଚି ଏଇ ସାଙ୍ଗେ ସାଙ୍ଗ ।''

(ଝଂକାର, ମାର୍ଚ୍ଚ ୨୦୦୬)

# ମିଛ ରାତି : ଜହ୍ନରାତି

ନରସୁନ୍ଦରର ସେଦିନ ଥିଲା ଜୀବନର ଗୋଟିଏ ସ୍ମରଣୀୟ ଦିନ । ଏମିତି ଗୋଟାଏ ଦିନ ତା ଜୀବନରେ ଆସିବ ବୋଲି ସେ ମୋଟେ ଆଶାକରି ନଥିଲା । ଓଡ଼ିଶାର ଗୋଟାଏ ପ୍ରତିଷ୍ଠିତ ପତ୍ରିକା 'ବନ ଝରଣା'ରେ ତାର କବିତାଟିଏ ପ୍ରକାଶ ପାଇଥିବାର ଖବର ପାଇଲା ପରେ ସେ ଆନନ୍ଦରେ ଅବିଭୂତ ହେଇ ପଡ଼ିଲା । କିନ୍ତୁ କାହିଁ ସେ ପତ୍ରିକା ? ଏଠି ଏ ଗାଁରେ ସେ ପତ୍ରିକାଟି କେମିତି ପାଇବ ? ଚନ୍ଦ୍ରମୋହନ ହାଟ ବଜାରରୁ ଟେଲିଫୋନ କରି ତାକୁ କହିଲା, "ଲେଖକ ମହୋଦୟ ! ଅଭିନନ୍ଦନ ତୁମକୁ ଓ ତୁମ ପତ୍ନୀ ମହୋଦୟାଙ୍କୁ । ଏବେ ଜଲଦି ଭୋଜିର ବନ୍ଦୋବସ୍ତ କର । ନଚେତ୍ ମିଛରେ ଏତେ ବଡ଼ ଖବର ତୁମକୁ ଟେଲିଫୋନ୍‌ରେ କାହିଁକି ଦେବି ?"

ଧେତ୍ ଚନ୍ଦ୍ରମୋହନଟା ବରାବର ସେମିତି । ଏଡୁଟିଏ ହେଲାଣି । ଗୋଟାଏ ପୁଅର ବାପା, ତଥାପି ତାର ଡହରା ଗୁଣ ଗଲାନି । କହିଲା ପତ୍ରିକା ପାଇଲେ ପଠେଇବି ।

ନର ଅସ୍ଥିର ହୋଇଉଠିଲା । ତା ଜୀବନରେ ଏଇଟା ତାର ପ୍ରଥମ ପ୍ରକାଶିତ କବିତା । ଚନ୍ଦ୍ରମୋହନ କହିଲା 'ବନ ଝରଣା'ର ନାଁ ଅଛି । କିଏ ସେ ପତ୍ରିକାକୁ ନ ଜାଣେ ? ସେ ଯେତେବେଳେ ବାଲେଶ୍ୱରରେ ରହି ପଢୁଥିଲା ସେତେବେଳେ ତା ସହିତ ପାଠ ପଢୁଥିବା ଯୁକ୍ତ ତିନିର ପ୍ରଗଲ୍‌ଭା ବାଳିକା ସୋମା ତାକୁ ଥରେ ସେ ପତ୍ରିକା ଦେଖେଇଥିଲା । କହିଥିଲା, ''ତୁ ତ ଭଲ କବିତା ଲେଖୁଚୁ, ଏ ପତ୍ରିକାକୁ ଦେଉନୁ ?'' ସେଥିରେ ତାର ନିଜର କବିତା ପ୍ରକାଶ ପାଇଥିଲା ବୋଲି ସେ ପତ୍ରିକାଟିକୁ ସବୁ ଛାତ୍ରଛାତ୍ରୀଙ୍କୁ ଦେଖାଉଥିଲା । ମାସେ କାଳ ସେ ତା ବେଗରେ ପତ୍ରିକାଟିକୁ ରଖିଥିଲା ଏବଂ ସେଇଟା ଅନେକ ହାତକୁ ଯାଇ ଯାଇ ଏମିତି ଲୋଚାକୋଚା ହୋଇଯାଇଥିଲା ଯେ ତାର ପ୍ରଥମ ପୃଷ୍ଠା ତ କେବେଠୁଁ ଉଡ଼ି ଯାଇଥିଲା, ଦ୍ୱିତୀୟରେ ତାର କବିତା ଥିବା ପୃଷ୍ଠାଟିରେ ଦୁଇ ଜାଗାରେ ଇଞ୍ଚେ ଦେଢ଼ଇଞ୍ଚର ସେଲୋ ଟେପ୍ ମରା ଯାଇଥିଲା । ସେଇ ବନ ଝରଣାରେ ଆଜି ତା କବିତା ପ୍ରକାଶ ପାଇଚି । କିନ୍ତୁ କବିତା

ପ୍ରକାଶ ପାଇଲା ବେଳକୁ ସୋମା ପୁଣି ଆସି ତା ଆଗରେ ଠିଆ ହେଲା । ସେତେବେଳେ ବନ ଝରଣାରେ କବିତା ପ୍ରକାଶ ନ ପାଇବାର ଅବସାଦ, ଆଜି ଗର୍ବର ହିମାଳୟ ହୋଇ ଠିଆ ହେଲାବେଳେ ସୋମା ଆଉ ନ ଥିଲା । ଦୁଇଟି ପିଲାର ମାଆ ହୋଇ ସେ ତାର ଗର୍ବୋନ୍ନତ ରୂପ ଓ ଯୌବନକୁ ନେଇ ମାଟିରେ ମିଶାଇ ଦେଇଥିଲା । ତାର କବିତା କେବେଠାରୁ ଶୁଖି କଳାହାଣ୍ଡିର ଟାଙ୍ଗର ଭୂଇଁରେ ପରିଣତ ହୋଇସାରିଲା । 'ହାୟରେ ସୋମା, ତୁ ସେତେବେଳେ କେତେ ଗର୍ବ କରୁ ନଥିଲୁ ?'

ନରସୁନ୍ଦର ମନେମନେ ଭାବିଲା 'ବନ ଝରଣା' ଏବେ ଯୌବନ ଅତିକ୍ରମ କରି ଏକ ସୁନ୍ଦର ଓ ସୁଠାମ କଳେବର ନେଇ ଠିଆ ହୋଇସାରିବଣି । ତାର ନାଁ ଏବେ ସବୁଠି ଦିଗ ଚହଟାଇ ଦେଉଥିବ । ସେ ସମୟରେ କବିତାଟି ଯାହାର ତାର ଆଦ୍ୟ ଯୌବନର କବିତା ଠିକ୍ ସେଇଆ ନୁହେଁ । ସୋମା ଆସି ଦେଖନ୍ତା ନାହିଁ ସେ ଫରକଟିକୁ । କିନ୍ତୁ ସୋମା କାହିଁ ? ସେ କୋଉଠି ଏବେ ମିଳନ୍ତା କି ?

ନରସୁନ୍ଦର ପତ୍ରିକାଟିକୁ ଖୋଜିଲା । ଆଗେ ପତ୍ରିକାଟି ମିଳୁ । କବିତାଟିକୁ ଦେଖାଯାଉ । ପତ୍ରିକାର କୋଉ ସ୍ଥାନରେ ତାହା ସ୍ଥାନିତ ହୋଇଚି ତାକୁ ଆଗ ଦେଖାଯାଉ । ଆଉ ତା'ଛଡ଼ା ସେ ପତ୍ରିକାରେ ଆଉ କୋଉ ବିଶିଷ୍ଟ କବିମାନେ ଲେଖିଚନ୍ତି ତାକୁ ମଧ୍ୟ ଦେଖିବାର କଥା । କବିତ୍ୱର ଗୋଟାଏ ଅଭିନବ ଅନୁଭବରେ ନରସୁନ୍ଦର ବିହ୍ୱଳିତ ହୋଇ ପଡୁଥିଲା ।

ହାଟ ବଜାରଟା ଗାଁ ନା ସହର ? ଗୋଟାଏ ଭଲ ବଜାର ବି ତ ନୁହେଁ । ଗାଁ ଟାଏ ବୋଲି ମଧ୍ୟ କହି ହେବ ନାହିଁ । ଏ ଗାଁରେ ଖୁଣ୍ଟ ଓ ତାର ଅଛି କିନ୍ତୁ ଲାଇଟ ଜଳେ ନାହିଁ । ଏ ଗାଁରେ ସ୍କୁଲ ଅଛି, ପିଲା ନାହାନ୍ତି ପଢ଼ିବାକୁ । ଏଠି ରାସ୍ତା ଅବଶ୍ୟ ଅଛି କିନ୍ତୁ ସେଥିରେ ଗାଡ଼ି ମଟର ଚାଲିପାରେ ନାହିଁ । ଗାଁରେ ଟ୍ୟୁବ୍‌ୱେଲ୍ ଅଛି ସେଥିରୁ ପାଣି ବାହାରେ ନାହିଁ । ଧାନ ବିଲ ଅଛି । ସେଥିରେ ଚାଷ ହୁଏ ନାହିଁ । ଆମର କେନାଲ ଅଛି, ସେଥିରେ ପାଣି ନାହିଁ । ଗାଁ ହାଟ ମୁଣ୍ଡରେ ଦୋକାନ ଅଛି ସେଥିରେ ଖୋଜିବା ଜିନିଷ ମିଳେନା, ଟେଲିଫୋନ୍ ବୁଥ୍ ଅଛି କିନ୍ତୁ କଥା ହୋଇ ହୁଏନାହିଁ । ଏବଂ ସର୍ବୋପରି ଗାଁରେ ଘର ଅଛି, ସେଥିରେ ଚାଳ ନାହିଁ କିମ୍ବା ଚାଳ ଥିଲେ ଲୋକ ନାହିଁ । ଆଉ ତା'ଛଡ଼ା କହିବାକୁ ଲାଜ ମାଡୁଛି ଯେ ଏ ଗାଁର ପିଲାଙ୍କ ପିଚା ଅଛି, ତାକୁ ଢାଙ୍କିବାକୁ କପଡ଼ା ନାହିଁ । ଏଇ ପ୍ରକାର ଏକ ଦାରିଦ୍ର୍ୟ ସମୁନ୍ନତ ଗାଁରେ କବିତା ଥିଲେ ତାକୁ ବୁଝିବାକୁ ଲୋକ କୋଉଠୁ ମିଳିବେ ? ଯୋଉ ପାଟିରୁ ଉପେନ୍ଦ୍ର ଭଞ୍ଜଙ୍କ ଚମ୍ପୂଗୀତ ହଜି ଗଲାଣି, ସେଠି ଚମ୍ପା ଆଉ ଆଧୁନିକ କବିତା ଘୋଷିବ ? ମନ କାହିଁ ନା ହୃଦୟ କାହିଁ ? ହେଇତ ଟେଲିଫୋନ୍ ବୁଥ୍‌ରେ ନରସୁନ୍ଦର ଯେତେବେଳେ ଚନ୍ଦ୍ରମୋହନଠାରୁ ଖବର ପାଇଲା ଯେ ତାର କବିତାଟି ବନ ଝରଣାରେ ପ୍ରକାଶ ପାଇଚି ଏବଂ ସେ ଯେତେବେଳେ ତାକୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଇଲା ସେତେବେଳେ ସେଠି ପାଞ୍ଚ, ସାତ ଜଣ ବସିଥିଲେ । ସେମାନଙ୍କ ଭିତରୁ ଦୁଇଜଣ ମାଷ୍ଟରାଣୀ ଯୋଉମାନେ କୁଆଡ଼େ ସାତ ମାସ ହେଲା ଦରମା

ପାଇ ନାହାନ୍ତି, ବ୍ଲକ ଅଫିସକୁ ଫୋନ୍ କରି ବୁଝିବେ କେବେ ମିଳିବ ବୋଲି ସେଠି ଅପେକ୍ଷା କରିଥିଲେ ଏବଂ ଆଉଜଣେ ବନାରସରେ ଗୋଟିଏ ପାନ ଗୋଦାମରେ କାମ କରୁଥିବା ତା ପୁଅକୁ ଟେଲିଫୋନ୍ କରି କହିଥିଲା ଯେ ଏଥର ପ୍ରବଳ ବର୍ଷାରେ ଏ ଅଞ୍ଚଳର ପାନ ବରଜସବୁ ମାଟିରେ ମିଶି ଯାଇଚି, ତେଣୁ ଆଉ ପାନ ସେ ଆଡ଼କୁ ପଠାଇ ହେବ ନାହିଁ, କେମିତି ବଞ୍ଚିବା, କିଛି ଟଙ୍କା ପଠାଇବୁ ବୋଲି କହିବାକୁ ସେଠି ମୁହଁ ତଳକୁ କରି ବସିଥିଲେ । ଏ ତିନିଜଣ ତାକୁ ଭଲ ଭାବେ ଜାଣନ୍ତି । ଅନ୍ତତଃ ସେ ଅପେକ୍ଷାକୃତ ଶ୍ୟାମଳୀ ମାଷ୍ଟ୍ରାଣୀ ଜଣକ ଜାଣେଁ ଯେ ସେ କବିତା ଲେଖେ, କାହିଁ ସେମାନେ ତ କେହି ନରସୁନ୍ଦରର ସୁଖବର କଥା ଜାଣିଲା ପରେ ପଦଟିଏ ତାକୁ କିଛି କହିଲେନି । ଖାଲି ଶୁଣିଲେ ଯାହା । କାଣିଚାଏ ହସ ହେଲେ ତା ଆଡ଼କୁ ଫୋପାଡ଼ି ଦେଇ ଥାଆନ୍ତେ । ଆଉ ସେ ଶ୍ୟାମଳୀ, ଶ୍ୟାମଳୀ ହେଲେ ବି ତାର ଗଢ଼ଣ ଚମତ୍କାର, ଆଖିଟା ବି, କଅଣ ତାର ନାଁଟା 'ଇତିଶ୍ରୀ' ? ହଁ ଇତିଶ୍ରୀ ପଟ୍ଟନାୟକର ମୁହଁରୁ ଜଣାପଡୁଚି ଯେମିତି ସବୁ ସୁଖର ଇତି ହେଇଯାଇଚି । ତଥାପି ସେତ କବିତା ବୁଝେ । କାହିଁ ସେ ବି ତ ନରସୁନ୍ଦର କଥା ଟେଲିଫୋନ୍‌ରୁ ଶୁଣିଲା ପରେ ମଧ୍ୟ ତା ଆଡ଼କୁ ଥରେ ଦେଖିଲାନି । ଥରେ ମାତ୍ର ଚାହିଁ ଦେଇଥିଲେ ସେ ବୁଝିଯାଇ ଥାଆନ୍ତା ଯେ ଇତିଶ୍ରୀ ମନେମନେ ତାକୁ ଅନ୍ତତଃ ଅଭିନନ୍ଦନ ଜଣାଉଚି । କାହିଁ ସେ କଥା ବି ହେଲା ନାହିଁ । ନରସୁନ୍ଦର ବୁଝିଲା ଯେ ଏ ଅଞ୍ଚଳର ବାୟୁମଣ୍ଡଳ ମଧ୍ୟ କବିତା ବିରୋଧୀ ହେଇଯାଉଛନ୍ତି । ସେ ମନେ ମନେ ଭାବିଲା ମଣିଷର ଦୁଃଖର ଅନ୍ୟ ନାମ ତ କବିତା । ତେଣୁ କବିତା ସମସ୍ତଙ୍କର ପ୍ରିୟ ହେବା କଥା । ଆରେ ପୃଥିବୀରେ କବିତାକୁ କିଏ ଭଲ ନପାଏ ? ପଶୁ ପକ୍ଷୀ ବି ଭଲ ପାଆନ୍ତି । ବିଷଧର ସର୍ପ ତାର ଫଣା ଫେରେଇ ନିଏ । ଆଉ ଅବୋଧ ଶିଶୁ ? ନିଦ ମାଉସୀ ତା ଆଖିକୁ ମୁଦି ଦିଏନାହିଁ କି ? କବିତାର ସାମ୍ରାଜ୍ୟ ଯେତେବେଳେ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡକୁ ଅଧିକାର କରି ସାରିଚି ସେତେବେଳେ ଏଇ ଛୋଟ ଗାଁଟି ତାର ବ୍ୟତିକ୍ରମ କି ? ବ୍ୟତିକ୍ରମ ହେଇପାରେ ? ତେବେ ବୁଥ୍‌ରେ ସେ ଲୋକମାନେ କେମିତି ନିରବ ହେଇଗଲେ ? ଏତେ ବଡ଼ ଖବରଟା ଶୁଣିଲା ପରେ କେହି ନିରବ ରହିପାରେ ?

ନରସୁନ୍ଦର ମନେ ମନେ ଲୋକମାନଙ୍କ ଉପରେ ବିରକ୍ତ ହେଇ ଉଠିଲା । ସେମାନଙ୍କର ଦୁଃଖ ପ୍ରତି ସମ୍ବେଦନା ପ୍ରକାଶ କରି ମନେ ମନେ ସେମାନଙ୍କୁ କ୍ଷମା କରି ଦେଲା । ଆଃ ଛାଡ଼, ଦୁଃଖରେ ଘାଣ୍ଟି ଚକଟି ହେଉଥିବା ଲୋକମାନଙ୍କ ମୁହଁ ତ ଗୋଟିଏ ଗୋଟିଏ ଚମତ୍କାର କବିତା । ସେମାନଙ୍କଠାରୁ ଆଉ ଅଧିକ କଅଣ ଆଶା କରି ହେବ ?

ସେ ଏଣିକି ସହରକୁ ଯିବ । ନରସୁନ୍ଦର ଶେଷ ସିଦ୍ଧାନ୍ତ ନେଇଗଲା । ଗାଁରେ କବିତା ବୁଝୁଥିବା ଲୋକ ନଥିବାରୁ ସେ ଏଣିକି ସହରକୁ ଯିବ । ସେଠି କବିତାର ଆଦର ଅଛି । ଏ କଥା ଭାବିଲା ବେଳେ ଗାଁ ପ୍ରତି ତା ମନ ବିଷରେ ଭରି ଉଠିଲା । ଛି, ଏଇଟା ଗାଁ ନା

ନର୍କ ? ଗାଁର ବଦନାମ କିନ୍ତୁ ଯୁଗେ ଯୁଗେ ଅଛି । ତାର ମନେ ପଡ଼ିଲା ଗାଁର ଲୋକମାନେ ଯଦି କବିତା ବୁଝୁ ଥାଆନ୍ତେ ତେବେ ମହାକବି କାଳିଦାସ ଯାଇ ଥାଆନ୍ତେ ରାଜସଭାକୁ ? ରାଜସଭାଟା ସହର ନୁହେଁ ଆଉ କଅଣ ? ସେଠି ବଡ଼ବଡ଼ ପଣ୍ଡିତମାନେ ଥାଆନ୍ତି । ସତରେ ସହରଟା ସ୍ୱର୍ଗ । ତାକୁ ସ୍ୱର୍ଗ ଛଡ଼ା ଆଉ କଅଣ କୁହାଯିବ ? ଯୋଉଠି କାହିଁରେ କେତେ କବି, ସକାଳଠାରୁ ସନ୍ଧ୍ୟା ଯାଏ କେବଳ କବିତା ଆବୃତ୍ତି ଚାଲିଥାଏ, ସ୍କୁଲ, କଲେଜ, ବସଷ୍ଟାଣ୍ଡ, ହୋଟେଲ, ରେଲଷ୍ଟେସନ, ଦୋକାନ କୋଉଠି କବିତା ଲେଖା ନ ଥାଏ ? ହେଇ ତ ସେଦିନ ବିଧାନସଭାରେ ମଧ୍ୟ କିଏ ଜଣେ ସଙ୍ଗେସଙ୍ଗେ କବିତା ଲେଖି ଆବୃତ୍ତି କରିଥିଲେ ବୋଲି ଖବରକାଗଜରେ ପ୍ରକାଶ ପାଇଥିଲା । ସେଠି ଆଶୁ କବିମାନେ ଅଛନ୍ତି ବୋଲି ନରସୁନ୍ଦର ଜାଣି ନ ଥିଲା । ସେ ଭାବିଲା ସତେତ ମହାମାନ୍ୟ ସଦସ୍ୟମାନଙ୍କର ପ୍ରତ୍ୟେକ ପ୍ରଶ୍ନ ଓ ଉତ୍ତର ଯଦି କବିତାରେ ପ୍ରକାଶ କରିବାର ନିୟମ ସରକାର କରନ୍ତେ ତେବେ କେତେ ଚମତ୍କାର ନ ହୁଅନ୍ତା ? କବିତାର ମାନ ଯଥେଷ୍ଟ ବୃଦ୍ଧି ପାଆନ୍ତା । ଏବଂ ଆମ ରାଜ୍ୟ କବିତାରେ ଆନ୍ତର୍ଜାତିକ ସମ୍ମାନ ପାଇ ପାରନ୍ତା । ନରସୁନ୍ଦର ଏମିତି ବି ଭାବିଲା, ଦୁଃଖର ଅନ୍ୟନାମ ଯଦି କବିତା ତେବେ ଏହି କବିତାଗୁଡ଼ିକ ସବୁ ଗଣମାଧ୍ୟମରେ ପ୍ରଚାର ଓ ପ୍ରସାର ଲାଭ କଲେ ଦିଲ୍ଲୀର ଜୀବନ୍ତ ଅବା ମୃତ ବାଦଶାମାନେ ଆମ ଦୁଃଖ ସହଜରେ ବୁଝନ୍ତେ ଓ ତାର ପ୍ରତିକାର ମଧ୍ୟ କରନ୍ତେ । ତାକୁ ଆଉ 'ଦାରିଦ୍ର୍ୟ ଦୂରୀକରଣ' ନକହି 'ଦୁଃଖ ଦୂରୀକରଣ' ଯୋଜନା ବୋଲି କୁହାଯାଆନ୍ତା । ନରସୁନ୍ଦର ଭାବିଲା ସେ ସହରକୁ ଯାଇ ଏଥର କବିମାନଙ୍କୁ କହି ଯାକୁ ଗୋଟାଏ 'ଇସୁ' କରି ଆନ୍ଦୋଳନ କରିବାକୁ ପ୍ରବର୍ତ୍ତାଇବ । ସହରକୁ ନ ଗଲେ କିଛି ହେବ ନାହିଁ ।

ବାଲେଶ୍ୱରରେ ପାଠ ପଢୁଥିବା ବେଳର କଥା ତାର ମନେ ପଡ଼ିଲା । ଷ୍ଟେସନ ବଜାରର ସେ ଖଟି ଏବେବି ଜୀବନ୍ତ ଅଛି । ନରସୁନ୍ଦର ବେଳେବେଳେ ସେଠି ଯାଇ ବସି ପଡ଼େ । ସେଠି ସବୁବେଳେ ପାଞ୍ଚ ସାତ ଜଣ କବି ବସିଥାଆନ୍ତି । ବାଉଁଶର ଖୁଣ୍ଟ ଉପରେ ପଡ଼ିଥାଏ ପଟା, ଆଉ ଗୋଟାଏ ଦୁଇଟା ଡାବଲ । ପଟାର ବେଞ୍ଚ ଅନେକ ଥର କବିମାନଙ୍କ ଓଜନ ସହି ନପାରି ଭାଙ୍ଗି ପଡ଼ିଚି ଏବଂ କବିମାନେ ରକ୍ତାକ୍ତ ହେଇଚନ୍ତି । ଦିନେ ସେଇ ରକ୍ତ ଦେଖି ବିପ୍ଳବୀ କବି ମାଧ ରାଉତ ଯେ କି ସେତେବେଳକୁ ପାଠ ପଢ଼ା ଛାଡ଼ି ଗୋଟେ କୋଉ ପଲିଟିକାଲ ପାର୍ଟିର ପୋଷ୍ଟର ମରା କାମରେ ନିଜକୁ ନିୟୋଜିତ କରି ଥାଆନ୍ତି, ସେ ସଙ୍ଗେ ସଙ୍ଗେ ଗାଇ ଉଠିଲେ-

'ଇଏ ନୁହେଁ ରକ୍ତ ବଂଧୁ, ଇଏ ରକ୍ତ ନୁହେଁ
ସହରର ଜୋଛନାରେ ଗାଧୋଇବା ଲୋକ ମୁଁ ନୁହେଁ
ମୋ ଦେହରୁ ଝରେ ଯେବେ ରକ୍ତ
ହାତ ମୁଠା ହୁଏ ମୋର ଶକ୍ତ.......

ତା'ପରେ ? ତା'ପରେ ଆଉ ମନେ ପଡୁ ନଥିଲା ନରସୁନ୍ଦରର । କେତେ ଦିନର କଥା ହେଲାଣି । ମାଧ ରାଉତ ଏବେ କୋଉ ଗୋଟିଏ ମେଡ଼ିସିନ କମ୍ପାନୀର ରିପ୍ରେଜେଣ୍ଟେଟିଭ୍ । ସେଦିନ ହାତରେ ଗୋଟାଏ ପୁରୁଣା ମସିଆ ଚମଡ଼ା ବେଗ୍ ଧରି ସେ ତା'ର ନଳୀ ଓ ଟାଇଟ୍ ପେଣ୍ଟରେ ଛତା କନାର ହେବ କି କଅଣ, କଳା ଟାଇ ବେକରେ ଭିଡ଼ି ଦେଇ ବସିଥିଲା ହାଟ ବଜାରରେ ନୂଆ ନୂଆ କ୍ଲିନିକ ଖୋଲିଥିବା ଡାକ୍ତର ଅବିନାଶ ରାୟଙ୍କ ଦୋହଲି ଯାଇଥିବା ଚାଳଘର ସାମ୍ନା ସେଇ ପଟା ବେଞ୍ଚ ଉପରେ । ନରସୁନ୍ଦରକୁ ଦେଖେଇଲା । ନିଅ ।

"କଅଣ ବିଡ଼ି ? ନା ମୋତେ ଭୀଷଣ କାଶ ହେଉଚି ।"

ମାଧ ଗୋଟାଏ ସେଥିରୁ ନେଇ ପଚାରିଲା, "କବିତା କେମିତି ଅଛି ?"

"କବିତା ମହାନ୍ତି କଥା ପଚାରୁଚ ? ବାହା ହେଇ ଗଲାଣି ।"

"ଧେତ୍, ମୁଁ କବିତା ଲେଖା କଥା ପଚାରୁଚି । ହେଇ ଦେଖ । ମାଧ ତା ମେଡ଼ିସିନ୍ ବେଗ୍‌ରୁ ମୋଡ଼ାମୋଡ଼ି ହେଇଥିବା ମେଞ୍ଚେ ନାଲି କାଗଜ ବାହାର କଲା । ମୁଁ ବରାବର ଲେଖୁଚି । ପ୍ରତିଦିନ ପୁଳାଏ ନ ଲେଖିଲେ ମୋତେ ନିଦ ହୁଏନା । ସତ କଥା କହୁଚି, କବିତା ମୋ ଜୀବନ । ମୁଁ ବିଡ଼ି ଟାଣେ, ମେଡ଼ିସିନ୍ ବିକ୍ରି କରେଁ ଓ କବିତା ଲେଖେଁ । ମୋର ଆଉ ଅନ୍ୟ କିଛି କାମ ନାହିଁ ।"

ନର ଆଷ୍ଚର୍ଯ୍ୟ ହେଇଗଲା । ଆରେ ଲୋକଟା ସେତେବେଳେ ଯେମିତି ଥିଲା ଏବେବି ସେମିତି । କବିତା ପାଇଁ ସେ ଯେ ଖାଲି ପ୍ରାଣ ଉତ୍ସର୍ଗ କରି ଦେଇଚି ତା' ନୁହେଁ । କବିତା ମଧ୍ୟ ମାଧ ପାଇଁ ନିଜକୁ ଉତ୍ସର୍ଗ କରି ଦେଇଚି ଯେମିତି ।

"କୋଉ କୋଉ ପତ୍ରିକାରେ ପ୍ରକାଶ ପାଇଲାଣି ?" ପଚାରିଲା ନର ।

"ମୁଁ ସେମାନଙ୍କୁ ଖାତିର କରି କବିତା ଲେଖୁଚି ? କିଏ ଛାପୁଛି ନ ଛାପୁଚି ସେସବୁ ମୁଁ ଦେଖେନା। ଲେଖିଲି, ପଠେଇ ଦେଲି । ମୋ କର୍ତ୍ତବ୍ୟ ମୁଁ କରିଯାଏଁ । ଫଳ ଈଶ୍ୱରଙ୍କ ହାତରେ । ଗୀତାରେ କଅଣ କୁହାଯାଇଛି ?" ମାଧ କହିଲା କବିତାଟିକୁ ବେଗ୍ ଭିତରକୁ ଫୋପାଡ଼ି ଦେଇ ।

ଈଶ୍ୱରଙ୍କୁ ଚିହ୍ନିଲଣି ତେବେ ? ନର କହିଲା ଓ ହସିଲା ।

ତୁମେ ଏଇଆ ବୁଝିଲ ? ମାନେ ମୋର କହିବାର କଥା ଈଶ୍ୱର ଗୋଟେ ସିମ୍ବଲ । ସିମ୍ବଲକୁ ନେଇ ଯାହା କିଛି କୁହାଯାଇ ପାରେ ବା କରାଯାଇ ପାରେ । ହଉ ଏଠିକି କୁଆଡ଼େ ଆସିଥିଲ ଆଗେ କହିଲ ? ମାଧ ପଚାରିଲା ।

"ଆମ ଗାଈ ଦୁଇଦିନ ହେଲା ଆଉ ଦୁଧ ଦଉନି । ପହ୍ନା ଫୁଲିକି ହେଁ ହେଇ ଯାଇଚି । ନା ତା ଛୁଆକୁ ମୁହଁ ମାରିବାକୁ ଦେଉଚି ନା ଆମକୁ ହାତ ମାରିବାକୁ ଦଉଚି । ମୋ ମାଆ କହୁଚି କିଏ ଗୁଣି... ।"

ମାଧ କଥାରେ ବାଧା ଦେଲା । ସେ ତା କାନ ପାଖକୁ ମୁହଁ ଆଣି କହିଲା ଡାକ୍ତର ରାୟ ପଶୁ ଡାକ୍ତର କି ?"

ନରସୁନ୍ଦର କହିଲା, "ସେ ହୋମିଓପାଥି ବି ପ୍ରାକ୍ଟିସ୍ କରନ୍ତି । ଯୋଗ, କବିରାଜ ଓ ହାଇଡ୍ରୋପାଥି ବି ଚଳେ । ମୋତେ ଜଣେ କିଏ କହୁଥିଲା ସେ ସାପ କାମୁଡ଼ା ମନ୍ତ୍ର ମଧ୍ୟ ଜାଣନ୍ତି । ଅସଲ କଥା କଅଣ ଜାଣ ? ହାଟ ବଜାର ଭଳିଆ ଗୋଟାଏ ଛୋଟ ଗାଁ ନୁହେଁ କି ବଜାର ନୁହେଁ ଜାଗାରେ ଅଲଗା ଅଲଗା ଚିକିତ୍ସା ପାଇଁ ଡାକ୍ତର କୋଉଠି ମିଳିବେ ? ତେଣୁ ତାଙ୍କଠାକୁ ସମସ୍ତେ ଆସନ୍ତି । ଲୋକଙ୍କ ଆବଶ୍ୟକତା ଅପେକ୍ଷା କାକୁତି ମିନତିର ମାତ୍ରା ଦେଖି ସେ କାହାକୁ ମନାକରି ପାରନ୍ତି ନାହିଁ ।"

କବିତା ପ୍ରତି ତାଙ୍କର ଶ୍ରଦ୍ଧା ଅସୀମ । କହିଲା ମାଧ ।

ମୁଁ ଆଉ କାହିଁକି ଆସେଁ ଏଠିକୁ ? ନରସୁନ୍ଦର କଥା ଯୋଡ଼ିଲା । କେହି ଗୋଟେ ବଦମାସ ନେତା ଥରେ ତାଙ୍କୁ କହିଲା, ''ତୁମେ ଏମିତି ଲୋକଙ୍କୁ ଠକି ଚିକିତ୍ସା କରିପାରିବ ନାହିଁ । ଏହା ଆଇନ ବିରୁଦ୍ଧ କାମ ।'' ପୁଲିସ ସଙ୍ଗେସଙ୍ଗେ ଆସି ହାଜର ହେଇଗଲା, କହିଲା, "ଆମ ପାଖରେ ହଜାରେ କମ୍ପ୍ଲେନ୍ ଅଛି ।"

"ଏଥର ମଜା ଦେଖ । ହଜାର ହଜାର ଲୋକ ଆସି ରୁଣ୍ଡ ହୋଇଗଲେ । କହିଲେ, କିଏ ବାପର ପୁଅ ଅଛି, ଆମ ଡାକ୍ତରଙ୍କୁ ଛୁଇଁବ । ସିଏ ଆମ ଡାକ୍ତର ନୁହେଁ ଆମ ଭଗବାନ । କାମ ଏତିକିରେ ଶେଷ । ପୁଲିସ ମୁହଁ କଳା ପଡ଼ିଗଲା ।"

ଆଜି ଏତେଦିନ ପରେ ନରସୁନ୍ଦର ସେସବୁ କଥା ମନେ ପକେଇ ଉଲୁସି ଉଠୁଥିଲା ଏଇଥିପାଇଁ ଯେ କବିତା ଏ ସମସ୍ତଙ୍କୁ ଏବେ ମଧ୍ୟ ବାନ୍ଧି ରଖିଚି ଗୋଟିଏ ସୂତାରେ । କିଏ କୁଆଡ଼େ ଗଲେଣି କେବେଠାରୁ । ଏବଂ କିଏ ମଧ୍ୟ କୋଉଠୁ ଆସି ମିଶୁଚନ୍ତି । ଶେଷରେ ସମସ୍ତେ ମିଶି ଏକାଠି ହେଇ ଯାଉଛନ୍ତି । କବିତାର ଶକ୍ତି କଥା ଚିନ୍ତା କରି ନରସୁନ୍ଦର ମୁଗ୍ଧ ହେଇ ଯାଉଥିଲା ।

ହଠାତ୍ ତାର ମନେ ପଡ଼ିଲା ପତ୍ରିକା କଥା । ଅସଲ କଥା ହେଲା ସେ ପତ୍ରିକାଟି ପାଇବ କେଉଁଠୁ ? ଯୋଉ ପତ୍ରିକାରେ ତା ଜୀବନର ମହାର୍ଘ ମୁହୂର୍ତ୍ତଟି ପ୍ରଥମ ଥର ପାଇଁ ଗୁଞ୍ଜରୀ ଉଠିଚି, ସେ ତାକୁ ଏଯାଏଁ ଦେଖି ନାହିଁ । ଅଥଚ ଏ ଦୁଇଦିନ ଭିତରେ ତକ୍କୁ କେତେ ଶହ କି କେତେ ହଜାର ପାଠକ ପଢ଼ି ସାରିବେଣି । ସେମାନେ କେତେ ପ୍ରଶଂସା ମଧ୍ୟ କରି ସାରିବେଣି । ତାକୁ ଥରେ କିଏ କହିଥିଲା, ଭଲ କବିତାଟିଏ ପ୍ରକାଶ ପାଇଲା ମାତ୍ରେ କବି ଠିକଣାରେ ଅନେକ ଚିଠି ଆସେ । ସେଥିରେ କିଛି ଝିଅ ମଧ୍ୟ ଥାଆନ୍ତି । ଏମିତିକା ଚିଠି ଆଦାନ ପ୍ରଦାନରୁ ବେଳେବେଳେ ଆହୁରି ଅନେକ ଭଲ ସମ୍ପର୍କ ମଧ୍ୟ ସ୍ଥାପିତ ହେଇଯାଏ । ଅବଶ୍ୟ ସବୁବେଳେ ଏ ପ୍ରକାର ସମ୍ପର୍କର ନୀଳ ଲଫାପାଟିକୁ ସବୁଠି ଖୋଲି ହୁଏ ନାହିଁ । ଅଡୁଆ ମାଡ଼ି ମାଡ଼ି ପଡ଼େ ।

ନରସୁନ୍ଦର ଠିକ୍ କଲା, ନା ଏଇ ମୁହୂର୍ତ୍ତରେ ସେ ସହରକୁ ଯିବ ଏବଂ ପତ୍ରିକାଟିକୁ ଖୋଜି ବାହାର କରିବ । ହାଟ ବଜାରଠାରୁ ମାତ୍ର ଦୁଇ କିଲୋମିଟର ଗଲେ ନାଗରା ପାସେଞ୍ଜର ହଲ୍ଟ । ସେଠୁ ଚାରିଟା ଷ୍ଟେସନ ପରେ ପଡ଼ିବ ସହର । ସେ ପାସେଞ୍ଜରରେ ଗଲେ ପଇସା ପଡ଼େନା । ନରସୁନ୍ଦର କାଳ ବିଳମ୍ବ ନକରି ଚାଲିବାକୁ ଆରମ୍ଭ କଲା ଏବଂ ସହରରେ ପହଞ୍ଚିଲା ବେଳକୁ ଦିନ ଏଗାରଟା ।

ସେ ପ୍ରଥମେ ରେଳ ଷ୍ଟେସନରେ ଥିବା ବୁକ୍ ଷ୍ଟଲରେ ଯାଇ ପଚାରିଲା 'ବନ ଝରଣା' ଅଛି ? ଏଇ ମାସର ?

ଦୋକାନୀ ପ୍ରଥମେ ତା ମୁହଁକୁ କିଛି ସମୟ ଅନେଇଲା ଏବଂ ତା'ପରେ ମୁହଁ ନେଫେଡ଼ି ଦେଇ କହିଲା- ନା ।

ଆଶ୍ଚର୍ଯ୍ୟ ହେଲା ନରସୁନ୍ଦର । ଏତେବଡ଼ ବୁକ୍‌ଷ୍ଟଲ । ଅଥଚ 'ବନ ଝରଣା' ଭଳି ପ୍ରଶଂସିତ ପତ୍ରିକାଟିଏ ରଖି ନାହିଁ ? ତାର ସନ୍ଦେହ ହେଲା । ହୁଏତ ଲୋକଟା ଭୁଲ୍ କହୁଥାଇପାରେ । ପ୍ରକୃତ ଦୋକାନୀ ବି ନ ହୋଇପାରେ । ମାଲିକର ସହାୟକ । ତା'ର ବା ପତ୍ରିକା ବିଷୟରେ କି ଜ୍ଞାନ ଥିବ ? ସେ ସନ୍ଦେହରେ ପଡ଼ିଗଲା । ଏମିତି କଅଣ ହୋଇପାରେ ?

ଆପଣ ଟିକେ ଭଲ କରି ଦେଖୁ ନାହାନ୍ତି । ମୋତେ ଜଣେ କହିଲା ଏଇଠି ଅଛି ବୋଲି । ସେ ଦୋକାନୀକୁ ପୁଣିଥରେ ପଚାରିଲା ।

ଲୋକଟି ଏଥର ବିଗିଡ଼ି ଗଲା ବୋଧେ । କହିଲା- କି ପତ୍ରିକା କହିଲେ ? 'ବନ ଝରଣା' ? ନାହିଁ, ସେ ପତ୍ରିକା ଆମର ନାହିଁ । ଆଉ ଏତେ ପତ୍ରିକା ଅଛି ଦେଖୁ ନାହାନ୍ତି । ତା'ଠୁ କେତେ ଭଲ ଭଲ ପତ୍ରିକା ଏଠି । ସେ ଦୁଇଖଣ୍ଡ ଆଣି ଆଗରେ ଥୋଇଲା ।

ନରସୁନ୍ଦର ମୁଣ୍ଡ ଟୁଙ୍ଗାରିଲା । କିନ୍ତୁ ପତ୍ରିକା ଦୁଇଟିର କଭର ଦେଖି ସେ ବିସ୍ମିତ ହେଲା । ବେଶ୍ ଆକର୍ଷଣୀୟ ଛବି । ଅନେକ ରଙ୍ଗରେ । ଏମିତି ଛବିଟି ହୋଇଚି ଯେ ତାକୁ ଦେଖି ହେଉ ନାହିଁ କି ସେଥିରୁ ଆଖି ଖସେଇ ହେଉ ନାହିଁ । ଏମିତି ଛବି ଥାଇ ପତ୍ରିକା ମିଳୁଚି କି ଆଜିକାଲି ? ସେ କଲେଜରେ ପଢୁଥିବାବେଳେ ଏମିତିକା ପତ୍ରିକା ନଥିଲା । ଏତେ ପତ୍ରିକା ବି ନଥିଲା । ଆଜିକାଲି କମ୍ପ୍ୟୁଟର ହେଲା ପରେ ନାରୀମାନଙ୍କ ଛବି ଶସ୍ତା ହୋଇ ଯାଇଥିବ । ଯୁଗ ବଦଳି ଯାଉଚି । ନାରୀମାନେ ବି ଯେ କୌଣସି ପୋଜ୍‌ରେ ଫଟୋ ଉଠାଇ ପତ୍ରିକାମାନଙ୍କର ଶ୍ରୀବୃଦ୍ଧି କରିବାକୁ ପଛେଇବେ କାହିଁକି ? ସେମିତି ଝିଅ ବି ତ ରାସ୍ତାରେ ଦେଖିବାକୁ ମିଳୁଚି ।

ନରସୁନ୍ଦର ଭାବିଲା ସେ ନିପଟ ଗାଁରେ ଥିବାରୁ ଏ ପ୍ରକାର ପତ୍ରିକା କି ପତ୍ରିକାର ଫଟୋ ଦେଖିବାକୁ ପାଉ ନାହିଁ । ଗାଁରେ ଏସବୁ ମୋଟେ ମିଳେ ନାହିଁ । ମିଳିଲେ କଅଣ ହୁଅନ୍ତା କେଜାଣି ? ଗାଁରେ ଏବେବି ସେଇ ଛାନ୍ଦ,ଚଉତିଶା, ଭଜନ ଏବଂ ତା ସହିତ ଗୀତା ଓ ଭାଗବତ ।

ସେ ମୁଣ୍ଡ ଟୁଙ୍ଗାରିଲା । କହିଲା, ଏ ପତ୍ରିକା କ'ଣ ହେବ ?

କଅଣ ହେବ ମାନେ ? ପାଞ୍ଚଶ କପି ତିନିଦିନ ଭିତରେ ବିକ୍ରି ସରିଲାଣି । ସମସ୍ତେ ନଉଚନ୍ତି । ଏଥିରେ ସବୁ ଅଛି । ଫେସନ, ରନ୍ଧାବଢ଼ା, ସିଲେଇ, ସ୍ୱାସ୍ଥ୍ୟରକ୍ଷା, ଯୋଗ, କୋଉ ଖାଦ୍ୟରେ କି କି ଭିଟାମିନ୍ ଓ କେତେ କେଲରି- ସବୁ ଅଛି । ଘରର ଚାକରାଣୀଠାରୁ ମାଲିକାଣୀ ଯାଏଁ ସମସ୍ତଙ୍କର ଦରକାର । ଦୋକାନୀଟି ନିଜେ ପତ୍ରିକା ଓଲଟେଇ ପକେଇଲା ଏବଂ ପୃଷ୍ଠା ସବୁ ତା ଆଗରେ ମେଲି ଧରିଲା ।

ମୁଢ଼ିରେ କେତେ ଭିଟାମିନ୍ ଓ କେତେ କେଲରୀ ଅଛି ଦେଖିଲେ ? ପଚାରିଲା ନରସୁନ୍ଦର ଉତ୍ସୁକ ହେଇ । ଢେଙ୍କିକୁଟା ଚାଉଳରେ ? ପୁଣି ପଚାରିଲା ।

ସେ ନିରାଶ ହେଲେ ଓ ପତ୍ରିକା ଦୁଇଟିକୁ ଯଥାସ୍ଥାନରେ ରଖିଦେଲେ ।

ଦୋକାନୀ ସେତେବେଳକୁ ବିରକ୍ତ ହେଇ ଗଲେଣି । ସେ କେମିତି କହିବ ଯେ ସେ ପତ୍ରିକା ଏଠି ବିକ୍ରି ହୁଏନା ? କିନ୍ତୁ କହିଲେ, ଏଗୁଡ଼ିକ କଅଣ ସାହିତ୍ୟ ପତ୍ରିକା ନୁହେଁ । ହେଇ ଦେଖୁନାହାନ୍ତି ଏଠି ଲେଖା ହେଇଚି ବଡ଼ ବଡ଼ ଅକ୍ଷରରେ 'ପାରିବାରିକ ସାହିତ୍ୟ ପତ୍ରିକା' ।

ନରସୁନ୍ଦର ଦେଖିଲା ଆଉ ଡେରି କଲେ ସେ ସହର ଭିତରୁ ଯାଇ ପତ୍ରିକା ନେଇ ପୁଣି ଫେରନ୍ତା ଟ୍ରେନ୍‌ରେ ଗାଁକୁ ଫେରି ପାରିବନି । ସେ ଯାଇ କଲେଜ ଛକରେ ଥିବା 'ସରସ୍ୱତୀ ବୁକ୍ ଷ୍ଟଲ'ରେ ପହଞ୍ଚି କହିଲା ଏ ମାସର 'ବନ ଝରଣା' ଅଛି କି ?

ଅଛି । ଲୋକଟା ତାକୁ ମୋଟେ ନ ଅନାଇ କହିଲା ଏବଂ ପତ୍ରିକାଟେ ବଢ଼େଇ ଦେଲା ।

ଆଃ, ନରସୁନ୍ଦର ଯେମିତି ହାତରେ ଚନ୍ଦ୍ରମା ପାଇଗଲା । ସେ ତାକୁ ସଙ୍ଗେସଙ୍ଗେ ଖୋଲି ପକେଇଲା । ପ୍ରାୟ ତିରିଶ ଜଣ କବି ପୁଣି ତିନିଟି ସ୍ତବକରେ ବ[ । ହେଇଚନ୍ତି । ପ୍ରତି ସ୍ତବକ ଖୋଜିଖୋଜି ଯେତେ ସେ ଆଗକୁ ବଢୁଥାଏ ସେତିକି ତା'ର ହୃତସ୍ପନ୍ଦନ ବଢ଼ି ବଢ଼ି ଚାଲିଥାଏ । ପ୍ରଥମ ସ୍ତବକ ପରେ ଯେତେବେଳେ ସେ ଦେଖିଲା ଗଳ୍ପର ଧାଡ଼ିଟା ବେଶ୍ ଲମ୍ବା ଅଛି, ସେ ମନେ ମନେ ଭାବିଲା, ଏମାନେ ଯେ କାହିଁକି ଏମିତି ବହୁ ବଡ଼ ଗଳ୍ପ ଲେଖି କାଗଜ ନଷ୍ଟ କରନ୍ତି ବୁଝି ହୁଏନି । କଅଣ ଅଛି ସେ ଗଳ୍ପରେ ? ହୃଦୟକୁ ଛୁଇଁଥିବା କଥା ଅଛି ସେଥିରେ ? ଅକାରଣଟାରେ ପତ୍ରିକାଟି ମୋଟା ହେଇଯାଏ । ଏଇଥିପାଇଁ ଦାମ୍ ବି ବଢ଼େ ।

ଆପଣ ପତ୍ରିକା ନେବେ ? ଦୋକାନୀ ଗୋଟିଏ ଗ୍ରାହକ ପାଇଁ ଏତେ ସମୟ ଦେବାକୁ ପ୍ରସ୍ତୁତ ନୁହେଁ ।

ନରସୁନ୍ଦରର ଖୋଜିବାର ଏକାଗ୍ରତା ଆଘାତ ପାଇଲା । ସେ ନମ୍ରତାର ସହିତ କହିଲା, ମୁଁ ମୋ ନାଁଟିକୁ ଖୋଜୁଚି । ମୋର କବିତା ଏଥିରେ ପ୍ରକାଶ ପାଇଚି । ମୁଁ ନେବି, ନିଶ୍ଚୟ ନେବି ।

କଅଣ ନାଁ ଆପଣଙ୍କର ?

ନରସୁନ୍ଦର ପୁଣି ଥରେ ତାଙ୍କୁ ଅନେଇଲା । କହିଲା ନରସୁନ୍ଦର ଦାସ । ସେ ପୁଣି ଥରେ ସୂଚୀପତ୍ରରେ ମନୋନିବେଶ କଲା । ଦୋକାନୀର ମୁହଁର ପ୍ରତିକ୍ରିୟା ସେତେବେଳେ ଦେଖିବାକୁ ତାର ଆଗ୍ରହ ନଥିଲା ।

''ପ୍ରକୃତ କଥାଟା କଅଣ ଜାଣିଚନ୍ତି ?'' ଦୋକାନୀ ପୁଣିଥରେ ପ୍ରଶ୍ନ କଲା ।

ଓଃ, କି ବେଏଡ଼ା ଲୋକଟା ମ ? ନରସୁନ୍ଦର ସମ୍ପୂର୍ଣ୍ଣ ଅନିଚ୍ଛା ସତ୍ତ୍ୱେ ପୁଣି ଦୋକାନୀକୁ ଦେଖିଲା । ତାକୁ ଟିକେ ଦେଖିବାକୁ ସମୟ ଦେଉନି ।

''ପତ୍ରିକାଟି ଗୋଟାଏ ସିଲ୍ କରା ଖୋଳ ଭିତରେ ଥାଏ । ଆମେ ତାକୁ ସେମିତି ବିକ୍ରି କରୁଁ । ତା' ଭିତରେ ସାପ ଅଛି କି ବେଙ୍ଗ ଅଛି ସେକଥା ଲେଖକ ଘରକୁ ନେଇ ଦେଖୁ । ଆମେ ବିକିବା ଲୋକ । ଅଦା ବେପାରୀ । ଜାହାଜର ମୂଲ କାହିଁକି ପଚାରିବା ? ଜଣେ ଏମିତି ନିଜକୁ କବି ବୋଲି କହି ସିଲ୍ ଭାଙ୍ଗି ଦେଖିଲେ, ତା'ପରେ ଭଲ ହେଇନି କହି ଫେରେଇ ଦେଲେ । ଏଥିରେ ଆମର ଲସ୍ । ଦୋକାନୀଟି ତାର ପାନଖିଆ କଳାଦାନ୍ତସବୁ ଦେଖେଇ ହସିଲା ଏବଂ କହିଲା, ''ଆପଣ କିଛି ମନେ କରିବେନି ।''

ନରସୁନ୍ଦର ଭାବିଲା ଲୋକଟା ପକ୍କା ବ୍ୟବସାୟୀ ହେଲେ ମଧ୍ୟ ଭଦ୍ର ବୋଲି ଜଣାପଡୁଚି । ସେ ବିନୟ ହେଇ କହିଲା ''ମୋତେ ଆଉ ଦୁଇ ମିନିଟ ସମୟ ଦିଅନ୍ତୁ ।''

ସେ ତା'ଠୁ ଉତ୍ତର ପାଇବା ପୂର୍ବରୁ ପୁଣି ସୂଚୀରେ ନଜର ଦେଲା । ତୃତୀୟ ସ୍ତବକ ମଝିରେ ତା ନାଁଟା ଦେଖି ସେ କୁରୁଳି ଉଠିଲା । ସେ ଦେଖିଲା ତା ତଳେ ଏବଂ ଉପରେ ବହୁ ଜଣାଶୁଣା କବିଙ୍କ ନାଁ ଅଛି । ଏଥର ସେ ଟଙ୍କାଟା ବଢ଼େଇ ଦେଇ ତାକୁ ନମସ୍କାର କଲା ଓ ଧନ୍ୟବାଦ ମଧ୍ୟ ଜଣେଇଲା । ତା'ପରେ ସେ ପତ୍ରିକାଟି ଯତ୍ନର ସହିତ ତା ଶାନ୍ତିନିକେତନୀ ବେଗ୍‌ରେ ରଖିଲା ଏବଂ ଅଳ୍ପ ଦୂରରେ ଥିବା ଅପେକ୍ଷାକୃତ ଛୋଟ ଚା' ଦୋକାନକୁ ଉଠିଗଲା । ସେ ସଙ୍ଗେସଙ୍ଗେ କପେ ଚା'ର ଅର୍ଡ଼ର ଦେଲା ଏବଂ ଟେବୁଲଟି ଫୁଙ୍କି ସଫା କରି ତା ଉପରେ ପତ୍ରିକାଟିକୁ ଖୋଲି ରଖିଦେଲା । ସେ ପ୍ରଥମେ ନିଜ କବିତାଟି ପଢ଼ିବାକୁ ଆରମ୍ଭ କଲା । କବିତା ଭିତରେ ଗୋଟିଏ ବର୍ତ୍ତୁଳବକ୍ଷା ନାରୀର ରେଖାଚିତ୍ର ଦେଖି ସେ ଆଶ୍ଚର୍ଯ୍ୟ ହେଲା । ତାର ସନ୍ଦେହ ମୋଚନ ହେଲା ସେତେବେଳେ, ଯେତେବେଳେ ସେ ଦେଖିଲା ପ୍ରାୟ ପ୍ରତି ପୃଷ୍ଠାରେ ସେ ପ୍ରକାର ଛବି ରହିଚି । ଏଥିରେ କୁଆଡ଼େ କବିତାର ମର୍ଯ୍ୟାଦା ବଢ଼େ, ଏକଥା ସେ ଅନେକ ପରେ ଜାଣିଲା ।

ଯା ଭିତରେ ସେ ଯେ ଚା' କେତେବେଳୁ ପିଇସାରିଲାଣି ସେକଥା ତାର ମନେ ନାହିଁ । ସେ ଚମକି ପଡ଼ିଲା ଯେତେବେଳେ ମାଲିକ ତାକୁ କହିଲା, ''ସାର୍ । ଆମର ତ ଛୋଟ ଜାଗା । ଆଉ ଗ୍ରାହକ ଠିଆ ହେଇଚନ୍ତି । ସେମାନେ ଆମର ଲକ୍ଷ୍ମୀ ।''

ସେ ସେଠୁ ଉଠିଲା ଏବଂ ବସଷ୍ଟାଣ୍ଡ କି ରେଳଷ୍ଟେସନ ଆଡ଼େ ଯିବାକୁ ଚାହିଁଲା ।

ହାତରେ ସମୟ ଅନେକ ଅଛି । ସେଠାକୁ ଯାଇ ଘଡ଼ିଏ କାଳ ଶାନ୍ତିରେ ବସି ସେ ତାର କବିତାଟିକୁ ଆଉଥରେ ପଢ଼ିବ ଓ ଅନ୍ୟମାନଙ୍କ ଲେଖାରେ ମଧ୍ୟ ନଜର ପକାଇବ । ଏଥର ସେ ଆଉ ପତ୍ରିକାଟିକୁ ବେଗ୍‌ରେ ପୂରେଇବାକୁ ଚାହିଁଲାନି । ବରଂ ହାତରେ ଧରିଥିଲେ ସମସ୍ତେ ତାକୁ ଜାଣିପାରିବେ । ଭାବିବେ ଜଣେ କବି କି ଲେଖକ ହେଇଥିବ । ବରଂ କେହି ଚାହିଁଲେ ସେ ତା'ର ଲେଖାଟିଏ ଅଛି ବୋଲି ମଧ୍ୟ ତାଙ୍କୁ କହିବ । ସେ ଯେ ଏଥିରେ ତାଙ୍କୁ ସାଧୁବାଦ ଜଣେଇବେ ଏଥିରେ ସନ୍ଦେହ ନାହିଁ । ସେ ଏଣିକି ଆଉ ଅର୍ଡ଼ିନାରୀ କବିଟିଏ ନୁହେଁ । ବନ ଝରଣାରେ ଯୋଉମାନେ ଲେଖନ୍ତି ସେମାନେ ଯେ ସାଧାରଣଙ୍କ ଠାରୁ ଅନେକ ଉପରେ ଏକଥା ବୁଝାଇବା ଦରକାର ନାହିଁ । ସେ ପତ୍ରିକାଟିକୁ ଏମିତି ଭାବରେ ଧରିଲା ଯେମିତି ତାହା ସମସ୍ତଙ୍କ ନଜରରେ ପଡ଼ିବ । ସେ ପତ୍ରିକା ହାତରେ ଥିଲେ ରାସ୍ତାରେ କିମ୍ବା ଅନ୍ୟ କୋଉଠି ସେ ସମସ୍ତଙ୍କ ନଜରରେ ପଡ଼ିବ ହିଁ ପଡ଼ିବ । ସେ ଦେଖିଲା ରାସ୍ତାରେ ନାରୀ ଓ ପୁରୁଷ ମିଶି ସମସ୍ତେ ଯା ଆସ କରୁଛନ୍ତି । କଲେଜ ପଢୁଆ ଝିଅମାନେ ମଧ୍ୟ ଯାଉଚନ୍ତି । ନରସୁନ୍ଦର ଗର୍ବର ସହିତ ଝୁଲି ଝୁଲି ଏବଂ ପତ୍ରିକା ଧରିଥିବା ହାତକୁ ଅପେକ୍ଷାକୃତ ଅଧିକ ହଲେଇ ଚାଲୁଥିଲାବେଳେ ଦେଖୁଥିଲା ତାକୁ କେହି ଦେଖୁଚନ୍ତି କି ନାହିଁ । ବେଳେବେଳେ କାହାରି ଆଖି ସହିତ ଆଖି ମିଳିଗଲେ ସେ ଉତ୍‌ଫୁଲ୍ଲିତ ହେଇ ଉଠୁଥିଲା । ଭାବୁଥିଲା, ସେ ପଚାରିବେ କି ଆଉ ଏ ପତ୍ରିକା କୋଉଠୁ ପାଇଲ ? କଅଣ ଅଛି ଏଥିରେ ?

"ଆରେ ନରସୁନ୍ଦର ଯେ ! କେବେ ଆସିଲ ଗାଁରୁ ! ଭଲ ସବୁ ?" ପଚାରିଦେଲେ ଲମ୍ବା ଲମ୍ବା ନିଶ ଦାଢ଼ୀ ଥିବା ତା ଗାଁର ରଘୁନନ୍ଦନ ଧଳ । ଏଠି କୋଉଠି ଗୋଟେ ସରକାରୀ ଅଫିସରେ କିରାଣୀ କାମ କରେ ।

ନର ତାଙ୍କୁ ନମସ୍କାର କଲା ଏବଂ ପତ୍ରିକାଟି ଦୁଇ ହାତ ଭିତରେ ଛାତିରେ ଚାକି ହସିହସି କହିଲା, ଆଜି ଆସିଥିଲି, ଏଇ ସଞ୍ଜ ଗାଡ଼ିରେ ଫେରିଯିବି ।

କାହିଁକି, କୋର୍ଟରେ ତାରିଖ ଥିଲା କି ?

ନାଇଁ, ଆସିଥିଲି ଏଇ ପତ୍ରିକାଟି କିଣିବାକୁ । ନର ଦେଖାଇଲା ପତ୍ରିକାଟିକୁ ।

ପତ୍ରିକାଟି କିଣିବାକୁ ସହରକୁ ଆସିଚ ? ମୁଣ୍ଡ ଖରାପ ନା କଅଣ ?

ବୁଢ଼ା ବାପ ସହିତ ଝଗଡ଼ା ହେଇଚି କି ? କିଛି କାମଦାମ କରୁଚ ନା ଆଜିକାଲି ?

ନରସୁନ୍ଦର ମନଟା ପିତା ହେଇଗଲା । ରଘୁନନ୍ଦନ ଏଯାଏଁ ପଚାରୁନି ପତ୍ରିକାଟି କଥା । ସେ ତ ଜାଣେଁ ନର କବିତା ଲେଖେ ବୋଲି । କେମିତିକା ଲୋକଟା ମ ?

ରଘୁନନ୍ଦନ ବିଦାୟ ନେଲା ପରେ ନର ଷ୍ଟେସନ ଆଡ଼କୁ ପୁଣି ମୁହାଁଇଲା । ଷ୍ଟେସନରେ ସେ ଅପେକ୍ଷା କଲା ଗାଡ଼ିକୁ । ସେ ଦେଖିଲା ତାରି ପରି ଅନେକ ଲୋକ ସେ ଗାଡ଼ିକୁ ଅପେକ୍ଷା କରିଛନ୍ତି । ଅପେକ୍ଷା ସମୟରେ ପତ୍ରିକାଟି ଦରକାର ହୁଏ । ସେ ଗୋଟାଏ ବେଞ୍ଚରେ ବସି ପତ୍ରିକାଟି ଖୋଲିଲା ଏବଂ ଚାରିଆଡ଼କୁ ଦେଖିଲା, ତାକୁ କେହି ଦେଖୁଚନ୍ତି କି ନାହିଁ ।

ନା, ସେ ନିରାଶ ହେଲା । ତାକୁ କେହି ଦେଖୁ ନାହାନ୍ତି । ଏତିକିବେଳେ ତା ସ୍ତ୍ରୀ କଥା ମନେ ପଡ଼ିଲା । ସେ ଭାବିଲା କବିତାଟି ପ୍ରକାଶ ପାଇଚି ଶୁଣିଲେ ତା ସ୍ତ୍ରୀ ଖୁସି ହେବ ନାହିଁ ନିଶ୍ଚୟ, କିନ୍ତୁ ପତ୍ରିକାଟି ଦେଖିବ । ସେତେବେଳେ ତା କବିତା ଦେହରେ ସେ ଛବିଟି ଦେଖି ସେ ନାନା ପ୍ରଶ୍ନ ପଚାରିବ । ଏମିତିକି ସେ କବି କୁଳର ଶ୍ରାଦ୍ଧ ମଧ୍ୟ ଦେଇ ଦେବ । ମୋ ଉପରେ ରାଗ ଶୁଝେଇବା ପାଇଁ ସେ କବିତାଟି ନେଇ ମୋ ବାପା ମାଆଙ୍କୁ ମଧ୍ୟ ଦେଖେଇ ଦେଇ କହିବ, ''ଦେଖ ପୁଅ କୀର୍ତ୍ତିର କୋଣାର୍କ ଗଢ଼ିଛନ୍ତି ।''

ଜଣେ ଭଦ୍ରଲୋକ ତାଙ୍କ ପାଖରେ ବସିପଡ଼ିଲେ ଏବଂ କହିଲେ କି ପତ୍ରିକା ଦେଖି । ନର ପତ୍ରିକାଟିକୁ ଖୁସି ହେଇ ବଢ଼ାଇ ଦେଲାବେଳକୁ ସେ କହିଲେ ଓହୋ, ଓଡ଼ିଆ କି ? ନା ଥାଉ, ମୁଁ ଭାବିଲି ଇଂରାଜୀ ପତ୍ରିକା ହେଇଥିବ । କୋଉଠୁ ବାହାରୁଚି ଏଇଟା ? ସେ ନିଜ ବେଗରୁ ଖଣ୍ଡେ ଇଂରାଜୀ ପତ୍ରିକା ବାହାର କଲେ ଏବଂ ନରକୁ ଦେଇ କହିଲେ ଏଇଟା ଦେଖୁଥାଆନ୍ତୁ; ମୁଁ ଟିକେଟ ଖଣ୍ଡେ ନେଇ ଆସୁଚି । ମୋର ଏଇ ଜିନିଷପତ୍ରକୁ ମଧ୍ୟ ଟିକିଏ ଦେଖୁ ଥାଆନ୍ତୁ । ପ୍ଲିଜ୍ । ସେ ଚାଲିଗଲେ ।

ସେ ଫେରି ଆସିଲା ପରେ ନର ପଚାରିଲା ଆପଣ ଓଡ଼ିଆ ପଢ଼ନ୍ତି ନାହିଁ ନା ପଢ଼ି ପାରନ୍ତି ନାହିଁ ?

ମୁଁ ଓଡ଼ିଆ ପଢ଼ିପାରେଁ । ମାତୃଭାଷା ଓଡ଼ିଆ । ହେଇ ଦେଖୁନାହାନ୍ତି ମୋ ପାଖରେ ଓଡ଼ିଆ ଖବରକାଗଜ ଅଛି । ଏଇଟା ପଢ଼ିବାକୁ ବାଧ୍ୟ । ଓଡ଼ିଶାରେ କଅଣ ଇଂରାଜୀ ଖବର କାଗଜ ଅଛି କି ? ସେ ହସିଲେ ଏବଂ କହିଲେ ଏଇଟାକୁ ମଧ୍ୟ ମୁଁ ରାସ୍ତାରେ ଫୋପାଡ଼ି ଦେଇ ଯିବି । ଘରକୁ ନେବି ନାହିଁ । ଘରେ ପିଲାମାନେ ହସିଦେବେ । ଆଉ ତା'ଛଡ଼ା ଏସବୁ ପତ୍ରିକାରେ କଅଣ ଅଛି କହିଲେ ? ନରସୁନ୍ଦର ମନରେ ଏମିତି ଭାବନାଟିଏ ସୃଷ୍ଟି ହେଲା ଯେ ସେ ତାଙ୍କୁ ଆଉ କଅଣ କହିବ ଚିନ୍ତା କରିପାରିଲା ନାହିଁ । ସେ ହଠାତ୍ ଠିଆ ହୋଇ ପଡ଼ିଲା ଓ ଇଂରାଜୀ ପତ୍ରିକାଟିକୁ ତାଙ୍କୁ ଦେଇ କହିଲା, ମୁଁ ଆସୁଚି ।

ସେ ଭାବିଲା ଏ ସହରରେ ଓଡ଼ିଆ ପତ୍ରିକାଟିକୁ ପଢ଼ିବାକୁ ତ କେହି ଲୋକ ନାହାନ୍ତି ନାହିଁ ବରଂ ତାକୁ ଆଡ଼େଇ ଦେବାକୁ ଲୋକ ଅଛନ୍ତି । ଏଠି କେହି ପତ୍ରିକା ପଢ଼ନ୍ତି ନାହିଁ ସତ, କିନ୍ତୁ 'ସେଥିରେ କିଛି ନାହିଁ' ବୋଲି ସମାଲୋଚନା କରନ୍ତି ।

ସେ କେତେ ଶୀଘ୍ର ଗାଁକୁ ଫେରିଯିବ ସେ କଥା ଚିନ୍ତା କଲା । ସେ ଅନ୍ତତଃ ସନ୍ଧ୍ୟା ପୂର୍ବରୁ ହାଟ ବଜାରରେ ଯାଇ ପହଞ୍ଚି ପାରିଲେ ଡାକ୍ତର ରାୟଙ୍କ କ୍ଲିନିକକୁ ଯାଇ ପାରନ୍ତା । ସେ ତାଙ୍କ କ୍ଲିନିକ ନଅଟା ପୂର୍ବରୁ ବନ୍ଦ କରନ୍ତି ନାହିଁ । କିନ୍ତୁ ସେ ହତାଶ ହେଇ ପଡ଼ିଲା ଯେତେବେଳେ ଶୁଣିଲା ତା ଗାଡ଼ି ଆଉ ଘଣ୍ଟାଏ ଡେରିରେ ପହଞ୍ଚିବ। ସେ କ୍ଲିନିକକୁ ଯିବା କଥା ମନରୁ ପୋଛିଦେଲା । ଏବେ ସେ ଯାଇ ଷ୍ଟେସନର ଗୋଟାଏ ପାଖରେ ନିର୍ଜନ ଜାଗାରେ ବସିଲା । ଦେଖିଲା ଆଖପାଖରେ କେହି ଲୋକ ନାହାନ୍ତି । କେବଳ କେତେଜଣ

କୁଲି ଗୋଟାଏ ଠେଲା ଗାଡ଼ିରେ ମାଲପତ୍ର ନେଇ ଯାଉଛନ୍ତି । ସେ ଗାଡ଼ିର ଘର୍ଘର ଶବ୍ଦରେ ତା କାନ ଅତଡ଼ା ପଡ଼ି ଯାଉଥିଲା । ଠେଲା ଗାଡ଼ିଟା ଯେତିକି ପାଖକୁ ଆସୁଥିଲା ଶବ୍ଦ ସେତିକି ପ୍ରଚଣ୍ଡ ଆକାର ଧାରଣ କରୁଥିଲା । ସେ ଦୁଇ ହାତରେ ତାର କାନ ଦୁଇଟାକୁ ଚାପି ଧରିଥିଲା । କିନ୍ତୁ ଏ କ'ଣ, ଶବ୍ଦଟା ଏଥର ବେଶି ଗମ୍ଭୀର ଶୁଣାଗଲା । ଶବ୍ଦଟା ଏଣିକି ଆଉ କାନ ଭିତରକୁ ନଯାଇ ତା ମୁଣ୍ଡ ଭିତରକୁ ସିଧା ଚାଲିଯାଉଚି ଯେମିତି ।

ଠେଲା ଗାଡ଼ିଟା ଦୂରକୁ ଚାଲିଗଲା ଉତ୍ତାରୁ ନର ଦେଖିଲା ତା ଆଡ଼କୁ କିଛି ଲୋକ ଆସୁଛନ୍ତି । ସେମାନେ ବୋଧେ ଭିଡ଼ରୁ ରକ୍ଷା ପାଇବା ପାଇଁ ଏବଂ ସୁବିଧାରେ ଗାଡ଼ି ଚଢ଼ିବାକୁ ଏ ଆଡ଼କୁ ଆସୁଥିବେ । ସେମାନଙ୍କୁ ଦେଖି ନର ଚଟାପଟ୍ ପତ୍ରିକାଟିକୁ ନିଜ ବେଗ୍ ଭିତରେ ରଖିଦେଲା ଏବଂ ମୋଟେ ବାହାରକୁ ଦେଖା ନଯିବା ଉଦ୍ଦେଶ୍ୟରେ ତାର ସେ ଛିଣ୍ଡା ତଉଲିଆକୁ ଢାଙ୍କି ଦେଲା ।

ନରସୁନ୍ଦର ଏଥର ଚୁପ୍‌ଚାପ୍ ବସି ରହିଲା । ସେ ଦେଖିଲା ପ୍ଲାଟଫର୍ମଟା ଧୀରେ ଧୀରେ ଅନ୍ଧାର ହେଇ ଆସୁଚି । ସେ ମଳିଚିଆ ଅନ୍ଧାର ଭିତରେ ପାଖକୁ ଆସୁଥିବା ଲୋକମାନେ ସ୍ପଷ୍ଟ ଦେଖାଯାଉ ନଥିଲେ । ସେ ନିଜକୁ ଦେଖିଲା । ଅନ୍ଧାରର ଅସ୍ପଷ୍ଟତା ଭିତରେ ସେ ଯେମିତି ଏକୁଟିଆ । ସେ କୁଙ୍କୁଡ଼ି କାଙ୍କୁଡ଼ି ହେଇ ବସିଲା । ତା ପାଖରେ ସେ ଲୋକମାନେ ଆସି ଠିଆ ହେଇଥିଲେ ମଧ୍ୟ କେହି ତାକୁ ଦେଖୁ ନାହାନ୍ତି । ତାର ଉପସ୍ଥିତି ସେମାନଙ୍କୁ ଜଣା ଅଛି କି ନା କେଜାଣି । ସେମାନଙ୍କ ପାଖରେ ଯେ ମଣିଷଟିଏ ଅଛି ଏ କଥା ସେମାନେ ମୋଟେ ଜାଣି ନଥିବେ । ଜାଣିଥିଲେ ମଧ୍ୟ ଅଲୋଡ଼ା ଲୋକଟିକୁ କିଏ କାହିଁକି ଖୋଜିବ ?

ଗାଡ଼ି ଆସିଗଲାଣି । ତଥାପି ନରସୁନ୍ଦର ସେଠୁ ଉଠିବାକୁ ଚାହୁଁନାହିଁ । ସେ ଆଉ ଫେରିବାକୁ କି ଆଉ କୁଆଡ଼କୁ ଯିବାକୁ ମଧ୍ୟ ଚାହୁଁ ନାହିଁ ।

(ଆଧୁନିକ)



ଗଳ୍ପର ପ୍ରତ୍ୟେକଟି ଚରିତ୍ର ସମାଜର ପ୍ରତିନିଧିତ୍ୱ କରେ । ସେମାନେ ଭିନ୍ନ ପୃଥିବୀରୁ ଜନ୍ମ ହୁଅନ୍ତି ନାହିଁ । ନିଜସ୍ୱ ପୃଥିବୀରୁ ସେମାନେ ଯେତେବେଳେ ବାହାରି ଆସନ୍ତି ନିଜସ୍ୱ ସମସ୍ୟା ନେଇ, ସେତେବେଳେ ତାହା ପାଠକମନକୁ ଆନ୍ଦୋଳିତ କରେ । ସବୁବେଳେ ଯେ ସମାଧାନର ବାଟ ଫିଟିବ ତା'ର କିଛି ମାନେ ନାହିଁ । ସ୍ଥିର ଜଳରେ ଢେଉଟିଏ ସୃଷ୍ଟି ହେଲେ, ତାହା ହିଁ ସାର୍ଥକତାର ପାଖାପାଖି ।

ଭୂପେନ୍ ମହାପାତ୍ର

a **time pass** publication 2008

cover design: **saroj bal**